# ଇତିହାସର ପଦକ୍ଷେପ

ଶ୍ରୀ ଗୋକୁଳମୋହନ ରାଏଚୂଡ଼ାମଣି

ମୂଲ୍ୟ—ଟ ୧-୭୫

ଚିତ୍ରିକି :

ଶ୍ରୀ ଗୋକୁଳମୋହନ ରାଏଚୂଡ଼ାମଣି
ଖୋର୍ଦ୍ଧା, ପୁରୀ

ପ୍ରକାଶକ :

ଶ୍ରୀ ଉଦୟ ନାଥ ଦାଶ
ଦରଘା ବଜାର
କଟକ-୭୫୩୦୦୧

ପ୍ରଥମ ପ୍ରକାଶ :
ସାଧାରଣତନ୍ତ୍ର ଦିବସ, ୧୯୭୭

ମୁଦ୍ରଣ :
ଦାଶ ପ୍ରିଣ୍ଟର୍ସ
କଟକ-୭୫୩୦୦୧

# ଅର୍ଘ୍ୟ

ଯେଉଁ ଶହୀଦମାନେ ଦେଶପାଇଁ ନିଜର ଜୀବନ ଉତ୍ସର୍ଗ କରିଥିଲେ ଏବଂ ଇତିହାସର ପଦକ୍ଷେପ ପାଇଁ ଭବିଷ୍ୟତର ପଥ ସମ୍ପାଦନ ପାଇଁ ଆତ୍ମୋକତ କରିଗଲେ ସେହିମାନଙ୍କର ପାଦତଳେ ମୋର ଏହି ଦୀନ ଅର୍ଘ୍ୟ ଅର୍ପଣ କଲି ।

ମୋର ବଂଶଧର ଯୁବକମାନଙ୍କୁ ଅନୁରୋଧ ସେମାନେ ଇତିହାସର ପଦକ୍ଷେପ ସହିତ ନିଜର ପାଦ ମିଳାଇ ଆଗେଇ ଯାଆନ୍ତୁ ।

ଲେଖକ



# ଧନ୍ୟବାଦ ଅର୍ପଣ

ଶ୍ରୀ ଶରତ୍ ମହାପାତ୍ର ଓ ଅନ୍ୟ ଯେଉଁମାନେ ଏହି ଲେଖା ଲେଖିବାକୁ ଉତ୍ସାହିତ କରିଥିଲେ ଓ ଶ୍ରୀ ଅର୍ଣ୍ଣବ ରାଏଚୂଡ଼ାମଣି, କୁମାରୀ ମଧୁରୀ ରାଏଚୂଡ଼ାମଣି, ଶ୍ରୀମତୀ କସ୍ତୁରୀ ରାଏଚୂଡ଼ାମଣି ଓ ଶ୍ରୀ ଭୋଳାନାଥ ଦାଶ ଯେଉଁମାନେ ସାହାଯ୍ୟ କରିଥିଲେ ସେମାନଙ୍କୁ ଧନ୍ୟବାଦ ଜଣାଉ ଅଛୁ ।

ଲେଖକ

# ଉଦ୍ଦେଶ୍ୟ

ଓଡ଼ିଶାର ସ୍ୱାଧୀନତା ଆନ୍ଦୋଳନ ଓ ପ୍ରଗତିଶୀଳ ଆନ୍ଦୋଳନରେ ଜଣେ ସଂଗ୍ରାମୀ ସ୍ୱଭାବରେ ମୋର ଯେତିକି ଅନୁଭୂତ, ସେତିକି ଯେତେ ପାରୁଛ ଲେଖିଦେଇ ଯିବାପାଇଁ ମୋର ଅନେକ ବନ୍ଧୁ ମୋତେ ଅନୁରୋଧ କଲେ । ତେଣୁ ୧୯୩୦ରୁ ୧୯୪୬ ଯାଏ ଯାହାସବୁ ଘଟିଛି, ତାକୁ ସଂକ୍ଷିପ୍ତ ଭାବରେ ଲେଖିବାର ଉଦ୍ୟମ ଏ ପୁସ୍ତିକାଟିରେ କରିଛି । ଯେତେବେଳେ ଲେଖିଲି ସେତେବେଳେ ମୋର କର୍ମକ୍ଷେତ୍ରର ବହୁତ ଦୂରରେ, କେନ୍ଦୁଝରରେ ରହିବାକୁ ବାଧ୍ୟ ହୋଇଥିଲି । କୌଣସି କାଗଜପତ୍ର, ଦଲିଲ ବା ସାଙ୍ଗସାଥୀଙ୍କର ସାହାଯ୍ୟ ନେବା ସମ୍ଭବପର ହେଲନାହିଁ । ସ୍ମରଣଶକ୍ତିରୁ ସାଉଁଟି ଯେତିକି ପାରିଲି ସଂକ୍ଷିପ୍ତରେ ଲେଖିଲି । ଭୁଲ୍ ଭଟକା ରହିଯାଇଥିବ । ମୋର କ୍ଷମାଶୀଳ ସହକର୍ମୀମାନେ ତାକୁ ସଂଶୋଧନ କରିବେ ।

ଯେଉଁମାନେ ଓଡ଼ିଶାର ସଂଗ୍ରାମମୟ ଜୀବନର ଇତିହାସ ଲେଖିବେ, ଏ ବହି ଖଣ୍ଡିକ ହୁଏତ ସେମାନଙ୍କର ସାହାଯ୍ୟରେ ଆସିପାରେ ।

— x —

# ଅଙ୍ଗୀକାର

ସମଗ୍ର ଭାରତବର୍ଷ ଇଂରେଜ ସରକାରର ପଦାନତ । ପରାଧୀନତାର ନାଗପାଶରେ ଭାରତବର୍ଷ ଜର୍ଜରିତ । ସାମ୍ରାଜ୍ୟବାଦୀ ଶୋଷଣରେ, ଲୁଣ୍ଠନରାଜରେ ଭାରତବର୍ଷ ଅନ୍ନସାର ଶୂନ୍ୟ । ଦମନ ଓ ଅତ୍ୟାଚାରର ଧୂଆଁ ମାଡ଼ି ଦେଶରେ ଛୁଟିଥାଏ । ଲୋକେ ଭୟରେ ଦିନ କାଟୁଥାନ୍ତି, ଏଣେ ଗାଁ ଗଣ୍ଡା ମାନଙ୍କରେ ଜମିଦାର, ମହାଜନ, ସାହୁକାରମାନଙ୍କର ଅଖଣ୍ଡ ରାଜୁତି । ମଠ ମହନ୍ତମାନେ ଧର୍ମର ଧ୍ୱଜା ଧରି ଗୋଟିଏ ଗୋଟିଏ ବିରାଟ ଜମିଦାର ଓ ସାହୁକାର ସାଜି ଗାଁଗଣ୍ଡାମାନଙ୍କୁ ଲୁଟପାଟ କରୁଥାନ୍ତି । କୁସଂସ୍କାର, ଧର୍ମାନ୍ଧତାରେ ସମାଜ ବହୁ ଭାଗରେ ବିଭକ୍ତ । ବିଜ୍ଞାନ, କଳ କାରଖାନାର ଗନ୍ଧ ଭାରତବର୍ଷକୁ ଛୁଇଁ ନଥାଏ । କୃଷି ଓ ହସ୍ତଶିଳ୍ପ ଏକମାତ୍ର ଅର୍ଥନୀତି । ହସ୍ତଶିଳ୍ପ ମଧ୍ୟ ଇଂରେଜ ସରକାରର ବିଦେଶୀ ବ୍ୟବସାୟ ପାଖରେ ଏକପ୍ରକାର ଲୋପ ପ୍ରାୟ । ସମଗ୍ର ପୃଥିବୀ ସାମ୍ରାଜ୍ୟବାଦୀ ମାନଙ୍କର, ଅକ୍ତିଆରରେ ଶାସିତ । ବିଲାତରେ ସେତେବେଳେ ଆଧୁନିକ ଯନ୍ତ୍ରପାତି, କଳକବ୍ଜାରେ ମାଲ, ଲୁଗାପଟା ପ୍ରଚୁର ତିଆରି ହେଉଥାଏ । ବନ୍ଧୁକ, ତୋପ ଆଦି ମାରଣାସ୍ତ୍ର ମଧ୍ୟ ସେମାନେ ତିଆରି କରି ବହୁ ଦେଶକୁ ପରାସ୍ତ କରି ପରାଧୀନ କରିସାରିଲେଣି ! ବିଲାତରେ ପ୍ରଥମେ ଯନ୍ତ୍ରପାତି ଆବିଷ୍କାର ହେଲା । ସେମାନେ ବନ୍ଧୁକ, ତୋପ ବ୍ୟବହାର କଲେ । ଭାରତବର୍ଷ ଓ ଅନ୍ୟାନ୍ୟ ଦେଶ ଏହି ଯନ୍ତ୍ରପାତି ଓ ବାଷ୍ପଚାଳିତ ଇଞ୍ଜିନ ବିଷୟରେ ଜାଣିନଥିଲେ, ଖଣ୍ଡା, ତରବାରି, ତୀର, ଧନୁ ଏହି ବନ୍ଧୁକ ତୋପ ପାଖରେ ହାର ମାନିଲା ।

ସାରା ଭାରତବର୍ଷରେ ସେତେବେଳେ ଏହିପରି ଏକ ଦୁର୍ଦ୍ଦିନ ଘୋଟି ରହିଥିଲା, ଖଟିଖିଆ କୃଷକ ଲୁଣ୍ଠିତ ଓ ଦଳିତ ହେଉଥିଲେ, ପରାଧୀନତାର ନାଗପାଶରେ ସମସ୍ତେ ଜର୍ଜରିତ ସେତିକବେଳେ ମୁଁ ପ୍ରଥମକରି ମା ପେଟରୁ ଏହି ଦୁନିଆ ଉପରେ ପଡ଼ିଲି, ଜୁନ୍ ୧୬, ୧୯୧୧ ରେ । ଆମ ପରିବାର ଥିଲେ ଝମାପଡ଼ା ଥାନା ଭେଦର ଗ୍ରାମର ଗୋଟିଏ ନାମଯାଦା ବିରାଟ ଜମିଦାର । ପୁରୀ ଜିଲ୍ଲା-ଝମାପଡ଼ା ଥାନା ଭେଦର ଗ୍ରାମରେ ଆମର ବିରାଟ ଉଆସ ବା ଘର । କାକଟପୁର, ଗୋପ, ଝମାପଡ଼ା, ଜଗତ୍‌ସିଂପୁର ପ୍ରଭୃତି ଥାନାବ୍ୟାପୀ ଆମର ଜମିଦାରି । ଏ ପୁଣି ପୁରୁଣାକାଳିଆ ଜମିଦାରି । ଇଂରେଜ ସରକାର ଆସିବା ପୂର୍ବରୁ ଆମର ଏ ଗାଁର ଲୋକେ ଏଠାକୁ ବଙ୍ଗଳା ଦେଶରୁ ଚାଲି ଆସିଥିଲେ ।

ମୋର ପୂର୍ବପୁରୁଷମାନେ ପ୍ରଥମେ ଇଂରେଜ ସରକାରର ବଶ୍ୟତା ସ୍ୱୀକାର କରିନଥିଲେ । ବହୁତ ପ୍ରଲୋଭନ ଦେଖାଇ ଓ ନିଷ୍କର ଜମିବାଡ଼ି ଓ ଶାସନ କ୍ଷମତା ଦେଇ ଶେଷରେ ଏମାନଙ୍କୁ ହାତ କରିଥିଲେ ।

ପୁରୀ ଓ କଟକ ସହରରୁ ଆମ ଗାଁ ୬୯ ମାଇଲର ବାଟ । ମାଟି ରାସ୍ତା । ପୁରୀ ବା କଟକରୁ ଆସିଲାବେଳେ ବହୁତ କଷ୍ଟ ପାଉଥିବାର ଆସିବାକୁ ପଡ଼େ । ବର୍ଷା ଦିନରେ ଶଗଡ଼ ଚକ କାଦୁଅରେ ଗଳି ପଡ଼ୁଥାଏ, ସେଥିପାଇଁ ଗୋଟିଏ ଗୋଟିଏ ଶଗଡ଼ ପାଇଁ ୩, ୪ ଜଣ ଲୋକ ସାହାଯ୍ୟ କରିବାପାଇଁ ଥାନ୍ତି । ଦୁଇ ତିନି ଦିନରେ ଆସି ଗାଁରେ ପହଞ୍ଚିବାକୁ ହୁଏ ।

ଆମ ଗାଁରେ ଗୋଟିଏ ନିମ୍ନ ପ୍ରାଥମିକ ବିଦ୍ୟାଳୟ ଥାଏ । କୋଷ ଓ ହମାପଡ଼ାରେ ମାଇନର ସ୍କୁଲ—ଭର୍ଣ୍ଣାକୁଲର ଥାଏ । ତେଣୁ ଗାଁ ପାଠ ସବୁଲୋକ ପାଠରେ ପ୍ରାୟ ସମସ୍ତଙ୍କର ଡୋର ବନ୍ଧାହୁଏ । ମୋ ବାପାଙ୍କ ନାମ ରାମଲାଲ ମୋହନ ଓ ମାଙ୍କ ନାମ କୁମୁଦିନୀ । ସେ ମୋତେ ୩ ବର୍ଷ ହେଲେ ଚିରକାଳପାଇଁ ଛାଡ଼ି ଚାଲିଗଲେ । ତେଣୁ ମାତୃସ୍ନେହ କ'ଣ ମୁଁ ଜାଣିନାହିଁ; ତେବେ ମୋର ଆଈ ମୋତେ ମଣିଷ କଲେ । ଆମେ ସେତେବେଳେ ଦୁଇ ଭାଇ ଦୁଇ ଭଉଣୀ । ଜମିଦାର ଘରର ପିଲା ! ତେଣୁ ଖୁବ୍ ଗେଲବସରରେ ଓ ଅଯତ୍ନରେ ବଢ଼ିବାକୁ ଲାଗିଲୁ ।

ମୋର ପାଠପଢ଼ା ପ୍ରଥମେ ଘରେ ଅବଧାନଙ୍କ ପାଖରେ ଆରମ୍ଭ ହେଲା । ବଡ଼ଲୋକ ଘର ହେଲେ କ'ଣ ହେବ ? ସେତେବେଳେ କାଗଜ ସେତେ ନଥିଲା । ଭାରତବର୍ଷରେ କାଗଜ କଳ ବସିନଥାଏ କି କଳକାରଖାନା ସେମିତି ନଥାଏ । ହାତ ତିଆରି ମୋଟା ମୋଟା ବାଲି କାଗଜ କିଛି ମିଳୁଥାଏ । ତେଣୁ ଭୂଇଁ ଉପରେ କୋଚଲା ଖଡ଼ିରେ ଆମେ ଅକ୍ଷର ଶିଖୁ, କାଠ ପଟାରେ ପାଉଁଶ ବା ଧଳାଖଡ଼ି ବୋଲି ସେଥିରେ କାଠି କଲମରେ ବର୍ଣ୍ଣାକ୍ଷର ଲେଖୁ । କିନ୍ତୁ ପାଠ ଥିଲା ପକ୍କା । ଅବଧାନ ଥିଲେ ନଛୋଡ଼ବନ୍ଦା ଲୋକ । ବାପା ଓ ଆଈ ଥିଲେ ଝାଣ୍ଟୁଆ ଅଭିଭାବକ । ପାଠ ନହେଲେ ଅବଧାନଙ୍କଠାରୁ ତ ମାଡ଼ ସେଥିରେ ପୁଣି ବାପା ଓ ଆଈ ପିଠିରେ ପଡ଼ିବେ ନାହିଁ ।

ଏହାପରେ ଚାହାଳୀକୁ ଗଲୁ । ସେତେବେଳେ ନି: ପ୍ରା: ବିଦ୍ୟାଳୟକୁ ଚାହାଳୀ କହୁଥିଲେ । ସେଠାରେ ଆମର ଗାଁର ପୁରୋହିତ ଶ୍ରୀ ହରଶଚନ୍ଦ୍ର ଘୋଷାଲ ସେହି ବିଦ୍ୟାଳୟର ଏକମାତ୍ର ଶିକ୍ଷକ । ଖଣ୍ଡିଏ ଲମ୍ବା ବେତ ଧରି ଆସିଲାବେଳକୁ ଆମର ସବୁ ଚଗଲାମି ଓ ପାଟିତୁଣ୍ଡ ବନ୍ଦ ହୋଇଯାଏ । ଆମେ ଏକାବେଳକେ ତୁଳସୀପତ୍ର । ବଗ ମାଛ ଧରିବାକୁ ବସିଥିଲାବେଳେ ଯେପରି ଏକାଗ୍ରଭାବରେ ଅନେଇଥାଏ ଆମେ ସେହିଭଳି ପାଠରେ ମନଦେଇ ବସିଯାଉ ।

ଆଜିକାଲି ତ ବିଜୁଳି ଆଲୁଅ ନହେଲେ ଆମେ ପାଠ ପଢ଼ି ପାରୁନାହୁଁ । କିନ୍ତୁ ସେତେବେଳେ ପୋଲଙ୍ଗ ତେଲ ଦୀପରେ ଆମେ ପାଠ ପଢ଼ୁ । କାରଣ ଭାରତ-ବର୍ଷରେ ଶିଳ୍ପର ଜନ୍ମ ହୋଇନଥିବାରୁ କିରାସିନ ଓ ଲଣ୍ଠନ ବିଲାତ ଓ ଜର୍ମାନୀରୁ

ହୁଥାଏ । ପୁଣି ରେଲ ସେତେବେଳକୁ ଚଳିବାକୁ ଆରମ୍ଭ କରିଥାଏ । ବସ, ଟ୍ରକ, ମଟର ଆଦୌ ନଥାଏ । ରାସ୍ତାଘାଟର ମଧ୍ୟ ସୁବିଧା ନଥାଏ । ତେଣୁ ଯାହା ବି କିରୋସିନ, ଲଣ୍ଠନ ଅନେକ ସେତିକି ସହରମାନଙ୍କରେ ରହୁଥାଏ । ମୋର ମନେଅଛି, ଆମ ଗାଁରେ ସେତେବେଳର ସମ୍ବଳ, ୬ଟା ଲଣ୍ଠନ ସେତେବେଳେ ଥିଲା । ଆମ ଘରେ ୨ଟା ଲଣ୍ଠନ ଥିଲା । ବର୍ଷା ଦିନରେ ସେ ବ୍ୟବହାର ହେଉଥିଲା ।

ଗାଁରେ ପର୍ବ ପର୍ବାଣି, ଦଣ୍ଡହରା, ଦୋଳରେ ଯାତ୍ରା ହେଲେ ବିଭିନ୍ନ ବ୍ରତରେ ବାଳକ ମଶାଲ ଧରି ଠାକୁରଙ୍କ ସାମନାରେ, ଯାତ୍ରାବାଲାଙ୍କ ଆଗରେ ଦଉଡ଼ୁଥାଏ । ଗୋଟାଏ ହାତରେ ତା'ର ମଶାଲ ଆଉ ଗୋଟାଏ ହାତରେ ପୋଲଙ୍ଗ ତେଲର ଶିଶି ।

ଦେଖିଁ ଦେଉଳ ବାବାଜି ବ୍ରାହ୍ମଣଙ୍କର ପ୍ରଭାବ ସମାଜରେ ଖୁବ୍ ପ୍ରବଳ । ଆମ ଘରେ ଏସବୁ ଆଡ଼ମ୍ବର ଅଧିକ । ଆମ ଘରର ଗୋଟିଏ ଅଲଗା ବିଗ୍ରହ ବିଷ୍ଣୁ ମନ୍ଦିର ଅଛି । ବାର ମାସରେ ତେର ଯାନିଯାତ୍ରା ।

ଜମିଦାରଙ୍କ ଘର ତେଣୁ ଭାରି ଧୁମ୍‌ଧାମରେ ଏସବୁ ପାଳିତ ହୁଏ । ଦୋଳ ଓ ଦଣ୍ଡହରା ସବୁଠାରୁ ଜାକ୍‌ଜମକରେ ହୁଏ ।

ସେତେବେଳେ ପଇସା ଖର୍ଚ୍ଚ କରି ମଜୁରି ଦେଇ ଲୋକ ଅଣାଯାଉନଥିଲା । ଜମିଦାରଙ୍କ ଘରର ନିତିଦିନିଆ କାମଠାରୁ ଆରମ୍ଭ କରି ଏହିସବୁ ପର୍ବ ପର୍ବାଣିର କାମ ତୁଲାଇବାପାଇଁ ଜମିଦାରିରୁ ସବୁ ଜାତିର ବେଠିଆ ଆସି କାମରେ ଲାଗନ୍ତି । ଖାଲି ମଣିଷ ନୁହନ୍ତି । ଜମିଦାରିରୁ ପରିବା, ଘିଅ, ଦୁଧ, ତନ୍ତବୁଣା ଲୁଗାପଟା, ଡାଲି, କୁଲା, ହାଣ୍ଡି, ମାଠିଆ ଆଦି ଯାବତୀୟ ଜିନିଷ ମଧ୍ୟ ଆସେ । ବାଜାବାଲା, ଧୋବା, ଯାତ୍ରା ଦଳ ବି ସେହିଭଳି ଆସନ୍ତି । ତେବେ କାହାକୁ କାହାକୁ ଏହିସବୁ କାମପାଇଁ କିଛି କିଛି ଜମି ଜାଗିରି ସ୍ୱରୂପ ଖଞ୍ଜାକରି ଦିଆହୋଇଛି, ଆଉ କାମ କଲାବେଳେ କାହାକୁ କେମିତି ଗଣ୍ଡେ ଖାଇବାକୁ ଦିଆହୁଏ ।

କାକଟପୁରରେ ଯେଉଁ ମଙ୍ଗଳା, ସେ ଆମରି ପୂର୍ବପୁରୁଷଙ୍କ ଦ୍ୱାରା ପ୍ରତିଷ୍ଠିତ । କାକଟପୁର ଥାନାଟା ସେତେବେଳେ ଆମରି ଜମିଦାରି । ମଙ୍ଗଳାଙ୍କ ସେବା ପୂଜା ପାଇଁ ବହୁତ ଜମି ଖଞ୍ଜି ଦିଆଯାଇଥିଲା ।

ଏହିପରି ଦିଅଁ ଦେଉଳ ଧର୍ମ କର୍ମ ଓ ସାମନ୍ତବାଦୀ ସମାଜ ଭିତରେ ଏକ ଉତ୍କଟ ସାମନ୍ତ ପରିବାର ଭିତରେ ମୁଁ ବଢ଼ିବାକୁ ଲାଗିଲି । କଳ କାରଖାନାର ଯୁଗ ଭାରତବର୍ଷକୁ ଆସି ନଥିବାରୁ ସାମନ୍ତବାଦୀ ଅର୍ଥନୀତି, ଦର୍ଶନ, ଚଳଣି ଓ ସାମାଜିକ ବ୍ୟବସ୍ଥାର ପ୍ରଭାବର ପରିସର ଭିତରେ ମୋର ଜୀବନ ଗଢ଼ି ଉଠିବାକୁ ଲାଗିଲା । ଦିଅଁ ଦେଉଳ, ବ୍ରାହ୍ମଣମାନଙ୍କୁ ମୁଣ୍ଡିଆ ମାରିବା, ପୂଜା କରିବା ଓ ଧର୍ମ କର୍ମରେ ମୋର ଭାରି ମନ ।

ମୋର ବୟସ ଖୁବ୍ ଅଳ୍ପ । ଜମିଦାରରୁ ପ୍ରାପ୍ୟ ଲୋକ ଆସନ୍ତି । ଜମି ଦାର ଦରବାରରେ ଜଣେ ବର୍କନ୍ଦାଜ ଥାଏ । ସେ ସେହି ଲୋକଙ୍କୁ ବାନ୍ଧି ବାଡ଼ାଏ । ମାଡ଼ ଖାଉଥିବା ଲୋକର ଚିତ୍କାରର ଯେପରି କରୁଣ, ଦୃଶ୍ୟ ସେହିଭଳି ଭୟଙ୍କର ଏସବୁ ଦେଖି ମୋତେ ଡର ମାଡୁଥିଲା ଏବଂ ଚିତ୍କାର କରି କାନ୍ଦି ସେମାନଙ୍କୁ ମାଡ଼ ନ ମାରିବା ପାଇଁ ଜିଦ୍ ଧରୁଥିଲି । ସେତେବେଳେ ଅବଶ୍ୟ ବୁଝି ପାରୁନଥିବି କାହିଁକି ଏପରି ମାଡ଼ ହେଉଥିଲା । ପରବର୍ତ୍ତୀ ଜୀବନରେ ବୁଝିଲି ଯେ ଖଜଣା ବା ଋଣ ଆଦାୟ ନହେଲେ ବା ଭେଟି ଦେବାରେ ଅବହେଳା କଲେ ପ୍ରଜାଙ୍କ ଉପରେ ସେସବୁ ଦିନରେ ଏଭଳି ଅତ୍ୟାଚାର ଗୋଟାଏ ଦୈନନ୍ଦିନ ଓ ମାମୁଲି ଘଟଣା ଥିଲା । ସେଦିନଠାରୁ ମୋ ମନରେ ଏସବୁ ଘଟଣା ବିରୁଦ୍ଧରେ ଘୃଣାଭାବ ଓ ବିଦ୍ରୋହ ଛପି ଛପି ରହିଥିଲା ।

ମୁଁ ତ ଆଗରୁ କହିଛି ଯେ ସମୟରେ ବସ ନଥିଲା । ରାସ୍ତା ଥିଲା କଚ୍ଚା—କାଦୁଅ ମାଟି ରାସ୍ତା । ଆମେ ବଡ଼ ଘରର ଲୋକ । ତେଣୁ ସାଧାରଣତଃ ସୁଆରୀରେ ଆମେ ଯାଆସ କରୁ । ଜଣେ ବା ୨ ଜଣ ଲୋକଙ୍କୁ ୮ ଜଣ ଲୋକ (କହେରା) କାନ୍ଧେଇ ସୁଆରିରେ ନେଉଥିଲେ । ଏସବୁ ଶୁଣିବାପାଇଁ ଆଜିକାଲି କୌତୁକ ଲାଗେ ପିଲାଙ୍କୁ । କିନ୍ତୁ ଯନ୍ତ୍ରଯୁଗ ଭାରତରେ ପଶିବା ପୂର୍ବରୁ ଆମକୁ ଏହିପରି ଯାନ ବ୍ୟବହାର କରିବାକୁ ପଡୁଥିଲା । ଘୋଡ଼ା, ଯୋଡ଼ିଆ ବଳଦ, ଗଧ, ଶଗଡ, ସୁଆରି ଡଙ୍ଗା ଥିଲା ଯାନ । ଆଉ ରାଜାମାନଙ୍କର ଥିଲା ହାତୀ ।

ଗାଁ ବିଦ୍ୟାଳୟରେ ଚତୁର୍ଥ ଶ୍ରେଣୀରେ ପଢ଼ିଲା ବେଳେ ଓଡ଼ିଶାରେ ଜଣେ ପ୍ରସିଦ୍ଧ ସାହିତ୍ୟିକ ନନ୍ଦକିଶୋର ବଳ ଥରେ ଆମ ପାଠଶାଳା ପରିଦର୍ଶନ କରିବାକୁ ଆସିଥିଲେ । ସେତେବେଳେ ସେ ଥିଲେ ବିଦ୍ୟାଳୟ ପରିଦର୍ଶକ । ସୁନ୍ଦର ହସ୍ତାକ୍ଷର ପ୍ରତି ତାଙ୍କର ଭାରି ଆଗ୍ରହ । ମୋର ମନେ ଅଛି କଳାପଟାରେ ଗୋଲ ଗୋଲ କରି ଲେଖିଦେଲେ । କହିଲେ, "ପିଲାଏ ଅକ୍ଷର ମୁକ୍ତାପରି ଗୋଲ ହେବ କାରଣ ତୁମର ଲେଖା ଅନ୍ୟମାନେ ପଢ଼ିବେ ।" ମୋର ବାପା ମଧ୍ୟ ଠିକ୍ ଏହି କଥା କହୁଥିଲେ ଏବଂ ସବୁଦିନେ ହସ୍ତାକ୍ଷର ଲେଖିବାକୁ ଜୋର ଦେଉଥିଲେ । ପ୍ରବେଶିକା ମାଟ୍ରିକ୍ ପରୀକ୍ଷା ଦେବାଯାଏ ପ୍ରାୟ ହସ୍ତାକ୍ଷର ଲେଖୁଥିଲି ।

ଗାଁ ବିଦ୍ୟାଳୟର ପାଠପଢ଼ା ଭାଇଙ୍କର ଶେଷ ହୋଇ ଘରେ ବର୍ଷେ ହେଲା ପଢ଼ୁଥାନ୍ତି, ମୋର ମଧ୍ୟ ଶେଷ ହୋଇଗଲା । ତେଣୁ ଠିକ୍ ହେଲା ପାଠ ପଢ଼ିବାପାଇଁ ଆମେ ପୁରୀ ଯିବୁ । ବଡ଼ ଭଉଣୀର ବିଭାଘର ଶେଷ ହୋଇଯାଇଥାଏ । ତାଙ୍କ ଶାଶୁ ଘର ଖୋର୍ଦ୍ଧାରେ । ବାପା ଓ ଦାଦାମାନେ ଏଥିଭିତରେ ପୃଥକ ହୋଇଗଲେଣି ଘରୋଇ ବିବାଦ ଓ ଗ୍ରାମ୍ୟ ବିବାଦ ବିରାଟ ରୂପ ଧରିଲାଣି । ମାମଲାମକଦ୍ଦମାରେ ପଇସା ଉଡୁଥାଏ । ଭିତରେ ବାପା ବୁଡ଼ିଗଲେଣି । ଜାନକୁଡ଼ା, ହାଇକୋର୍ଟ, କଟକ

ଅନେକ ଚୋର ଲୋକେ ଏହି ସୁଯୋଗରେ ଆମ ବଗିଚା ଘରେ ଆଶ୍ରା ଜମେଇଲେଣି । କେତେଟା ଜମିଦାର ଶାଗ ମାଛ ଧାମରେ ରଖି ଏ ନାଳ ହୋଇଗଲାଣି । ଏଥିକୁ ବୁଝିବାର ବୟସ ମୋର ହୋଇନଥିଲା ।

ଏହି ସମୟରେ ବ ପା ଓ ଆଈ ଆମକୁ ପାଠ ପଢ଼ାଇବା ଉଦ୍ଦେଶ୍ୟରେ ପୁରୀ ଆସିଲେ । ପୁରୀରେ ଆମର ନିଜର ଘର ଥିଲେ ବି ଖାତୁ ବିବାଦ ହେତୁ ସେ ଘରେ ନରହି ଆମେ ମାଟିମଣ୍ଡପ ସାହିରେ ଗୋଟିଏ ଭଡ଼ାଘରେ ରହିଲୁ । ସେହି ଘରଟି ଏକ ପ୍ରକାର ଗାଁ ଘର ସହିତ ମୋର ସମ୍ପର୍କ ତୁଟିଲା ନାହିଁ ଲେ ଚଳେ । ମୁଁ ଓ ଭାଇ ଏଣ୍ଡୋବେଙ୍ଗଲି ସ୍କୁଲରେ ପାଠପଢ଼ା ଆରମ୍ଭ କଲୁ (ଏବେ ଏହାର ବିଶ୍ୱମ୍ଭର ବିଦ୍ୟାପୀଠ) । ୧୯୨୦ ଖ୍ରୀ ଅ

ଆଜିକା ଭଳି ମୋ ପିଲାଦିନରେ ମଟର ଗାଡ଼ି ଆସି ନଥିଲା । ସାଇକେଲକୁ ସେତେବେଳେ ଶୂନ୍ୟ ଗାଡ଼ି ମଟର ଗାଡ଼ିକୁ ହାଓ୍ୱା ଗାଡ଼ି ବୋଲି କହୁଥିଲେ । ସେହି ଶୂନ୍ୟଗାଡ଼ି ମଧ୍ୟ କାଁ ଭାଁ କେତୋଟା ସାରା ସହରଟା ଯାକରେ ଥାଏ । ପୁରୀ ରାଜା, ଏମାର ମଠ ଓ ନରେନ୍ଦ୍ର ଉପରେ କଳେବାନନ୍ଦ ବ୍ରହ୍ମଚାରୀଙ୍କ ଘୋଡ଼ାଗାଡ଼ି ଥାଏ । ଦୁଇଟା ସଫେଦ୍ ଧଳା ଘୋଡ଼ା ଟଣା ଖୋଲାଗାଡ଼ି । ଏ ହେଉଛି ଧନୀ ଲୋକଙ୍କର ଚଳଣି । ଏଥିକି ବେଳେ ପୁରୀ ଏମାର ମଠ ମହନ୍ତ ଗୋଟିଏ ମଟର ଗାଡ଼ି ଆଣିଲେ ସାରା ସହରରେ ଏହି ଖବର ବ୍ୟାପିଗଲା । ହାଓ୍ୱାରେ ଗାଡ଼ି ଉଡ଼ିଯାଉଛି । ଆମେ ସ୍କୁଲରୁ ଘରକୁ ନଫେରି ଦୋଳମଣ୍ଡପ ଛକରେ ହାଓ୍ୱା ଗାଡ଼ି ଦେଖିବା ପାଇଁ ଘଣ୍ଟା ଘଣ୍ଟା ଧରି ଠିଆ ହୋଇଥାଉ । ସିଂହଦ୍ୱାରଠାରୁ ସମୁଦ୍ର କୂଳ ଭାଗବାରଣି ଖଣ୍ଡିଯାଏ ଲୋକେ ମଧ୍ୟ ଧାଡ଼ି ହୋଇ ହାଓ୍ୱା ଗାଡ଼ି ଦେଖିବାକୁ ଠିଆ ହୋଇଥାନ୍ତି ।

ସେହି ସମୟର ଆଉ ଗୋଟିଏ ମଜାର କଥା । କାର୍ତ୍ତିକ ପୁନେଇ ଦିନ ଭୋରରୁ ମୁଁ କେତେଜଣ ସାଙ୍ଗ ସମୁଦ୍ରରେ ଗାଧୋଇ ତୀର୍ଥ ବୁଲିବାକୁ ବାହାରିଲୁ । ସମୁଦ୍ର କୂଳରେ ଲାଲ ମୋହନ ବାବୁଙ୍କର ଗୋଟିଏ ଗ୍ରେଟିଆ ଗୃହଦରେ ହୋଟେଲ । ଏବେବି ସେ ହୋଟେଲ ଅଛି । ତା'ର ସାମ୍ନାରେ ଗୁଡ଼ାଏ ଗାଉଁଲି ଲୋକ ଘେରି ଛିଡ଼ା ହୋଇଥାନ୍ତି ଆମେ ଆଗ୍ରହ ସହିତ ସେହି ଭିଡ଼ ଠେଲି ଭିତରେ ପଶିଲୁ । ଦେଖିଲୁ ଗୋଟାଏ ଯନ୍ତ୍ର ଗୀତ ଗାଉଛି । ଆମେ ଆଶ୍ଚର୍ଯ୍ୟ ହୋଇଗଲୁ । ମୁଁ ମୋର ସାଙ୍ଗକୁ ପଚାରିଲି "ଭଲରେ ଏ ଯନ୍ତ୍ରଟା କେମିତି ଗୀତ ଗାଉଛି ?" ସେ କହିଲା "ଦେଖୁନାହୁଁ କୁକୁର ଛବିଟା ତା ଉପରେ । ସେହି କୁକୁରଟା ତା ଭିତରେ ଗୀତ ଗାଉଛି ।" ମୁଁ ପଚାରିଲି "କୁକୁର କ'ଣ ମଣିଷ ଯେ ଗୀତ ଗାଇବ ?" ସାଙ୍ଗଟି କହିଲା "ଆରେ ସେ ବିଲାତି ପକେଟ କୁକୁର, ଟିକିଟିଏ, ତା ମାଷ୍ଟର ତାକୁ ଗୀତ

ଶିଖାଉଛି । ସେ ତା ଭିତରୁ ଗୀତ ଗାଉଛି । ଲେଖା ହୋଇଛି ପଢ଼ । "His Master's voice."

ସେତେବେଳେ ଆମ ଦେଶରେ ବୈଜ୍ଞାନିକ ଶିକ୍ଷା ଓ ଶିଳ୍ପରେ ସ୍ତର ଏତିକି ଅନୁନ୍ନତ ଥିଲା । ଆମେ ଏଳ ମ ମନ୍ତ୍ର ବାଘୀ ଯୁଗରେ ସମସ୍ତ କଟାଉଥିଲୁ । କୃଷି ଓ କୁଟୀର ଶିଳ୍ପ ଥିଲା ଆମର ଏକମାତ୍ର ଉତ୍ପାଦନର ଧନ୍ଦା । କଳ, କବ୍ଜା ତିଆରି କଥା ଆମ ଅମଳରେ ସ୍ୱପ୍ନ । ବିଲାତରେ ବାଷ୍ପ ଚାଳିତ ଇଞ୍ଜିନ ପ୍ରଥମେ ଆବିଷ୍କାର ହୋଇଥିଲା ।

ତେଣୁ ସେ ଦେଶରେ ଶିଳ୍ପ, କଳ କାରଖାନା ଆଗ ବସିଥିଲା । ଏ ଦିଗରେ ସେମାନେ ଥିଲେ ଆମଠାରୁ ଆଗୁଆ ।

ଇଂରେଜ ସରକାର ଆମ ଦେଶକୁ ଦଖଲ କଲାପରେ ଏଦେଶରେ ବିଲାତି କଳ କାରଖାନା ତିଆରି ମାଲ, ଆସିବାକୁ ଲାଗିଲା ଏବଂ ଏ ସବୁ ମାଲର ଚଲାଚଲ ପାଇଁ ରେଳଗାଡ଼ି ମଧ୍ୟ ଆସିଲା । ଆମ ଦେଶର କୁଟୀର ଶିଳ୍ପ ଉପରେ ଆକ୍ରମଣ ହେଲା । ବସ୍ତ୍ରଶିଳ୍ପ ଏକା ବେଳକେ ଲୋପ ପାଇଲା । ଲୁଣ ମାରିବା ବେଆଇନ ହେଲା ।

## ସଂଗ୍ରାମ

ଏଙ୍ଗ୍ଲୋବେଙ୍ଗଲି ସ୍କୁଲରେ ପାଠ ପଢ଼ୁଥିବା ସମୟରେ ମହାତ୍ମାଗାନ୍ଧି ପୁରୀ ଆସିଲେ । ୧୯୨୧ ଖ୍ରୀ: ଅ: ସମଗ୍ର ପୁରୀ ସହରରେ କି ଉତ୍ସାହର ଉଦ୍ଦିପନା । ଗାନ୍ଧିଙ୍କି ଦେଖିବା ପାଇଁ ମୁଁ ବାପା ଓ ଭାଇଙ୍କ ସାଙ୍ଗରେ ରେଳଷ୍ଟେସନକୁ ଗଲି । ଗାନ୍ଧିଜୀ ପୁରୀ ରାଜାଙ୍କ ଜୋଡ଼ି ଗାଡ଼ିରେ ଆସିଲେ । ତାଙ୍କ ମୁଣ୍ଡରେ ପଗଡ଼ି, ଦେହରେ ଫତୁଆ, ଷ୍ଟେସନରେ ଲୋକ ଗହଳି କହିଲେ ନସରେ । ଗାନ୍ଧିଙ୍କି ଦେଖିବା ପାଇଁ ଝାଉଁଗଛ ଉପରେ ମଧ୍ୟ ଲୋକମାନେ ଚଢ଼ିଥାନ୍ତି । ମୁଁ ଏତିକି ବୁଝିଲି ଯେ ଇଂରେଜ ସରକାର ବିଦେଶୀ, ଆମକୁ ଶାସନ କରୁଛି । ଆମର ସ୍ୱାଧୀନତା ପାଇଁ ଗାନ୍ଧି ଲଢ଼ୁଛି । ଆମେ ବିଦେଶୀ ଜିନିଷ ଆଉ ବ୍ୟବହାର କରିବୁ ନାହିଁ, ବିଲାତି ଲୁଗା ପିନ୍ଧିବୁ ନାହିଁ । ସନ୍ଧ୍ୟା ବାଲିରେ ସଭା ହେଲା । ଗାନ୍ଧି ଅସହଯୋଗର ଡାକରା ଦେଲେ । ରାମଚଣ୍ଡି ସାହି, ଜଗନ୍ନାଥ ବଲ୍ଲଭରେ ସଭା ହେଲା ସେଥିରେ କସ୍ତୁରବା ଗାନ୍ଧି ସ୍ତ୍ରୀଲୋକମାନଙ୍କୁ ସ୍ୱରାଜ କଥା ବୁଝାଇଲେ ।

ଆମେ ପରାଧୀନ । ଆମକୁ ବିଦେଶୀ ଇଂରେଜ ସରକାର ଶାସନ କରୁଛି । ଏହି କଥା ମୋ ମନରେ ଇଂରେଜ ସରକାର ପ୍ରତି ଘୃଣା ସୃଷ୍ଟି କଲା ଏବଂ ସେହି ସମୟରୁ ମୁଁ ଦେଶି (ବଙ୍ଗଲକ୍ଷ୍ମୀ କଟନ ମିଲର) ଲୁଗା ଓ ଧରେ ପରେ ଖଦଡ଼

ଲାଗିବାକୁ ଲାଗିଲା । ଚରଖା ଆସି ସୂତା କାଟିବାକୁ ଲାଗିଲା । ଆମ ସ୍କୁଲ ଘରେ ଇ ସ୍କୁଲ । ସେଠାରେ ପିଲାଙ୍କୁ ସୂତାକଟା ଶିଖାଇବା ପାଇଁ ମୁରାର ତ୍ରିପାଠୀ ନିଯୁକ୍ତ ହୋଇଥିଲେ । ସେ ଥିଲେ କଂଗ୍ରେସର ଜଣେ ଯୁବକ ସ୍ୱେଚ୍ଛାସେବକ ।

ଯେଉଁ ଭାରତ ବର୍ଷ ଉଚ୍ଛୃଙ୍ଖଳ ହୋଇ ଇଂରେଜ ସରକାରର ପୁରା ଗୋଲାମ ହୋଇଯାଇଥିଲା । ସେ ପୁଣି ଚେଇଁ ଉଠିଲା ତା'ର ଗୋଲାମିକୁ ଫିଙ୍ଗି ଦେବାପାଇଁ । ୧୯୧୯ ଅପ୍ରେଲ ତା ୧୩ ପଣା ସଂକ୍ରାନ୍ତି ଦିନ ଜାଲିୱାନାବାଲା ବାଗରେ ଇଂରେଜ ସରକାର ହଜାର ହଜାର ଲୋକଙ୍କୁ ଗୁଳି କରି ମାରିଲେ । ରାଓଲେଟ ଏକ୍ଟ କଲା ଆଇନ ଜାରି କଲା । ତା'ର ଜବାବ ଦେବା ପାଇଁ ଗାନ୍ଧିଜୀ ଅସଲ ବେଳ ଉଣ୍ଡି 'ଅସହଯୋଗ' ଆନ୍ଦୋଳନ କଲେ । ସାରା ଭାରତ ଦେଶ ଭୂଇଁ ଅବସ୍ଥା ଦେଖିବାକୁ ବାହାରିଲେ । ଏଥି ପୂର୍ବେ ଇଂରେଜ ସରକାରଙ୍କର ଅତ୍ୟାଚାର ଓ ଶୋଷଣ ବିରୁଦ୍ଧରେ ଓଡ଼ିଶାରେ ୧୮୧୭ ରେ ପାଇକ ବିଦ୍ରୋହ ୧୮୫୭ରେ ସିପାହି ବିଦ୍ରୋହ ଓ ଗୋଟିଏ ଗୋଟିଏ ଅଞ୍ଚଳରେ ଛୋଟ ବିଦ୍ରୋହ ହୋଇଥିଲା ।

ଗାନ୍ଧିଜୀ ଏହି ଅସହଯୋଗ ଆନ୍ଦୋଳନକୁ ଭାରତର ଗାଁ ଗଣ୍ଡା ଭିତରକୁ ସବୁ ଲୋକଙ୍କ ପାଖକୁ ନେଇ ଯାଇଥିଲେ । ସ୍କୁଲ, କଲେଜର ବହୁ ପିଲା ସ୍କୁଲ କଲେଜ ଛାଡ଼ିଦେଇଥିଲେ, ଓକିଲ ଓକିଲାତି ଓ କେତେକ ସରକାରୀ ଚାକିରିଆ ଚାକିରି ଛାଡ଼ିଦେଇ ଏହି ଆନ୍ଦୋଳନରେ ଯୋଗ ଦେଇଥିଲେ ।

ସେତେବେଳେ କିଛି କିଛି କଳ କାରଖାନା ବସିଲାଣି ଓ ଶ୍ରମିକ ଶ୍ରେଣୀ ପୁଞ୍ଜିପତି-ବନିଆ ଶ୍ରେଣୀର ଜନ୍ମ ହେଲାଣି. ଇଂରେଜ ସରକାର ତା'ର ଅଫିସ କାମ ଚଳାଇବାପାଇଁ କିରାଣୀ ଶ୍ରେଣୀ ବା ମଧ୍ୟବିତ୍ତ ଶ୍ରେଣୀଟିଏ ସୃଷ୍ଟି କଲେଣି, ଓକିଲ ମୁକ୍ତାର ଓ କିଛିଟା ଶିକ୍ଷିତ ଲୋକ ବାହାରିଲେଣି । ସେମାନଙ୍କ ଭିତରେ ଜାତୀୟ ଚେତନା ଦେଖାଦେଲାଣି, ପ୍ରଥମ ମହାଯୁଦ୍ଧରୁ ଜାତୀୟ ଶିକ୍ଷା ମିଳିଲାଣି । ଓଡ଼ିଶାରେ ପଣ୍ଡିତ ଗୋପବନ୍ଧୁ ଦାସ, ଆଚାର୍ଯ୍ୟ ହରିହର ଦାସ, ନୀଳକଣ୍ଠ ଦାସ, ଗୋଦାବରୀଶ ମିଶ୍ର, କୃପାସିନ୍ଧୁ ମିଶ୍ର ପ୍ରଭୃତି ଜାତୀୟ ଚେତନାରେ ଉଦ୍‌ବୁଦ୍ଧ ହୋଇ ସାକ୍ଷୀଗୋପାଳ ବନବିଦ୍ୟାଳୟ ବସାଇ ଶିକ୍ଷାକୁ ଏକ ନୂଆ ଦୃଷ୍ଟିକୋଣ ଦେଲେଣି । ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ପାଇଁ ମଧୁବାବୁ ଉତ୍କଳ ସମ୍ମିଳନୀ ଚଳାଇଲେଣି ଏବଂ ଓଡ଼ିଶାର କୁଟୀରଶିଳ୍ପକୁ ବଞ୍ଚାଇ ରଖିବାପାଇଁ ତାରକସି ଓ ଯୋତା କାରଖାନା ବସାଇଲେଣି ।

ଇଂରେଜ ସରକାରକୁ ଭୟ ଓ ତା ପ୍ରତି ଅସନ୍ତୋଷ ଏ ଦୁଇଟିର ସଂଘର୍ଷ ଶିକ୍ଷିତ ଲୋକ ଓ ଅଶିକ୍ଷିତ କୃଷି ଓ ଶ୍ରମିକ ଶ୍ରେଣୀ ଭିତରେ କାମ କରୁଥିଲା । ଗାନ୍ଧିଜୀଙ୍କର ଅସହଯୋଗ ଆନ୍ଦୋଳନର ଡାକରାରେ ଏହି ଅସନ୍ତୋଷ ବାହାରେ

ପ୍ରକାଶ ପାଇବାର ସୁଯୋଗ ପାଇଲି ଏବଂ ସକ୍ରିୟ ହୋଇ ଉଠିଲି । ୧୯୧୯ ନଭେମ୍ବର ମାସରେ ରୁଷ ପ୍ରଥମ କରି ଏକ ବିରାଟ ଭୂଖଣ୍ଡରେ ସାମ୍ରାଜ୍ୟବାଦର ଶୃଙ୍ଖଳି ଛିଣ୍ଡାଇ ସେଠାରେ ଏକ ସମ୍ପୂର୍ଣ୍ଣ ନୂଆ ସାମ୍ୟବାଦୀ ରାଷ୍ଟ୍ର ପ୍ରତିଷ୍ଠା କଲା । ଶ୍ରମିକ, କୃଷକ ସବୁ ଖଟିଖିଆ ଶାସନ କ୍ଷମତା ଦଖଲ କଲେ । ରଜା, ଜମିଦାର, ପୁଞ୍ଜିପତି ଶୋଷକ ଶ୍ରେଣୀର ଶୋଷଣ ଓ ଶାସନ ଲୋପ ପାଇଲା । ସାମ୍ରାଜ୍ୟବାଦୀ ଶକ୍ତିକୁ କେହି ହଟାଇ ପାରିବେ ନାହିଁ । ରାଜାମାନେ ଏ ପୃଥିବୀରେ ଦେବତାରୂପେ ଜନ୍ମ ହୋଇଛନ୍ତି ଏହି ଧାରଣାରେ ଓଲଟ ପାଲଟ ହୋଇଗଲା ଖଟିଖିଆ ଓ ସାଧାରଣ ଲୋକଙ୍କ ଭିତରେ ଆତ୍ମ ବିଶ୍ୱାସ ଓ ନୂଆ ଆଶା ଦେଖାଦେଲା । କେତେକ ଯୁବକ ରୁଷର ଆଦର୍ଶରେ ଅନୁପ୍ରାଣିତ ଓ ଉତ୍ସାହିତ ହୋଇ ନୂତନ ଧରଣର ବିପ୍ଳବର ଚିନ୍ତା ଓ ସୂତ୍ରପାତ ଆରମ୍ଭ କରିଦେଲେ । ସେହି ସମୟରେ ତୁର୍କୀରେ ମଧ୍ୟ ବ୍ରିଟିଶ ବିରୋଧୀ ଖିଲାଫତ ଆନ୍ଦୋଳନ ହେଲା । ଏବଂ ଭାରତ ବର୍ଷରେ ମୁସଲମାନମାନେ ସେଥିରେ ସହାନୁଭୂତି ଦେଖାଇଲେ । ଓଡ଼ିଶାରେ ସବୁରି ମୁହଁରେ 'ସ୍ୱରାଜ୍ୟ ଭାଗ୍ୟ ଅଲବତ ହୋଗା ଛୋଡ଼କେ ଆଓ 'ଗୋଲାମି' ଗୀତ , ପିଲାମାନେ ଦାଣ୍ଡରେ ଏହି ଗୀତ ଗାଇ ବୁଲିଲେ ।

ଏଣ୍ଡେଲୋ ବେଙ୍ଗଲି ସ୍କୁଲକୁ ଏହି ସମୟରେ ନିର୍ମଳ କୁମାର ବସୁ ପ୍ରଧାନ ଶିକ୍ଷକ ହୋଇ ଆସିଲେ । ସେ ସେତେବେଳେ ଯୁବକ, ଅମାୟିକ, ହୃଦୟବାନ୍, ସରଳ ଓ ଚରିତ୍ରବାନ୍ ଲୋକ । ଖଣ୍ଡିଏ ଗ୍ରେଟିଆ ଖଦଡ଼ ପିନ୍ଧିଥାନ୍ତି, ଶିକ୍ଷାରେ ଏମ୍ ଏ., ଧନୀ ଘରର ଏକମାତ୍ର ପୁଅ । ମୁଁ ତାଙ୍କ ପ୍ରତି ଖୁବ୍ ଆକୃଷ୍ଟ ହୋଇ ପଡ଼ିଲି । ତାଙ୍କର ପ୍ରଭାବ ମୋ ଉପରେ ବେଶ ପଡ଼ିଥିଲା । ତାଙ୍କର ପରବର୍ତ୍ତୀ ଜୀବନରେ ଜଣେ ବିଶିଷ୍ଟ ଐତିହାସିକ, ଗାନ୍ଧିଜୀଙ୍କ ବିଶ୍ୱସ୍ତ ଶିଷ୍ୟ, ଓ ତାଙ୍କ ସାହିତ୍ୟର ଅନୁବାଦକ ଓ ଭାରତର ବିଶିଷ୍ଟ ଲୋକ ହିସାବରେ ଆତ୍ମପ୍ରକାଶ କଲେ । କୋଣାର୍କ ଉପରେ ବଙ୍ଗଳାରେ ସେ ଏକ ମୂଲ୍ୟବାନ୍ ଲେଖା ପ୍ରକାଶ କରିଛନ୍ତି । ଶାନ୍ତି-ନିକେତନରେ ସେ ଅଧ୍ୟକ୍ଷତା ମଧ୍ୟ କରିଥିଲେ । କମ୍ୟୁନିଷ୍ଟ ଭାବରେ ମୋର ଅତି ଗୋପନ ସମୟରେ ଥରେ ଆକସ୍ମିକ ଭାବରେ ତାଙ୍କ ସହିତ ଦେଖାହୁଏ । ସେ ଗାନ୍ଧିବାଦରେ ବିଶ୍ୱାସୀ ଥିଲେ ମଧ୍ୟ ମୋତେ ଚିହ୍ନି ମୋର କୁଶଳ ସମାଚାର ପଚାରିବାରେ ଲାଗିଲେ ।

୧୯୨୫ ରେ ଏଣ୍ଡେଲୋ ବେଙ୍ଗଲି ସ୍କୁଲରୁ କୃତିତ୍ୱ ର ସହିତ ବୃତ୍ତି ପାଇ ଉତ୍ତୀର୍ଣ୍ଣ ହେଲି ଏବଂ ପୁରୀ ଜିଲା ସ୍କୁଲରେ ୧୯୨୫ ରେ ପଢ଼ିବାକୁ ଗଲି । ସେଠାରେ ୪ ବର୍ଷ ପାଠ ପଢ଼ିଲି ।

ଆମ ଘରର ଦାଉଁ ଦେଉଳ ବାବାଜୀ ବୈଷ୍ଣବ ସେବା ଧର୍ମ କର୍ମର ପ୍ରଭାବ ପିଲାଦିନରୁ ମୋ ଉପରେ ପଡ଼ିଥିଲା । ପୁରୀକୁ ଭାରତ ବର୍ଷର ସବୁ ବିଶିଷ୍ଟ ଧର୍ମଗୁରୁମାନେ

ଥିଲେ । ଅନୁକୂଳ ଚାଟାର୍ଜୀ ( ସତ୍‌ସଙ୍ଗ ) ନିଗମାନନ୍ଦ ସରସ୍ୱତୀ, ନିତ୍ୟାନନ୍ଦ ପରମହଂସ, ପ୍ରଣବାନନ୍ଦ ସ୍ୱାମୀ ( ଭାରତ ସେବାଶ୍ରମ ସଂଘ ) ପୁରୀ ଆସୁଥିଲେ ଏବଂ ରହୁଥିଲେ । ମୁଁ ସେମାନଙ୍କ ପାଖକୁ ଯାଉଥିଲି ଏବଂ ଧର୍ମ ଉପଦେଶ ଗ୍ରହଣ କରୁଥିଲି । ସେମାନଙ୍କର ଜୀବନୀ, ରାମକୃଷ୍ଣ ପରମହଂସ ଓ ବିବେକାନନ୍ଦ ସ୍ୱାମୀଙ୍କ ବହିର ଲେଖା ପଢ଼ୁଥିଲି । ମାଛ, ମାଂସ, ପିଆଜ, ରସୁଣ ଖାଇବା ଛାଡ଼ିଦେଲି, ଘଣ୍ଟା ଘଣ୍ଟା ଧରି ଧ୍ୟାନ କରୁଥିଲି । ସେହି ସମୟରେ ଘର ଛାଡ଼ି ସନ୍ନ୍ୟାସୀ ହୋଇଯିବାର ଚିନ୍ତା ମୋ ମୁଣ୍ଡରେ ପଶିଲା । ଏହି ପାଠ ପଢ଼ା ସମୟରେ ଅନନ୍ତ ପଟ୍ଟନାୟକଙ୍କ ସଙ୍ଗେ ମୋର ପରିଚୟ ହୋଇଥିଲା ।

୧୯୨୭ ରେ ଗାନ୍ଧି ୨ୟ ଥର ପାଇଁ ପୁରୀ ଆସିଲେ । ମୁଁ ହାଇସ୍କୁଲରେ ପଢ଼ୁଥାଏ । ଗାନ୍ଧିଜୀ ବାପାଙ୍କୁ ଗୋଟିଏ ଫୁଲମାଳ ଦେଇଥିଲେ । ସେହି ମାଳଟି ଆଣି ବାପା ମୋତେ ଯତ୍ନରେ ରଖିବାକୁ କହିଲେ । ଏଠାରେ ଆଉ ଗୋଟିଏ କଥା କହି ରଖେ ଆମେ ପଥୁରିଆ ସାହି ଓ ହେରିଗୋହିରି ସାହିରେ ୧୯୨୨ ରୁ ଘର କରି ଥିଲୁ । ଭାଉ ବିବାଦରେ ବାପା ବ୍ୟସ୍ତହୋଇ ଗାଁ ଛାଡ଼ିଦେଲେ, ଘର ଜମିବାଡ଼ି ସବୁ ଭାଇମାନେ ଭୋଗ କରିବାକୁ ଲାଗିଲେ । ପ୍ରଜା ରଜା ମୁକୁନ୍ଦ ଦେବ ତାଙ୍କର ମହାଭକ୍ତ ବନ୍ଧୁ ଥିଲେ । ତାଙ୍କର ପରାମର୍ଶରେ ସେ ପୁରୀ ସହରରେ ବସବାସ କଲେ । ଆଶ୍ଚର୍ଯ୍ୟ ତାଙ୍କର ଧୈର୍ଯ୍ୟ ଓ ଭ୍ରାତୃସ୍ନେହ ଓ ତ୍ୟାଗ । ଆଉ ଠିକ୍ ଓଲଟା ଥିଲା ଭାଇମାନଙ୍କର ଗୁଣ । କପଟି, ଲୋଭ, ମକଦ୍ଦମ ଖୋର ଓ ବଡ଼ଭାଇଙ୍କ ପ୍ରତି ଶତ୍ରୁତା । ପଣ୍ଡିତ ଗୋପବନ୍ଧୁ ଦାସ ଓ ଆଚାର୍ଯ୍ୟ ହରିହର ଦାସଙ୍କ ସହିତ ସଂସ୍ପର୍ଶରେ ଏହି ସମୟରେ ଆସିଲି । ପଣ୍ଡିତ ଗୋପବନ୍ଧୁ ଦାସ ପଥୁରିଆ ସାହିରେ ରହୁଥିଲେ । ହାତଯୋଡ଼ି ଛକରେ ପରେ 'ସତ୍ୟବାଦୀ ପ୍ରେସ' ଗୋଟି କୋଠାରେ ଖୋଲିଲା । ସାପ୍ତାହିକ 'ସମାଜ' ଏହିଠାରୁ ପ୍ରକାଶ ପାଉଥାଏ । ପଣ୍ଡିତ ଗୋପବନ୍ଧୁ ଦାସଙ୍କୁ ମୁଁ ପ୍ରାୟ ଦେଖେ । ସେ ଜଣେ ବଡ଼ ନେତା, ଦେଶ ପାଇଁ ଓ ଲୋକଙ୍କ ପାଇଁ କାମ କରୁଛନ୍ତି ଏତିକି ବୁଝୁଥିଲି ।

ଏହି ସମୟରେ ସାନବନ୍ଧୁ ଅଣ୍ଡ୍ରୁଜଙ୍କ ସହିତ ମୋର ପ୍ରଥମ ଦେଖାହୁଏ । ସେ ଘଟଣା ମଧ୍ୟ ମଜାର ଘଟଣା । ଏଣ୍ଡ୍ରୁଜ ସତ୍ୟବାଦୀ ପ୍ରେସରେ ଆସି ଥାନ୍ତି । ଆମେ ଶୁଣିଲୁ ଯେ ସାହେବ ଲୁଗା ପିନ୍ଧିଛି । ସେତେବେଳେ ସାହେବ କହିଲେ କେତେ ବଡ଼ ଜୀବ । ଚିଡ଼ିଆଖାନାର ବାଘଠାରୁ ମଧ୍ୟ ଏକ ବଡ଼ ଦେଖିବାର ଜିନିଷ । ତେଣୁ ଆମେ ବହୁତ ପିଲା ଧାଇଁ ପ୍ରେସ ଘରର ଦୁଆର ମୁହଁରେ ରୁଣ୍ଡ ହେଲୁ । ଆମର ପାଟିଗୁଣ୍ଡ ଶୁଣି ପଣ୍ଡିତ ଗୋପବନ୍ଧୁ ଦାସ ପିଲାଙ୍କୁ ଆସି

ଆସି ପଚାରିଲେ "କୁଆଡେ ଯିବୁ ?" ସାହେବ ଲୁଗା ପିନ୍ଧିଛନ୍ତି ଦେଖିବାକୁ ଆସିଛୁ ଶୁଣି କହିଲେ "ଆରେ ପଇସା ଲାଗିବ । ଟିକେଟ ନହେଲେ ଦେଖିବ କିପରି ?" ମୁଁ ପରେ ଏହି ପଇସା ଆଦାୟ କରିବାର ଭାର ନେଲି । ତେଣୁ ସେ ହସି ହସି ଆମ୍ଭମାନଙ୍କୁ ଡାକି ଆଣି ଆମ ପାଖରେ ଠିଆ କରେଇଦେଇ କହିଲେ "ଏମାନଙ୍କୁ ଦେଖିବାକୁ ଟିକେଟ ହୋଇଛି । ଏଇଟି ଠିଆ ହୁଅନ୍ତୁ ।" ପଣ୍ଡିତ ଗୋପବନ୍ଧୁ ଆମ ପିଲାଙ୍କ ସାଙ୍ଗରେ ପିଲାଙ୍କ ଭଳି କେଭଳି ରହସ୍ୟ କରନ୍ତି ତାହା ଏହିଥିରୁ ଜଣାପଡେ । ସେଦିନ ଅଣ୍ଟୁ ଉପରକୁ ଖଦଡ଼ ପିନ୍ଧା ସେହି ମହାନ୍ ବ୍ୟକ୍ତିଙ୍କୁ ଦେଖିଥିଲି ବାସ୍ତବିକ । ପରେ ମୋ ରାଜନୈତିକ ଜୀବନରେ ତାଙ୍କୁ ଦେଖିବାର ଓ ତାଙ୍କ ସହିତ ଆଳାପ କରିବାର ସୁଯୋଗ ପାଇଥିଲି, ନବକୃଷ୍ଣ ଚୌଧୁରୀଙ୍କ ଘରେ କଟକରେ ।

ପୁରୀ ରଥଯାତ୍ରାବେଳେ ଭାରତର ବିଭିନ୍ନ ଅଞ୍ଚଳରୁ ବହୁତ ଯାତ୍ରୀ ଆସନ୍ତି । ସେହି ସମୟରେ ସେହି ଯାତ୍ରୀମାନଙ୍କର ସେବା ଶୁଶ୍ରୂଷା କରିବାପାଇଁ ସ୍ୱେଚ୍ଛାସେବକମାନେ କାମ କରନ୍ତି । ଭାରତ ସେବାଶ୍ରମ ସଂଘର ପ୍ରତିଷ୍ଠାତା ପ୍ରଣବାନନ୍ଦ ସ୍ୱାମୀ ତାଙ୍କର ସନ୍ନ୍ୟାସୀ ଦଳ ଧରି ପୁରୀ ଆସିଥାନ୍ତି । ମୁଁ ଓ ମୋର କେତେକ ସାଙ୍ଗ ତାଙ୍କୁ ଦେଖିବାକୁ ଗଲୁ । ସେଠାରେ ସେ ଆମକୁ ଯାତ୍ରୀମାନଙ୍କର ସେବା କରିବାପାଇଁ ପିଲାଙ୍କର ଗୋଟିଏ ସେବାଦଳ ଗଢ଼ିବାକୁ ପରାମର୍ଶ ଦେଲେ । ଆମେ 'ପୁରୀ ବାଳକ ସେବା ସମିତି' ନାଁରେ ଗୋଟିଏ ସଂଗଠନ ଗଢ଼ି ରଥଯାତ୍ରାରେ ଯାତ୍ରୀଙ୍କୁ ପାଣି ବାଣ୍ଟିବା ଓ କେହି ଅଚେତ ହୋଇଗଲେ ତାଙ୍କର ଶୁଶ୍ରୂଷା କରିବା ଇତ୍ୟାଦି କାମ କରୁ । ଏହି ସଂଗଠନଟି ସ୍ଥାୟୀ ଭାବରେ ରହିଲା । ଏଥିରେ ଆମେ ପ୍ରତିଦିନ ଘଣ୍ଟା କେତେ ଖେଳ ଓ କସରତ କରୁ । ପାଠାଗାର କରିଥିଲୁ । ସେଥିରୁ ବହି ନେଇ ପଢୁ । ରବିବାର ଦିନ କୀର୍ତ୍ତନ କରୁ । ଅନେକ ପିଲା ଏହି ଅନୁଷ୍ଠାନ ପ୍ରତି ଆକୃଷ୍ଟ ହେଲେ । କ୍ଷିତିଶବାବୁ ବୋଲି ଜଣେ ସନ୍ନ୍ୟାସୀ ଏହାର [illegible] ଥିଲେ । ସେ ଆମକୁ ନିଜ ଦେଶକୁ ଭଲ ପାଇବା କଥା ମଧ୍ୟ ଅନେକ ସମୟରେ କହନ୍ତି । ଏଠାରେ ମାନସିକ ଓ ଶାରୀରିକ ଉନ୍ନତି ପାଇଁ ଅନେକ ଖାଦ୍ୟ ମିଳେ । କିନ୍ତୁ ଗୋଇନ୍ଦା ବିଭାଗ ଏହାର ଗନ୍ଧ ପାଇଲେ । ଆମେ ସରକାରଙ୍କ କୋପ ଦୃଷ୍ଟିରେ ପଡ଼ିଲୁ । ଆମର ପ୍ରଧାନ ଶିକ୍ଷକ ଥାନ୍ତି ଆନନ୍ଦ ପତି । ସେ ଓ ସ୍କୁଲ ଇନ୍‌ସ୍‌ପେକ୍‌ଟର ଆମକୁ ଏହି ଅନୁଷ୍ଠାନ ଛାଡ଼ିବାପାଇଁ ବାଧ୍ୟ କଲେ । ମୋ ସହିତ ଅନ୍ୟମାନଙ୍କୁ ଧମକ ଦିଆଯାଇ ଲେଖାଇ ମଧ୍ୟ ନିଆଗଲା । ଏହା ଫଳରେ ମୋ ମନ ଅଧିକ ବିଦ୍ରୋହୀ ହୋଇ ଉଠିଲା । ମୁଁ ଲେଖିଦେବା ପରେ ମଧ୍ୟ ନିୟମିତଭାବେ ସେହି ଆଶ୍ରମକୁ ଯିବାକୁ ଲାଗିଲି ଏବଂ ପୂର୍ବପରି କାମ କରିବାକୁ ଲାଗିଲି ।

ଏହି ସମୟରେ ବଙ୍ଗଳା 'ପଥେର ଦାବୀ', ବିପ୍ଳବୀମାନଙ୍କର ଜୀବନୀ ଓ ଆହୁରି କେତେକଖଣ୍ଡ ଏହି ଧରଣର ବହି ପଢ଼ିଲି ।

ପ୍ରତିବର୍ଷରେ ପ୍ରାୟ ବନ୍ୟା ହୁଏ । ୧୯୨୭-୨୮ ରେ ଗୋଟାଏ ବନ୍ୟା ହୋଇଥିଲା । ପଣ୍ଡିତ ଗୋପବନ୍ଧୁ ଦାସ ବନ୍ୟା ପାଇଁ ଦ୍ୱାର ଘର, ଦୋକାନ, ଦୋକାନ ବୁଲି ଚାଉଳ ପଇସା, ଲୁଗା ଚନ୍ଦା ଆଦାୟ କରୁଥାନ୍ତି । ଗୋଟିଏ ଦିନ ମୁଁ ଭଲ ତାଙ୍କ ସଙ୍ଗରେ ଥାଏ । ସ୍କୁଲରୁ ଫେରି ତାଙ୍କ ସଙ୍ଗେ ଲୁଗା ଜାମାଘର ଚାଉଳ ଆଦାୟ କରିବାରେ ଲାଗିଯାଏ । ମୋର ଅଜାଣତରେ ଏହିପରି ଧୀରେ ଧୀରେ ମୋ ଭିତରେ ଗୋଟାଏ ପରିବର୍ତ୍ତନ ଶ୍ରମେ ବଢ଼ିବାରେ ଲାଗିଲା । ତେବେ ମୁଁ ଅନୁଭବ କରୁଥାଏ ଯେପରି ଆମେ ଗୋଟାଏ ଭୟ, ଦୁଃଖ, ବାଧାବାଧକତା ଭିତରେ ଅସ୍ୱାଭାବିକ ଜୀବନ କଟାଉଛୁ ।

ଇଂରେଜି ଖବର କାଗଜ ମଝିରେ ମଝିରେ ପଢ଼େ । ସେଥିରେ ବନ୍ଦେମାତରମ୍ ଆନ୍ଦୋଳନ କଥା ବାହାରିଥାଏ । ମନଦେଇ ସେ ସମ୍ବାଦ ପଢ଼ିବାକୁ ଲାଗିଲି । ସେହି ଆନ୍ଦୋଳନ ପ୍ରତି ମୋର ସମର୍ଥନ ବଢ଼ିଲା ଏବଂ ପିଲାମାନଙ୍କ ପାଖରୁ ପଇସା ଆଦାୟ କରି ଆନ୍ଦୋଳନର ସାହାଯ୍ୟ ପାଇଁ ପଠାଇଲି । ସେତେବେଳକୁ ମୋର ବୁଦ୍ଧି ହୋଇଲାଣି । ମୁଁ ବୁଝୁଥାଏ ଇଂରେଜ ସରକାରର ଅନ୍ୟାୟ ଖଜଣା ଆଦାୟ ବିରୁଦ୍ଧରେ ଆନ୍ଦୋଳନ ହେଉଛି । ମୋ ମନ ଭିତରେ ଇଂରେଜ ଶାସନ ବିରୁଦ୍ଧରେ ବିଦ୍ରୋହ ଦେଖା ଦେଉଥାଏ ।

ଏହି ସମୟରେ ସାଇମନ କମିଶନ ଭାରତକୁ ଆସିଲେ ଏବଂ ତାଙ୍କୁ ବର୍ଜନ କରିବା ପାଇଁ ହରତାଳ ହେଉଥାଏ । ଯେଉଁଦିନ ସାରାଭାରତରେ ହରତାଳ ପାଳିତ ହେବବୋଲି ଘୋଷଣା କରାହେଲା ସେଦିନ ମୁଁ ଓ ମୋର ଜଣେ ସାଙ୍ଗ ସ୍କୁଲକୁ ଗଲୁ ନାହିଁ ।

ଆମ ସ୍କୁଲରେ ବଡ଼େନପାଓଏଲ୍ ସ୍କାଉଟ ସଂଗଠନ ଥାଏ । ମୁଁ ମଧ୍ୟ ସେହି ସଂଗଠନରେ ଥିଲି । ଏହି ସଂଗଠନ ଇଂରେଜ ସରକାରର ଗୋଟାଏ ଗୋଲାମି ସଂଗଠନ, ଏହାକୁ ଭାଙ୍ଗିବାକୁ ହେବ । ଏଇ କଥା ମୋ ମନରେ ଖୁବ୍ ଜୋରରେ ଉଠିଲା । ମେହି ସଂଗଠନ ଭିତରେ ଥାଇ ସମସ୍ତଙ୍କୁ ଏହି ସଂଗଠନକୁ ଭାଙ୍ଗିବା ପାଇଁ ଗୁପ୍ତ ଭାବରେ ମଡେଇବାକୁ ଲାଗିଲି । ନାନା ଆଳ ଦେଖାଇ ଅନେକ ପିଲା ଏହି ସଂଗଠନରୁ ବାହାରି ଗଲେ ଏବଂ ଯେ ମଧ୍ୟ ରହିଲେ ମୋ ୦ ଜଣଙ୍କୁ ଛାଡ଼ିଦେଲେ ଅନ୍ୟମାନେ ବିଶେଷ ଆଗ୍ରହ ଦେଖାଇଲେ ନାହିଁ । ମୋ ଉପରେ ପ୍ରଧାନ ଶିକ୍ଷକଙ୍କର ରହିଲା ସନ୍ଦେହ । କିନ୍ତୁ ଅଳ୍ପଦିନ ପରେ ସ୍କୁଲ ପାଠ ମୋର ଶେଷ ହୋଇଯିବ ମୁଁ ଚାଲିଯିବି ତେଣୁ ସେ ବିଶେଷ ଆଉ ଆଗେଇଲେ ନାହିଁ । ୧୯୨୯ ଫେବ୍ରୁଆରୀରେ ମେଟ୍ରିକ୍ୟୁଲେସନ ପରୀକ୍ଷା ଦେଇ ପୁରୀଜିଲ୍ଲା ସ୍କୁଲରୁ ବିଦାୟ ନେଲି ।

କିନ୍ତୁ (Patriotism) ଦେଶପ୍ରେମ ଉପରେ ଇଂରେଜୀ ରଚନା ଲେଖା ପରୀକ୍ଷାରେ ପଡ଼ିଲା । ମୁଁ ସୁଭାଷଚନ୍ଦ୍ର ବୋଷଙ୍କ ବିଷୟରେ ବଧାଡ଼ି ଲେଖିଦେଲି । ସେତେବେଳକୁ ଲାଲା ଲାଜପତ୍ ରାଏ, ଚିତ୍ତରଞ୍ଜନ ଦାସ, ବଲ୍ଲଭଭାଇ ପଟେଲ, ମୋତିଲାଲ ନେହେରୁଲାଲଙ୍କ ନାମ ଶୁଣିଥାଏ । ପ୍ରସିଦ୍ଧ କଲିକତା କଂଗ୍ରେସର ବିବରଣୀ ଭଲ ଭାବରେ ଖବର କାଗଜରୁ ପଢ଼ି ସେଥିରେ ଆକୃଷ୍ଟ ହୋଇ ପଡ଼ିଥାଏ । ଆତ୍ମୀୟ ହରିହର ଦାସ ଆମ ମାମୁଁ ଘରକୁ ପ୍ରାୟ ଆସନ୍ତି ଏବଂ ଅନେକ ସମୟରେ ଅଙ୍କ ବୁଝାଇ ଦିଅନ୍ତି । ତେଣୁ ସୁଭାଷବୋଷଙ୍କ ଜୀବନରୁ ଧାଡ଼ି ଲେଖିବା ମୋ ପକ୍ଷରେ ଖୁବ୍ ସ୍ୱାଭାବିକ ଥିଲା ! କିନ୍ତୁ ଏଥିରେ ପ୍ରଧାନ ଶିକ୍ଷକ ମୋ ଉପରେ ବିରକ୍ତ ହୋଇ ଡକାଇ କହିଲେ "ତୁମେ ଇଂରେଜୀରେ ଫେଲ ହୋଇଥାନ୍ତ । କେବଳ ଭଲ ପଢ଼, ସେଥିପାଇଁ ତୁମକୁ ଦୟାକରି ଛାଡ଼ିଦେଲି । କାରଣ କ'ଣ ଜାଣିଛ ?" ମୁଁ ନୀରବ ରହିବାର ଦେଖି କହିଲେ, "ସୁଭାଷ ବୋଷ ରାଜଦ୍ରୋହୀ, ତା ବିଷୟରେ କାହିଁକି ରଚନାରେ ଲେଖିଥିଲ ? ଆଉ କେବେ ଏଭଳି ଲେଖିବ ନାହିଁ ।" ଏସବୁ କଥା ମୋତେ ବୁଝିଲି ତ ନାହିଁ, କେବଳ ବୁଝିଲି ମୋ ମନର ଭୀଷଣ ରାଗ !

---

## ଆଗକୁ ଯାଉଁ

ଏଥି ଭିତରେ ନଈରେ ବହୁତ ପାଣି ବୋହି ଗଲାଣି ! ୧୯୨୨ରେ ଚୌରିଚୌରା ଘଟଣା ପରେ ଗାନ୍ଧି ଅସହଯୋଗ ଆନ୍ଦୋଳନ ବନ୍ଦ କରିଦେବା ଫଳରେ ଯୁବକ ତଥା ବହୁ ଲୋକଙ୍କ ମନରେ ଅସନ୍ତୋଷ ଦେଖାଦେଲା, ରୁଷିଆରେ ଶ୍ରମିକ ଶ୍ରେଣୀ ରାଜନୈତିକ କ୍ଷମତା ଦଖଲ କଲାପରେ ମାର୍କ୍ସବାଦ—ସାମ୍ୟବାଦ ତତ୍ତ୍ୱ ଦ୍ୱାରା ଅନେକ ଯୁବକ ଓ ବିପ୍ଳବୀ ଆକୃଷ୍ଟ ହେଲେ ଏବଂ ସେହି ତତ୍ତ୍ୱ ଉପରେ ଭାରତରେ ସୋସିଆଲିଷ୍ଟ ଓ କମ୍ୟୁନିଷ୍ଟ ଗ୍ରୁପ୍ ସବୁ ବିଭିନ୍ନ ପ୍ରଦେଶରେ, ସହରରେ ଗଢ଼ିଲେ, ଆତଙ୍କବାଦୀମାନେ ମଧ୍ୟ ସେମାନଙ୍କ ଦୃଷ୍ଟିକୋଣରୁ ଭାରତର ମୁକ୍ତି ପାଇଁ ସଙ୍ଗଠନମାନ ଗଢ଼ିଲେ, ବଙ୍ଗଳାରେ ଗୋରା ବଡ଼ ବଡ଼ ଅଫିସର ମାନଙ୍କୁ ସେମାନେ ଗୁଳିକରି ମାରିବାକୁ ଆରମ୍ଭ କଲେଣି । ଭଗତ ସିଂ, ଶୁକଦେବ ରାଜଗୁରୁ ବଟୁକେଶ୍ୱର ଦତ୍ତ, ପ୍ରଭୃତି ବଡ଼ଲାଟଙ୍କୁ ପାର୍ଲିଆମେଣ୍ଟ ଘରେ ଗୁଳି କଲେ, ତାଙ୍କର ଟ୍ରେନକୁ ବୋମା ରଖି ଓଲଟାଇ ଦେବାର ବ୍ୟବସ୍ଥା କରିଥିଲେ ।

ଏସବୁ ଘଟଣା ପଛରେ କେତେକ ସାମାଜିକ କାରଣ ଅଛି । ଭାରତବର୍ଷରେ ବମ୍ବେ ଅହମଦାବାଦ ପ୍ରଭୃତିରେ ଲୁଗା ଓ ବଙ୍ଗଳାରେ ଝୋଟକଳ ସବୁ ବସିଲାଣି । ରେଲଲାଇନ ବହୁତ ଯାଗାକୁ ଗଲାଣି । ଆଫିସ ଖୋଲିଲା ଭଳି ଶ୍ରମିକ ଶ୍ରେଣୀର ଜନ୍ମ

ହୋଇଗଲେଣି । ସେମାନଙ୍କ ନିଜର ଓ ଜାତୀୟ ଦାବୀ ଉପରେ ସଙ୍ଗଠିତ ମଧ୍ୟ ହୋଇଲେଣି । ନିଖିଳ ଭାରତ ଶ୍ରମିକ ସଙ୍ଘ ଓ କଳକାରଖାନା ମାନଙ୍କରେ ଶ୍ରମିକମାନେ ନିଜ ନିଜର ସଂଗଠନମାନ ଗଢ଼ିଲେଣି ଏବଂ ଜାତୀୟ ଚେତନାରେ ଉଦ୍‌ବୁଦ୍ଧ ହୋଇଲେଣି । ମଧ୍ୟବିତ୍ତ ବୁର୍ଜୁଆ ଶ୍ରେଣୀର ପ୍ରାଧାନ୍ୟ ସମାଜରେ ଦେଖା ଦେଲଣି ।

ତେଣୁ ଭାରତରେ ଜାତୀୟ ଆନ୍ଦୋଳନ—ସ୍ୱାଧୀନତା ଆନ୍ଦୋଳନ ବୁର୍ଜୁଆ ଶ୍ରେଣୀର ନେତୃତ୍ୱରେ ପରିଚାଳିତ ହେଉଥାଏ । କିନ୍ତୁ ମଧ୍ୟବିତ୍ତ ଯୁବକ ପେଟିବୁର୍ଜୁଆ ଶ୍ରେଣୀ ଇଂରେଜ ଶାସନର ଲୁଣ୍ଠନ, ଅତ୍ୟାଚାର ବିରୁଦ୍ଧରେ ଅସନ୍ତୁଷ୍ଟ ହୋଇ ବିପ୍ଳବ ପନ୍ଥା ଅନୁସରଣ କରୁଥାନ୍ତି । ଜାତୀୟ କବି ଓ ଲେଖକମାନେ ବିଦେଶୀ ଇଂରେଜ ସରକାର ବିରୁଦ୍ଧରେ କବିତା ଓ ଲେଖାମାନ ପ୍ରକାଶ କରୁଥାନ୍ତି । ବଙ୍ଗଳା ରେ ପଥେର ଡାକ, ପଥେର ଦାବୀ, ପଲ୍ଲୀର ଅବସାନ, ବନ୍ଦେମାତରମ୍ ପ୍ରଭୃତି ଯୁବକମାନଙ୍କୁ ଉନ୍ମତ୍ତ କରୁଥାଏ । ଗ୍ରାମାଞ୍ଚଳ କ୍ଷେତ୍ରରେ ବଢ଼ୁ ଥାଗାରେ ଖଜଣା, ଟିକସ ବିରୁଦ୍ଧରେ ଇଂରେଜ ଶାସନ ବିରୁଦ୍ଧରେ ଗ୍ରାମୀମାନେ ବିଦ୍ରୋହ କରୁଥାନ୍ତି ଆୟାରଲେଣ୍ଡର ଡି. ଭେଲେରା ଓ ମେଠାକାର ଇଂରେଜ ଶାସନ ବିରୋଧୀ ଆନ୍ଦୋଳନର ଗରମ ପବନ ମଧ୍ୟ ଏ ଦେଶରେ ବାଜୁଥାଏ ।

ଭାରତର ସବୁ ଶ୍ରେଣୀ, ସବୁ ଲୋକେ ସ୍ୱାଧୀନତା ପାଇଁ ଇଂରେଜ ସରକାର ବିରୁଦ୍ଧରେ ଗୋଟିଏ ପୀଠରେ ଏକଜୁଟ ହେବାକୁ ଲାଗିଲେଣି ।

ଭାରତବର୍ଷରେ ପାଦ୍ରୀମାନେ ଖ୍ରୀଷ୍ଟିୟାନ ହେବାକୁ ହିନ୍ଦୁମାନଙ୍କୁ ପ୍ରବର୍ତ୍ତାଉଥାନ୍ତି ଏବଂ ଅନେକେ ଖ୍ରୀଷ୍ଟିୟାନ ହେଉଥାନ୍ତି । ଯେତେବେଳେ ଖ୍ରୀଷ୍ଟିୟାନମାନେ ଇଂରେଜ ସରକାରଙ୍କର ଗୋଇନ୍ଦା ଥିଲା । ଏହାର ପ୍ରତିକ୍ରିୟା ଦେଖାଦେଲା । ହିନ୍ଦୁ ଧର୍ମର କୁସଂସ୍କାର ଓ ଅନ୍ଧ ବିଶ୍ୱାସ ଉପରେ ।

ଆକ୍ରମଣ ହେଲା । ବ୍ରାହ୍ମ ଧର୍ମର ଜନ୍ମ ହେଲା । ଦୟାନନ୍ଦ ସରସ୍ୱତୀ ଯେ କୌଣସି ଧର୍ମର ଲୋକଙ୍କୁ ହିନ୍ଦୁ ଧର୍ମରେ ଦୀକ୍ଷିତ କରିବାକୁ ଲାଗିଲେ ।

ଏହିସବୁର ଧକ୍‌କା ମଧ୍ୟ ଓଡ଼ିଶାର ଜୀବନକୁ ଦୋହଲାଉଥାଏ । ପଣ୍ଡିତ ଗୋପବନ୍ଧୁ ନୀଳକଣ୍ଠ ପ୍ରଭୃତି ଏହାର ଅଗ୍ରଦୂତ ଥିଲେ ଓଡ଼ିଶାରେ । କିନ୍ତୁ ଓଡ଼ିଶାରେ କଳକାରଖାନା ନଥିଲା କି ଶ୍ରମିକ ଶ୍ରେଣୀ ନଥିଲେ, ଥିଲେ କେବଳ କୃଷୀ ସେମାନେ ଥିଲେ ଧର୍ମାନ୍ଧ ଅଥଚ ଅତ୍ୟାଚାରିତ । ଧୂମଧାମ ସରିଗଲା ।

୧୯୨୯ ଜୁନ୍‌ରେ ପୁଷ୍ପ ଓ୍ୟାଡ଼ କଟକ ବାହାରିଲି । ବୋଡ୍ରି ଗହଣା ପେଡ଼ିରେ କମ୍ପକାଠି ମାଲେ ଭଳି ସାରା ଓଡ଼ିଶାରେ ଗୋଟିଏ କଲେଜ—ରେଭେନ୍‌ସା କଲେଜ । ସେଥିରେ ମୋତେ ସ୍ଥାନ ମିଳିବ କି ନାହିଁ ସନ୍ଦେହରେ ଥାଏ । ଧୂଆଁ

ଜଲରେ ତ ବୃତ୍ତି ବାଇଗୁଣ୍ଡୀ ରେ ନା ଜଣାଇ ନଥାନ୍ତି । ସେଥିରେ ପୂର୍ଣ୍ଣ ୧୨, ୧୩ ଶ୍ରେଣୀରେ ପାସ କରିବା ପିଲା ଆଂଗ୍ଲୋଚେ ଗଣିହେବ । ତେଣୁ ମୋତେ ସ୍ଥାନ ମିଳିଗଲା । ଏବେ ବ ଧା ଖୁବ୍ ହୋଇଗଲେଣି; ତାଙ୍କୁ ଦେଖିବାକୁ ହେବ ଆଉ ନା ସବୁଙ୍କ ମନଙ୍କ ଲୋକଙ୍କ ଉପକାର କରିହେବ ଏପରି ଗୋଟାଏ ଅର୍ଥକାରୀ ବ୍ୟବସାୟ ଥିଲା ଜାଣେ । ସେଥିପାଇଁ କଟକ ଡାକ୍ତରୀ ସ୍କୁଲରେ ଗୋଟାଏ ଦରଖାସ୍ତ ଦେଇଥାଏ । ସେଠି ମଧ୍ୟ ସ୍ଥାନଟିଏ ମିଳିଗଲା । ମନ ଗୁହୁଁ ଥାଏ ଘୋଡ଼ା ଚଢ଼ିବ । ତେଣୁ ଗ୍ରେଟିଆ ଡାକ୍ତର ନହୋଇ ଏକା ବେଳକେ ବଡ଼ ଡାକ୍ତର ହେବାପାଇଁ କଲେଜରେ ଆଇ. ଏସ୍. ସି. ପଢ଼ିଲି ।

ମୁଁ କଟକ ଆସି ପ୍ରଥମେ ବାନୁଜି ଆଲୁଅ ଦେଖିଲି ରେଭେନ୍‌ସା କଲେଜରେ ଚୋବାଗମରେ ହାତ ମାଇଲେ ଆଲୁଅ, ପବନ, ମୋତେ ଲାଗୁଥାଏ ଏ ଗୋଟାଏ ସ୍ୱର୍ଗପୁରୀ । ଏବେ ପଥମ କରି ଛନଟଙ୍କା ଦେଇ ଗୋଟାଏ ବ୍ଲାକବାଡ଼ ଫାଉଣ୍ଟେନ ପେନ୍ କିଣିଲି । ସେ ଯାଏଁ ଯନ୍ତ୍ର ଝର କଲମ କଥା ଶୁଣିଥାଏ କିନ୍ତୁ ଦେଖି ନଥାଏ । ଅତି ଯତ୍ନରେ ଖୋଳରେ ଭର୍ତ୍ତି କରି ରଖେ । ଜାଲେ ତା'ର କଲ ଖରାପ ହୋଇଯିବ । ଏବେ କାଠି କଲମ ଗୁଡ଼ା ଝର କଲମ, ଘୋଲାଙ୍କ ତେଲ ଦୀପ୍ ଗୁଡ଼ା ବିଜୁଳି ଆଲୁଅ, ଆଉ ଜଣେ ସାଙ୍ଗ ଖୋର୍ଦ୍ଧାରୁ ଆସି ନାଁ ଲେଖାଇଥାଏ । ହଷ୍ଟେଲରେ ସେ ଓ ମୁଁ ପାଖାପାଖି ରୁମରେ ଥାଉ । ସେ ଫ୍ଲାସ୍ ପାଇଖାନ ଦେଖି ନଥାଏ । ତେଣୁ ପାଇଖାନା ଏଡ଼େ ପରିଷ୍କାର ଦେଖି ବୁଝୁନଥାଏ । କିନ୍ତୁ ଝାଡ଼ା ମଣ୍ଡିଲାଣି, ମୋତେ ଡାକିନେଇ ପଚାରିଲା ଏଇଟା କ'ଣ ପାଇଖାନା । ଗାଆଁର ବିଲ ଗୁଡ଼ା ସେ ଆସିଲେ ଫ୍ଲାସ ପାଇଖାନାକୁ । ଆମେ ସବୁ କେଉଁ ଅବସ୍ଥାରେ ଥିଲୁ ଏବଂ ବିଜ୍ଞାନର ଉନ୍ନତ ସାଙ୍ଗରେ କିଭଳି ଆମେ ଆଗକୁ ପାଦ ପକାଉଛୁ ତାହା ସଚେତନ ଭାବରେ ବୁଝି ପାରୁନଥିଲେ ମଧ୍ୟ ପ୍ରତ୍ୟେକ ନିଜ ଜୀବନରେ ତାହା କରିପାଉ । ବିଜ୍ଞାନର ଉନ୍ନତ ଆମ ଜୀବନକୁ ପ୍ରଭାବିତ କରେ ସମାଜକୁ ଠେଲିନାଏ ଆଗକୁ ।

ରେଭେନ୍‌ସା କଲେଜ ଚାରିପାଖ ସେତେବେଳେ ଅନ୍ଧାର । ୨, ୪ଟା ଗ୍ରେଟିଆ ଦୋକାନ ଥାଏ । ଚୁଡ଼ାଭଜା, ଚୂଡ଼ା, ମୁଢ଼ି, ବରା ପିଆଜି ଗୁଡ଼ିଆ ଦୋକାନ ୨, ୪ଟା ଥାଏ । ରାସ୍ତା ଥାଏ କଞ୍ଚା ପଠିପରି ନାଲି ଗୋଡ଼ିର, ବର୍ଷା-ଦିନେ ସାଇକେଲରେ ଗଲେ ନାଲି ପାଣି ଛିଟିକାରେ ଲୁଗା ହୁରି ଖେଳର ଅବସ୍ଥା ଭଳି ହୁଏ । ପଠାଣ ମାନଙ୍କର ଗୋଟାଏ ବଳଦଟଣା ଗାଡ଼ି ସାଧାରଣ ଲୋକଙ୍କ ପାଇଁ, ଆଉ ପଇସା ବାଲାଙ୍କ ପାଇଁ ୨ଟା ଘୋଡ଼ାଟଣା ସୁଆରୀ ଗାଡ଼ି । କଥା କୁହା ସିନେମା ନଥିଲା ହାତ ଗୋଡ଼ ହଲା (ମୂକ) ସିନେମା ହଲ ଗୋଟାଏ ଟାଉନରେ ଥାଏ । ମୁଁ ସହରକୁ ଗଲେ ପ୍ରାୟ ଚାଲିକରି ଯାଏ । ରିକ୍‌ସା ଜନ୍ମ ସେତେବେଳେ କଟକରେ ହୋଇନାହିଁ ।

# ଝଡ଼ର ସୂଚନା

କଲେଜରେ ପାଠ ପଢୁଥାଏ । ଷଷ୍ଠମ ଛାତ୍ରାବାସରେ ରହୁଥାଏ । ଯତୀନ ଦାସଙ୍କ ଆମରଣ ଅନଶନ ସମ୍ବାଦ ପ୍ରକାଶ ପାଇଲା, ରାଜନୈତିକ ବନ୍ଦୀମାନଙ୍କର କାରାଗାରରେ ସ୍ୱତନ୍ତ୍ର ଶ୍ରେଣୀର ବ୍ୟବସ୍ଥାର ଦାବୀ କରି ସେ ଆମରଣ ଅନଶନ ଆରମ୍ଭ କରିଥିଲେ । ଏ ସମ୍ବାଦ ମୋ ମନରେ ଅସ୍ଥିରତା ସୃଷ୍ଟି କଲା, ଷ୍ଟେଟସମାନ—ଇଂରେଜ ସରକାରଙ୍କର ମୁଖପତ୍ର—ଛଡ଼ା ଅନ୍ୟ କୌଣସି ଜାତୀୟ ସମ୍ବାଦ ପତ୍ର କଲେଜରେ ପଢ଼ିବା ମନା । ମୁଁ ଲୁଚିକରି ବାହାରୁ ଅମୃତବଜାର ପତ୍ରିକା ଆଣି ରାତିରେ କବାଟ କିଳି ମଶାରି ଭିତରେ ବସି ଲୁଚିକି ପଢ଼େ । ପୁଲିସ ଗୋଇନ୍ଦା ମୋର ଗତିବିଧି ବହୁଦିନରୁ ଲକ୍ଷ୍ୟ କରୁଥିଲେ, ବୁଝିଲି । ମୋ ଘର ହଠାତ୍ ଦିନେ ହଷ୍ଟେଲ କର୍ତ୍ତୃପକ୍ଷ ଖାନତଲାସ କଲେ । କିନ୍ତୁ କୌଣସି କାଗଜ ପାଇଲେ ନାହିଁ, ତଥାପି ମୋତେ ତାଗିଦ୍ କରି ଦିଆଗଲା ଯେ ଯେପରି ରାଜଦ୍ରୋହ ମୂଳକ ସମ୍ବାଦ ପ୍ରକାଶ ପାଉଥିବା ଖବର କାଗଜ ମୁଁ ନ ଆଣେ । ଗାନ୍ଧିଜୀଙ୍କର ଅହିଂସାରେ ସ୍ୱରାଜ ଦେବ ଏ ବିଶ୍ୱାସ ମୁଁ କରିପାରୁନଥିଲି । ଯତୀନ ଦାସ ୬୨ ଦିନ ଅନଶନ କରି ଯେତେବେଳେ ମରିଗଲେ ମୋ ମନରେ ଭୟଙ୍କର ଆଘାତ ଲାଗିଲା । ମୁଁ ସେ ଦିନ ଉପବାସ କଲି । ଅଜ୍ଞାତେ ଦାସଙ୍କ କାର୍ଯ୍ୟ କଳାପ ପ୍ରତି ମୋର ମନ ଢଳିଲା । ଏହି ସମୟରେ ମୋର ସହପାଠୀ ଥିଲେ ସୁଧୀର ଘୋଷ, ସେ ମୋତେ କଂଗ୍ରେସ, ଗାନ୍ଧୀ ପ୍ରଭୃତି ବିଷୟରେ ଅନେକ କଥା କହନ୍ତି । ସେ ଆଗରୁ କଂଗ୍ରେସରେ ଯୋଗଦେଇ ପଢ଼ାଛାଡ଼ି ଦେଇଥିଲେ । ଅନେକ ଦିନ ପରେ ପୁଣି ଆସି କଲେଜରେ ମୋ ସଙ୍ଗେ ପଢ଼ିଲେ ।

ଏହି ସମୟରେ ପ୍ରାଣନାଥ ପଟ୍ଟନାୟକ ମଧ୍ୟ ମୋ ପାଖ କାଁଥରେ ରହି ମୋ ଉପର ଶ୍ରେଣୀରେ ପଢ଼ୁଥିଲେ । ଭଗବାନ ଚରଣ ପାଣିଗ୍ରାହୀ, ରାମକୃଷ୍ଣ ପତି ସଦାଶିବ ମିଶ୍ର, ଶ୍ୟାମ ସୁନ୍ଦର ମିଶ୍ର ମଧ୍ୟ ମୋ ଉପର ଶ୍ରେଣୀରେ ପଢ଼ୁଥାନ୍ତି । ସେମାନଙ୍କୁ ମୁଁ ବଡ଼ ଭାଇ ଭଳି ଭାବି ଖାତିର କରୁଥିଲି । ଜୀବନ ସେହି ସମୟରେ ସମ୍ପର୍କ ଓ ବ୍ୟବହାର ସେହିପରି ଥିଲା ।

୧୯୨୯ ଲାହୋର କଂଗ୍ରେସ ଡିସେମ୍ବର ତା ୩୧ରେ ଭାରତର ପୂର୍ଣ୍ଣ ସ୍ୱାଧୀନତା ଘୋଷଣା କଲେ । ଏ ସଂବାଦ ଚାରିଆଡ଼େ ବିଜୁଳି ବେଗରେ ଖେଳିଗଲା । କଲେଜ ଭିତରେ ଏହା ଏକ ବିଶୃଙ୍ଖଳା ସୃଷ୍ଟି କଲା ପାଠପଢ଼ା ଭିତରେ ଜୀବନର

ବିସ୍ମିତ ହୋଇ ଯାଉଥାଏ, କିନ୍ତୁ ମନ ଭିତରେ ଗୋଟାଏ ଅଭିନବ କାମ କରୁଥାଏ । ଏହିପରି ଅବସ୍ଥାରେ ୧୯୩୦ ଜାନୁୟାରୀ ତା ୨୬ ରେ ସାରା ଭାରତରେ ପ୍ରଥମ ସ୍ୱାଧୀନତା ଦିବସ ପାଳିତ ହେଲା । କଟକରେ ଅଳ୍ପ ସଂଖ୍ୟକ କଂଗ୍ରେସ ନେତା ଓ କର୍ମୀ ହରେକୃଷ୍ଣ ମେହେତାବଙ୍କ ମୁଖ୍ୟ ଭୂମିକା ଅଗଣାରେ ଏହା ପାଳନ କଲେ । କେଉଁଠି ହେଲା ବା କେତେଜଣ କଲେ ସେଥିରେ ଯାଏ ଆସେ ନାହିଁ । କିନ୍ତୁ ଏଥିରେ ଥିଲା ଏକ ପ୍ରାଣବନ୍ତ ଉଦ୍ଦୀପନାର ବହିଃପ୍ରକାଶ । ଘୋଷଣା ପତ୍ରର ପ୍ରତ୍ୟେକଟି ଅକ୍ଷର ଥିଲା ଇଂରେଜ ସରକାର ବିରୁଦ୍ଧରେ ଗୋଟିଏ ଗୋଟିଏ ଶକ୍ତିଶାଳୀ ବୋମା ।

କିନ୍ତୁ ଶୀଘ୍ର ଫେବୃୟାରୀ ମାସ ବିତିଗଲା । ଗାନ୍ଧି କଂଗ୍ରେସ ଆଇନ ଅମାନ୍ୟ ଆନ୍ଦୋଳନ ଘୋଷଣା କଲେ । ଆଇନ ଅମାନ୍ୟ ଆନ୍ଦୋଳନର ରୂପ କ'ଣ ହେବ ସେ କଥା ଗାନ୍ଧିଙ୍କି ଜଣା । ଲୁଣ ମାରିବା ସେତେବେଳେ ଇଂରେଜ ସରକାର ଆମ ଦେଶରେ ବେଆଇନ କରି ବିଲାତି ଲୁଣ କାରବାର ଚଳେଇ ଥାଏ । ଗାନ୍ଧି ଏହି ଆଇନକୁ ପ୍ରଥମେ ନିଜେ ଅମାନ୍ୟ କରିବାକୁ ଠିକ କରି ଲବଣ ସତ୍ୟାଗ୍ରହ କରିବାକୁ ମାର୍ଚ୍ଚ ତା ୧୨ରେ ସଦଳ ବଳରେ ଡାଣ୍ଡି ଯାତ୍ରା କଲେ । ଭାରତର ବିଭିନ୍ନ ପ୍ରଦେଶରେ ବାଛି ବାଛି ସତ୍ୟାଗ୍ରହୀଙ୍କୁ ନେଇ ଲବଣ ସତ୍ୟାଗ୍ରହ ଆରମ୍ଭ ହେଲା ।

ଓଡ଼ିଶାରୁ ଆଚାର୍ଯ୍ୟ ହରିହର ଦାସ, ଗୋପବନ୍ଧୁ ଚୌଧୁରୀ ପ୍ରଭୃତି କଟକରୁ ବାଲେଶ୍ୱର ଇଞ୍ଚୁଡ଼ିକୁ ଲୁଣମରା ଆଇନ ଅମାନ୍ୟ କରିବାକୁ ବାହାରିଲେ । କଟକ ସହରର ରାସ୍ତା କଡ଼ରେ ହଜାର ହଜାର ଲୋକ ତାଙ୍କୁ ଅଭ୍ୟର୍ଥନା କରୁଥାନ୍ତି । ମୁଁ ଜନସମୁଦ୍ର ସଙ୍ଗେ ସେମାନଙ୍କୁ ମହାନଦୀକୂଳ ମୋହନା ପର୍ଯ୍ୟନ୍ତ ପାଛୋଟି ନେଇ ଯାଇଥିଲି, ଏହା ଥିଲା ଏକ ଗଣ ଆନ୍ଦୋଳନ । ଜନସାଧାରଣଙ୍କ ମନରେ ସ୍ୱାଧୀନତାର ଚେତନା ଏହା ଆଣିଦେଉଥିଲା । ଜନସାଧାରଣଙ୍କୁ ନାନା ପ୍ରକାରରେ ଏହା ସକ୍ରିୟ ଆନ୍ଦୋଳନ ସଙ୍ଗେ ଜଡ଼ିତ କରୁଥିଲା, ମୋ ମନରେ ଏହା ବେଶ୍ ରେଖାପାତ କଲା ଏବଂ ଏହି ଆନ୍ଦୋଳନ ଯଥାର୍ଥ ବୋଲି ବିଚାରିଲି ।

ମୋର ଜଣେ ଆତ୍ମୀୟ ସୁଶୀଳ ଘୋଷଙ୍କ ସଙ୍ଗେ ବାଲେଶ୍ୱରର ଇଞ୍ଚୁଡ଼ି ଲୁଣମରା ଦେଖିବାକୁ ଗଲି । ଲବଣ ସତ୍ୟାଗ୍ରହରେ ଗାଁ ଗଣ୍ଡାର ପୁରୁଷ, ସ୍ତ୍ରୀ ପିଲାମାନେ ମଧ୍ୟ ଯୋଗଦେଉଥାନ୍ତି । ଏ ଗୋଟାଏ ନୂଆ କଥା । ସମୁଦ୍ରର ଲୁଣିଆ ପାଣି ଆଣି ହାଣ୍ଡିରେ ସିଝେଇବା । ଏଥିରେ ପୁଣି ଦୋଷ, ସମୁଦ୍ରପାଣି କ'ଣ ଏଥିରେ ଶୁଖି ଯାଉଛି ନା ସରି ଯାଉଛି, କିନ୍ତୁ ପୁଲିସ ଗରମ ପାଣିକୁ ଲୋକଙ୍କ ଉପରେ ଢ଼ାଳି ଦେଉଥାଏ । ଲୋକଙ୍କର ଦେହଫୋଟକା ହୋଇ ଯାଉଥାଏ । ଲୋକଙ୍କୁ ଘଉଡ଼ାଇବା ପାଇଁ ଲଠିରେ ପିଟିପିଟି ଲହୁଲୁହାଣ କରି ଦେଉଥାନ୍ତି ଏସବୁ ଖବର ଲୋକଙ୍କୁ ଆହୁରି ଉତ୍ତେଜିତ କରୁଥାଏ । ସେଠାରୁ ଫେରିଲା ପରେ ମୋ ମନ ଭିତରେ ଦୁଇଟି ଚିନ୍ତା

ଅଟେ ଘୋର ସଙ୍ଘର୍ଷ ଆରମ୍ଭ ହେଲେ, ଏହାର ସମାଧାନ ଓ ପରିମାଣ ବିଷୟରେ ଇଂରେଜର ସହିତ ହିନ୍ଦୁ ଜାତିଙ୍କ ଲାଗିଲା । ଗୋଟାଏ ଦିଗରେ ବାଧା, ମା ତାଙ୍କର ମୁଖ ସ୍ଫୁରଣ ଓ ନିକଟ ଦୂରର ଶାସନ ଦାୟିତ୍ୱ ତାଙ୍କ ଜୀବନର କଳ୍ପନା, ଅନ୍ୟ ଦିଗରେ କାରାଗାର, ଲାଞ୍ଛନା, ଦୁଃଖ ଓ ଦୈନ୍ୟ ଭରା ଜୀବନ ଓ ଭାରତର ସ୍ୱାଧୀନତା ପାଇଁ ସଂଗ୍ରାମ । ସମାଧାନ ସେ ନିଜେ ଖୋଜି ନେଲେ ।

## ଦୁଇ

ଜୁଲାଇ ମାସ । ଆକାଶରେ କଳାମେଘର ଭିଡ଼, ତଳେ ପାଣିର ସୁଅ, ଘନ ଅନ୍ଧକାରରେ ଭରି ଯାଇଛି । ଦୁଇଟା ସାର୍ଟ ଓ ଦୁଇଟା ଧୋତି ଏକା ସାଙ୍ଗରେ ଧରି ଘରୁ ବାହାରିଗଲି ଅନ୍ଧାର ସାଙ୍ଗରେ ମିଶି । ଜୀବନର ନୂତନ ଯାତ୍ରା ପଥରେ ପାଦ ବଢ଼ାଇଲି । ଯେଉଁ ପଥରେ ଚାଲିବାକୁ ଠିକ୍ କରିଥିଲି ତାହା ରହିଲା ଦୂରରେ— ଅପରିଚିତ ଦିଗରେ । ଏ ପଥର ଶେଷ, ଦୃଷ୍ଟିର ବାହାରେ । ଜାଣିଥିଲି କେବଳ ଏପଥ ବଡ଼ ଦୁର୍ଗମ ।

ବାଲେଶ୍ୱରରେ ସେତେବେଳେ ଖଜଣା ବନ୍ଦ ଆନ୍ଦୋଳନ ଆରମ୍ଭ ହୋଇ ଯାଇଥାଏ । ଚଉକିଦାରି ଟିକସ ଓ ଖଜଣା ଲୋକେ ସରକାରଙ୍କୁ ଦେଉ ନଥାନ୍ତି । ସ୍ୱରାଜ୍ୟ ଆଶ୍ରମରୁ ବାଲେଶ୍ୱରର 'ଗୋକୁଳାନନ୍ଦ ମହାନ୍ତିଙ୍କ ସାଙ୍ଗରେ ମୋତେ ବାଲେଶ୍ୱର ପଠାଇ ଦିଆଗଲା । ମୁଁ ଟ୍ରେନ୍‌ରେ ତାଙ୍କ ସଙ୍ଗରେ ଗଲି ।

ନୂଆ ଜୀବନ ଆରମ୍ଭ ହେଲା । ଗୋକୁଳ ବାବୁଙ୍କ ସ୍ନେହଦିନୁ ମିତ ବୋଲି ଡାକେ । ସେ ମୋତେ ବାଲେଶ୍ୱର ସହରରୁ ନଅ ନମ୍ବର ଇଉନିୟନକୁ ପଠାଇ ଦେଲେ । ପୁଲିସ ଗ୍ରହଣୀ—ଆକ୍ରମଣ, ଗ୍ରାମର ଲୋକେ ଦଣ୍ଡବଦ୍ଧ, ସ୍ତ୍ରୀ ଲୋକେ ମଧ୍ୟ ଏଥିରେ ସୈନିକ ଗୋଟିଏ କୁନ୍ଦ ଉପରେ ଗାଁର ଭଗତ ଘରେ ଆମର ଆଶ୍ରମ । ସ୍ତ୍ରୀ ଲୋକେ ଆମକୁ ପାଳିକରି ଖାଇବାକୁ ଦେଉଥାନ୍ତି । ପୁଲିସ ବାହିନୀ ଗାଁ ଘେରାଉ କଲାବେଳେ ସ୍ତ୍ରୀଲୋକମାନେ ଆମକୁ ଘେର ଭିତରେ ରଖି ପୁଲିସ ଆକ୍ରମଣରୁ ରକ୍ଷା କରୁଥାନ୍ତି ।

ଗାଁର ଲୋକେ ପହରାଦାର କାମ କରନ୍ତି, ପୁଲିସ ଆସିଲେ ସମସ୍ତଙ୍କୁ ସତର୍କ କରିଦିଅନ୍ତି । ଗାଁର ମଝିରେ ଗୋଟାଏ ଉଚ୍ଚ ମଞ୍ଚା ତିଆରି ହୋଇଥାଏ । ସେଇଠି ଥାଏ ମୁଖ୍ୟ ପହରାଦାର । ସେ ପୁଲିସର ଗତିବିଧି ଲକ୍ଷ୍ୟ କରେ । ପୁଲିସ ଆସିଲେ ଘଣ୍ଟ ବଜାଇ, ସମସ୍ତଙ୍କୁ ହୁସିଆର କରିଦିଏ । ସାଙ୍ଗେ ସାଙ୍ଗେ ସବୁ ଗାଁରେ ଶଙ୍ଖ ବାଜି ଉଠେ । ଲୋକେ ଜାଣିଯାନ୍ତି ଯେ ପୁଲିସ ଫଉଜ ଆସିଗଲେ ।

ମୁକୁନ୍ଦ ଫଉଜ ଗାଁରେ ପଶିବା ମାତ୍ରେ ଗାଁର ସବୁ ମାଇପେ ଓ ପିଲାମାନେ ଦୁଇଟି ଅଲଗା ଯାଗାରେ ଏକାଠି ହୋଇ ଯାଆନ୍ତି, ସମସ୍ତଙ୍କର ଗାଈ ଗୋରୁ ଏକାଠି କରି ଗହିରକୁ ଛଡ଼ି ଦିଅନ୍ତି । ଘର କୋରକ୍ କରିବାକୁ ପୁଲିସ ବାହାରିଲେ ଲୋକେ ଘର ଚାବିଗୁଡ଼ିକ ଦେଉନଥାନ୍ତି । ତେଣୁ ପୁଲିସ ମନଇଚ୍ଛା ଯାହାଇଚ୍ଛା ତାହା ଘରେ ପଶି ଜିନିଷ ସବୁ ନେଇ ଆସନ୍ତି ! ଜିନିଷ ନିଲାମ ଡାକରା ହୁଏ । ଲୋକେ ଧରନ୍ତି ନାହିଁ କି, ତାକୁ ପୁଲିସର ହୁକୁମ ଅନୁସାରେ ଅନ୍ୟ ସ୍ଥାନରୁ କେହି ନଅନ୍ତି ନାହିଁ । ଗାଁ ଗୁଡ଼ାକ ଗୋଟିଏ ଗୋଟିଏ ସଙ୍ଗଠିତ ବ୍ୟୂହରେ ପରିଣତ ହୋଇଥାଏ । ସତେ ଯେପରି ଗୋଟିଏ ଗୋଟିଏ ଅଭେଦ୍ୟ ଦୁର୍ଗ । ମଲା ମୁଣ୍ଡିଆ, ମୂର୍ଖ, ଗରିବଲୋକ ବୋଲି ଯେଉଁ ଲୋକଙ୍କୁ ସମାଜ କେବେ ଆଦର କରେ ନାହିଁ କି ତାଙ୍କର ସୁଖ ଦୁଃଖ କଥା ବିଚାର କରେ ନାହିଁ । ସେହିମାନଙ୍କର ସଙ୍ଗଠନ ଏକତା, ସଂଗ୍ରାମୀ ମନୋଭାବ ଓ ସଂଗ୍ରାମର କୌଶଳ ଦେଖି ମୁଁ ଅବାକ୍ ହୋଇଗଲି ।

ଲୋକଙ୍କର ଦୃଢ଼ତା ଦେଖି ସରକାରୀ କର୍ତ୍ତୃପକ୍ଷ ବିଚଳିତ ହେଲେ, ଏବଂ ଆରମ୍ଭ କଲେ ଅକଳନୀୟ ଅତ୍ୟାଚାର, ଆନ୍ଦୋଳନ ଖରତର ହେଲା । ଲୋକଙ୍କ ଉପରେ ଏପରିକି ସ୍ତ୍ରୀ ଲୋକଙ୍କ ଉପରେ ଆଖିବୁଜା ମାଡ଼ ଓ ନିର୍ଯ୍ୟାତନର ସୁଅ ଚାଲିଲା । ଘରର କବାଟ, କାନ୍ଥ ଭାଙ୍ଗି ମାଟିରେ ମିଶାଇ ଦେଲେ । ଗୁଳି ବନ୍ଧୁକ ସକ୍ରିୟ ହୋଇ ଉଠିଲା । ଲୋକେ କ୍ଷତ ବିକ୍ଷତ ହେଲେ । ରକ୍ତର ସୁଅ ଛୁଟିଲା ।

ଜୁଲାଇ ତାରିଖ ଶେଷ । ଘୋର ବର୍ଷା, ବାହାରକୁ କିଛି ଦିଶୁ ନଥାଏ, କି କାହାକୁ କିଛି ଶୁଣିବାକୁ ମିଳୁ ନଥାଏ । ଏହି ମୌକାରେ ଡେପୁଟି ମଦନ ପଟ୍ଟନାୟକ ଓ ଜିଲା ପୁଲିସ ସାହେବ ସଂଶସ୍ତ୍ର ବାହିନୀର ଗହଣରେ ଗାଁ ଭିତରେ ପଶି ଆମକୁ ଗିରଫ କରନେଲେ । ପରେ ଲୋକେ ଆସି ଜମିଗଲେ; କିନ୍ତୁ ସେମାନେ ପହଞ୍ଚିବା ପୂର୍ବରୁ ଆମକୁ ସଶସ୍ତ୍ର ପୁଲିସ ଘେର ଭିତରେ ଅଟକ କରି ରଖା ସାରିଥାଏ । ଲୋକଙ୍କ ଘେରଭିତରୁ ଆମକୁ ନେଇ ଯିବାକୁ ହେବ । କିନ୍ତୁ ଲୋକେ ପୁଲିସକୁ ଘେରି ଗଲେ । ଏହାପରେ ଆରମ୍ଭ ହେଲା ଲୋକଙ୍କ ଉପରେ ଲାଠି ଏବଂ ବନ୍ଧୁକର ଚୋଟ, ଗୁଳିଫାୟାର । ଲୋକ ଓ ପୁଲିସଙ୍କ ଭିତରେ ଏହିପରି ଖଣ୍ଡଯୁଦ୍ଧ ଚାଲିଥିଲା ବେଳେ ଆମକୁ କୌଶଳରେ ପୁଲିସ ନେଇଗଲେ । ସମସ୍ତ ରାତି ଆମେ ଉପବାସ । ଗୋଟିଏ ଲଞ୍ଚରେ ଆମେ ତା ଆରଦିନ ସକାଳେ ବାଲେଶ୍ୱର ସହରରେ ପହଞ୍ଚିଲୁ । ହାତରେ ହାତକଡ଼ା, ଅଣ୍ଟାରେ ପଘା ଦୌଡ଼ି, ହଲ ହଲ ହୋଇ ଆମେ ଚାଲିଲ ବନ୍ଦୀ ହୋଇ ଏସ୍. ଡି ଓ. ଙ୍କ ପାଖରେ ପହଞ୍ଚିଲୁ । ଜ୍ଞାନେନ୍ଦ୍ର ବ୍ରହ୍ମା ଥାନ୍ତି ଏସ୍. ଡି. ଓ । ମୋତେ ସେ ଆଗରୁ ଜାଣନ୍ତି । ଅତ୍ୟନ୍ତ ଦୁଃଖିତ ହେଲେ ଏବଂ ଆମର ଆସିବାର ବ୍ୟବସ୍ଥା କଲେ ।

ଏବେ ଆମକୁ ଜେଲଖାନାକୁ ଯିବାକୁ ହେବ । ଆମେ ଆନନ୍ଦରେ ଗୀତଗାଇ ଗାଇ ଚାଲିଲୁ । ଲୋକେ ରାସ୍ତାର ଦୁଇ କଡ଼ରେ ଆମକୁ ଦେଖିବାକୁ ଧାଡ଼ିବାନ୍ଧି ଠିଆ ହୋଇଥାନ୍ତି ।

ବିରାଟ ଲୁହା ଫାଟକ ବିକଟ ଭାବରେ ଆଁ କରି ଖୋଲିଗଲା । ଆମେ ପଶିବା ମାତ୍ରେ ତାହା ପୁଣି ବନ୍ଦ ହୋଇଗଲା । ଚୋର ଡକାୟତ ପ୍ରଭୃତି ଅସାମାଜିକ ଲୋକଙ୍କ ପାଇଁ ଥିଲା ଜେଲଖାନା । ସେଥିପାଇଁ ଜେଲଖାନା ଥିଲା ଘୃଣ୍ୟ ସ୍ଥାନ; କିନ୍ତୁ ଯେଉଁମାନେ ଦେଶକୁ ଭଲପାନ୍ତି, ଭାରତର ସ୍ୱାଧୀନତା ଚାହାନ୍ତି ସେମାନଙ୍କ ପାଇଁ ବି ସ୍ଥାନ ହେଲା ଜେଲଖାନା । ତେଣୁ ଜେଲଖାନାର ଆଉ ଦୁର୍ନାମ ରହିଲା ନାହିଁ । ସେ ହେଲା ଏକ ତୀର୍ଥ କ୍ଷେତ୍ର ।

ଆମେ ଜେଲରେ ପଶିବାମାତ୍ରେ ଆମ ଧର୍ମାବଲମ୍ବୀ ବନ୍ଧୁ ସାଥୀ ଆମକୁ କଣ୍ଠନାଦ କରି ଡାକୁଛନ୍ତି ନେଲେ । ଆମ ପାଖରୁ ବାହାରର ଆନ୍ଦୋଳନ କଥା ଶୁଣିବାକୁ ବ୍ୟଗ୍ର ହୋଇ ପଡ଼ିଲେ ।

ଏତେ ସଂଖ୍ୟାରେ ସତ୍ୟାଗ୍ରହୀଙ୍କୁ ଗିରଫ କରି ଏଠାକୁ ଅଣା ଯାଇଥିଲା ଯେ ରହିବା ପାଇଁ ଅଉ ଘର ନଥିଲା । ସେଥିପାଇଁ ଝିଏ ଗୋଦାମ ଘରେ ମଧ୍ୟ ଅନେକଙ୍କୁ ଠେସା ଠେସି କରି ଭର୍ତ୍ତି କରି ଦିଆଗଲା । ପ୍ରତ୍ୟେକଟି କୋଠରୀରେ ଏତେ ଠେସା ଠେସି ଯେ ଗୋଡ଼ ପକାଇବାକୁ ଯୋଗା ନଥାଏ । କଥା ଛଳରେ ଏହାକୁ ଅତି ରଞ୍ଜିତ କରୁନାହୁଁ । ଏହା ବାସ୍ତବ କଥା । ଖାଇବା ପାଇଁ ମୋଟା ଚାଉଳର ଭାତ ଆଉ ପାଣି ସଡ଼ସଡ଼ ଡ଼ାଲି ସାଙ୍ଗକୁ ଚକ୍ତି ବାଇଗଣ, ସାରୁ ଝୋଳ, ତେନ୍ତୁଳି ଖଟା ଚଟ୍ଣି । ଲୋକେ ଥାଳରେ ଖାଆନ୍ତି; କିନ୍ତୁ ଚୋର କରିନଥିଲେ ବି ଆମେ କଏଦୀ ତେଣୁ ଆମକୁ ଲୁହା ପଲମ ଦିଆ ଦିଆହୋଇଥାଏ । ଗୋଟାକରେ ଭାତ, ଡ଼ାଲି, ତୁଣ, ଖଟା । ଆଉ ଗୋଟାକରେ ପାଣି । ଆମେ ସେଇ ଲୁହା ଥାଳିଆ ଦୁଇଟିକୁ ଇଟାକୁଣ୍ଡରେ ମାଜି ଏକା ବେଳକେ ରୂପା ଥାଳିଆ କରିଦେଲୁ ।

ମୋର ବିଚାର ଆରମ୍ଭ ହେଲା ସରକାରି ଜିଲ୍ଲା ଡେପୁଟିଙ୍କ କୋର୍ଟରେ ମୋତେ ପଚରାଗଲା ମୁଁ ଦୋଷୀ କି ନିର୍ଦ୍ଦୋଷ । ମୁଁ ନିର୍ଦ୍ଦୋଷ ବୋଲି ଉତ୍ତର ଦେଲି । କିନ୍ତୁ ଲବଣାଇନ ଆନ୍ଦୋଳନ କରୁଥିଲି ବୋଲି ପଚରା ଯିବାରୁ ମୁଁ ହଁ ଭଣିଲି । ଡେପୁଟି ଓ ପୁଲିସ ଧରିଲେ । ମୁଁ ନିର୍ଦ୍ଦୋଷ ପୁଣି ଆନ୍ଦୋଳନ କରୁଛୁ ବୋଲି ମାନୁଛୁ । ଏକଥା ଦୁଇଟା ସେମାନଙ୍କ ପାଖରେ ଥିଲି ପରସ୍ପର ବିରୋଧୀ କଥା କିନ୍ତୁ ମୋ ପାଖରେ ଏକଥା ଦୁଇଟା ଭିତରେ କୌଣସି ଫରକ ନଥିଲା । ସ୍ୱାଧୀନତା ପାଇଁ ସଂଗ୍ରାମ କରିବାଟା ମୋ ପକ୍ଷରେ ଦୋଷାବହ ନୁହେଁ । ତେଣୁ ମୁଁ ନିର୍ଦ୍ଦୋଷ ଓ

ଆନ୍ଦୋଳନ କରୁଛୁ । ଯାହାହେଉ ମୋତେ ଏ ବୟସରେ ଛମାସ ମାସ କାରାଦଣ୍ଡ ପୁରସ୍କାର ମିଳିଲା । ଅଶ୍ରୁରେ ଦାଉନ୍ତି ଓ ହାତରେ ହାତକଡ଼ା ପିନ୍ଧି ଜାଣିଷୁ ସଙ୍ଗୀତ ବୋଲି ବୋଲି ଆନନ୍ଦରେ ଜେଲକୁ ଫେରିଲି ।

ଦିନକୁ ଦିନ ବନ୍ଦୀଙ୍କ ସଂଖ୍ୟା ବଢ଼ିବାକୁ ଲାଗିଲା । ଜେଲଘରେ ବନ୍ଦୀମାନଙ୍କ ସ୍ଥାନର ଅଭାବ ହେଲା । ଅଥଚ ଜବରଦସ୍ତ ଓ୍ୱାର୍ଡରମାନେ ଆମକୁ ଭିତରକୁ ପେଲି ଦୁଆର ବନ୍ଦ କରି ଦିଅନ୍ତି । ତେଣିକି ଆମେ ଶୋଇଲେ କେତେ ବସିଲେ କେତେ । ତାଙ୍କର କଏଦୀ ସୁମାରଟା କଂଗ୍ରେସର ଜେଲ କମିଟି ସୁମାର ଠିକ୍ ହେଲା ପରି ହେଲେ ହେଲା । ଜେଲରେ ଆମର ବୈଠକ ହୁଏ । ଆମର ନିଜର ଜେଲ କମିଟି ଥାଏ । ଏହି କମିଟି ବୈଠକ ଠିକ୍ ହେଲା ଯେ ଆମେ ସନ୍ଧ୍ୟା ପ୍ରାର୍ଥନା ପରେ ଘରଭିତରକୁ ପଶିବୁ ନାହିଁ ।

ସନ୍ଧ୍ୟାପରେ ଯେଉଁ ବଖରାକୁ ଆମର ଯିବାର କଥା; କିନ୍ତୁ ଆମେ କମାନ୍ତି ବାହାର ବାରଣ୍ଡାରେ ବସି ରହିଲୁ । ଜେଲ କର୍ତ୍ତୃପକ୍ଷ ଯେତେବେଳେ ଦେଖିଲେ ଯେ ଆମେ ଭିତରକୁ ଯିବାପାଇଁ ନାରାଜ ସେତେବେଳେ ତାଙ୍କ ବଳ ଦେଖାଇଲେ । ସେତେବେଳେ ବନ୍ଧୁକ ଆଲୁଅ ଜେଲରେ ନଥାଏ ଲଣ୍ଠନ, ମହୁ ଆଲୁଅ ଲଗାଇ ଦେଇ ଆମ ଉପରେ ଚାଲିଲା ଲାଠି । ଠିକ୍ ଯେମିତି ଚାଷୀମାନେ ହରଡ଼ ବା କୋଳଥ ଅମଳ କଲାବେଳେ ବଡ଼ ଠେଙ୍ଗା ଖଣ୍ଡିକରେ ଯେତେ ବାଡ଼ଉଥାଏ, ହରଡ଼ ବା କୋଳଥ ଗଛ ବାଡ଼ାନ୍ତି । ଏହିପରି ଥରେ ନୁହେଁ ବାରମ୍ବାର ଆମକୁ ଜେଲଭିତରେ ମାଡ଼ ହେଉଥାଏ । ମୁଁ ଏହି ପ୍ରଥମ ଦିନର ମାଡ଼ରେ ଅଚେତା ହୋଇ ଦୁଇଦିନ ପଡ଼ିରହିଲି ଏବଂ ମୋର ଗୋଡ଼ର ପଞ୍ଜରା ହାଡ଼ ଭାଙ୍ଗିଗଲା । ଏବେ ମଧ୍ୟ ମଝିରେ ମଝିରେ ସେ ଯନ୍ତ୍ରଣା ହୁଏ ।

ଏହି ଜେଲରେ ପରିଚୟ ହେଲା ବୈଦ୍ୟନାଥ ରଥ, ଗୌରଗୋପାଳ ଦାସ, କମଳାକାନ୍ତ ମହାପାତ୍ର, ନିତ୍ୟାନନ୍ଦ ମହାପାତ୍ର ପ୍ରଭୃତିଙ୍କ ସାଙ୍ଗରେ । ବୈଦ୍ୟନାଥ ରଥ ପରେ ଜଣେ ଖ୍ୟାତନାମା ବାମପନ୍ଥୀ ଓ କମ୍ୟୁନିଷ୍ଟ ନେତା ଭାବରେ ପରିଚିତ ହୋଇଥିଲେ ଓ ନିତ୍ୟାନନ୍ଦ ମହାପାତ୍ର ଜଣେ ବିଶିଷ୍ଟ ଲେଖକ, ଡଗର ପତ୍ରିକାର ସମ୍ପାଦକ ଓ ମନ୍ତ୍ରୀଭାବରେ ପରିଚିତ ହେଲେ ।

ଏହି ହେଉଛି ସେଇ ବାଲେଶ୍ୱର । ଯେଉଁଠି ବାଳିକା ହାଇସ୍କୁଲର ଗୋଟିଏ କୋଣରେ ରହିଛି ପୁରୁଣା ସ୍ମୃତିଟିଏ ସେହିଠାରେ ଦେଇଥିଲା ଜଣେ ତାର ଜୀବନ ଏ ଦେଶର ମୁକ୍ତି ପାଇଁ । ଦୁର୍ଦ୍ଧର୍ଷ ପ୍ରତାପି ଅସ୍ତ୍ରଶସ୍ତ୍ରରେ ବଳୀୟାନ ଇଂରେଜ ସେନାପତି ଓ ସୈନ୍ୟଙ୍କ ସଙ୍ଗେ ଲଢ଼ିଥିଲା ତାର ମନର ବଳ, ଦେଶପ୍ରେମ ।

ଅନ୍ଧାରର ଶକ୍ତିଠାରୁ ଦେଶପ୍ରେମ ଅଧିକ ବଳୀୟାନ ବୋଲି ସେ ଦିନ ମୁଁ ପ୍ରମାଣ କରିଥିଲି । ସେହି ବାଘାଯତୀନଙ୍କ ଆଦର୍ଶ ଦେଶପ୍ରେମ ଓ ତ୍ୟାଗ ଆମକୁ ଯୋଗାଉ ଥିଲା ପ୍ରେରଣା ଓ ଶକ୍ତି । ଜେଲର ଫାଶିଘର ପାଖକୁ ମୁଁ ଯାଇ ବସୁ ଏବଂ ଯେଉଁ ଶହୀଦଙ୍କୁ ଏଠାରେ ନିଜର ରକ୍ତ ଢାଳିଦେଇଛନ୍ତି ସେହି ଉଦ୍ଦେଶ୍ୟ ହୋଇ ଅନାଇରହେ । ସମୟ ଗଡ଼ିଯାଏ, ଫେରିଆସେ ବନ୍ଦିଶାଳାର ରୁଦ୍ଧ କୋଠରି ଭିତରକୁ । ଦିନପରେ ଦିନ ବିତିଯିବାକୁ ଲାଗିଲା । ଛଅମାସ ପୂର୍ଣ୍ଣ ହୋଇଗଲା ବନ୍ଧୁମାନେ ଆନନ୍ଦ ଓ ବିଷାଦରେ ମୋତେ ଫୁଲମାଳ ଦେଇ ବିଦାୟ ଦେଲେ ବାହାରକୁ । ଆନନ୍ଦ-ବାହାରକୁ ଯିବା-ନାମରେ ଲାଗିବ, ବିଷାଦ ଜଣେ ସଂଗ୍ରାମୀ ସହକର୍ମୀର ଅଭାବ । ଜେଲର ସେହି ଫାଟକ ପୁଣି ଫିଟିଲା ମୋ ପାଇଁ ଛଅମାସ ପରେ ଧୀରେ ପାଦକୁ ବାହାରିଲି । ଖୋଲା ପଡ଼ିଆ, ଗଛ ପତ୍ର, ଘର ଦ୍ୱାର, ଲୋକ ଖୋଲା ଆକାଶ ଆଡ଼କୁ ଅନାଇଲି । ସବୁକିଛି ମୋତେ ନୂଆଭଳି ଲାଗିଲା ।

## ସତ୍ୟାଗ୍ରହୀ ଜୀବନ

### ପୁରୀଜିଲ୍ଲା କଂଗ୍ରେସ ଅଫିସ

ପୁରୀ ସ୍ୱମତଣ୍ଡି ସାହି, ଯେଉଁଠାରେ ଏବେ ସିନେମାଘର, ସନ୍ଧ୍ୟାହେଲେ ଡାକବାଜି ଯନ୍ତ୍ରରେ ଗୀତର ଲହରୀ କାନ ଅତଡ଼ା ପକେଇ ଛୁଟିଛି . ସେହିଠାରେ ଥିଲା ଧାଡ଼ିଏ ଚୂଳଘର ଓ ଗୋଟିଏ ଛୋଟ ପକ୍କା ଟିଣଘର । ସ୍ୱାଧୀନତା ସଂଗ୍ରାମର ସୈନିକମାନଙ୍କର ଛାଉଣି । ଏହିଠାରେ ସଂଗ୍ରାମର ସବୁ ମସୁଧା ହେଉଥିଲା, ଏହିଠାରୁ ରଣ କୌଶଳର ନିର୍ଦ୍ଦେଶ ଦିଆଯାଉଥିଲା । ଦିନେ ଏହି ସ୍ଥାନଟି ସମଗ୍ର ପୁରୀଜିଲ୍ଲାର ସଂଗ୍ରାମର ପ୍ରାଣକେନ୍ଦ୍ର ଥିଲା । କଂଗ୍ରେସର ସ୍ୱେଚ୍ଛାସେବକମାନେ ନିଜ ହାତରେ ଏହି ଘରଗୁଡ଼ିକ ଝାଟିମାଟିରେ ତୋଳିଥିଲେ । ପକ୍କା ଟିଣଘର ଥିଲା ରାମ-ଦାସ ବାବାଜିଙ୍କର । ଏହି ବାବାଜି ଥିଲେ ଅନ୍ୟ ବାବାଜିଙ୍କଠାରୁ ସ୍ୱତନ୍ତ୍ର । ସେ ଥିଲେ ବାବାଜି କିନ୍ତୁ ଜନସେବାରେ ସେ ଦେଖୁଥିଲେ ଈଶ୍ୱର ପ୍ରାପ୍ତି । ସେଥିପାଇଁ ସେ ଥିଲେ ସ୍ୱାଧୀନତା ସଂଗ୍ରାମର ଜଣେ ଅଗ୍ରୁଆ ସେନାପତି । ତାଙ୍କର ଏହି ଟିଣଘରେ ହେଉଥିଲା ସଂଗ୍ରାମ ପାଇଁ ସବୁ ଆଲୋଚନା ଯୋଜନା ଓ ବ୍ୟବସ୍ଥା । ଏହି ଚୂଳଘର ଧାଡ଼ିକ ଉପରେ କେତେଥର ଯେ ପୁଲିସର ଆକ୍ରମଣ ନ ହୋଇଛି । ବାଲେଶ୍ୱରରୁ ଆସି ମୁଁ ରହିଲି ଏହିଠାରେ ।

ସେତେବେଳେ ଗଞ୍ଜେଇ, ଆଫିମ, ମଦ ଦୋକାନ ଆଗରେ ପିକେଟିଂ କରିବା ଥିଲା କାର୍ଯ୍ୟକ୍ରମ । ଦଳ ଦଳ ହୋଇ ଅଳ୍ପ ବୟସର ପିଲା ଓ ଯୁବକମାନେ ପିକେଟିଂ କରିବାକୁ ଯାନ୍ତି ମୁଁ ଏହି ପିକେଟିଂ କରିବାକୁ କେତେଥର ଯାଇଛି ।

ପୁଲିସ ପୋଷାକ ପିନ୍ଧିଛି, ପୁଲିସ ସେମାନଙ୍କୁ ଗିରଫ କରେ। ପୁଣି ପରଦିନ ଆହୁରି ଆସନ୍ତି । କୋର୍ଟରେ ହାକିମ ମାମଲାରେ ସେମାନଙ୍କୁ ବେତମାଡ ହୁଏ । ହାତ ପିଠି ଫାଟି ରକ୍ତ ବାହାରି ଯାଏ; କିନ୍ତୁ ସେମାନେ ସେହି ଦଣ୍ଡ ଭୋଗ କରୁଥିଲେ ମଧ୍ୟ ଜାତୀୟ ସଙ୍ଗୀତ ବୋଲିବାରେ ଲାଗିଥାନ୍ତି । ଏତେ ଏତେ ଲୋକ ବନ୍ଦୀ ହୁଅନ୍ତି କଟକ ସହରରେ ।

ଗାଁ ଗଣ୍ଡାକୁ ସତ୍ୟାଗ୍ରହୀଙ୍କ ଏହି କାର୍ତ୍ତିକତା, ଓ ଅତ୍ୟାଚାର କଥା ଦେଶସା- ସାରା ଲୋକଙ୍କର ଶ୍ରୁତିବ ଭିତରେ ବ୍ୟାପିଯାଏ । ମୋ ଉପରେ କିଛିଦିନ ଏହି ସତ୍ୟାଗ୍ରହ ପରିଚାଳନା ଭାର ପଡ଼ିଲା ପରେ ଜହର ଦିବସରେ ଗିରଫ ହେବାର ପାଳି ମୋର ଆସିଲା । ସେଦିନ ସିଂହଦ୍ୱାରରେ ସାଧାରଣ ସଭା ହେବ । ଜହରଲାଲ ଯେଉଁ ବକ୍ତୃତା ଦେଇ ଗିରଫ ହୋଇଥିଲେ ସେହି ବକ୍ତୃତାର ପୁନରାବୃତ୍ତି ମୁଁ କରିବି । କିଏ ସେଦିନ ଏହାର ନେତୃତ୍ୱ ନେବ ସେ କଥା ପୁଲିସ ଆଗରୁ ଜାଣିପାରିଲା ନାହିଁ । କାରଣ ଅତି ଗୋପନରେ ସବୁ କଥା ଆମର ସ୍ଥିର ହୋଇଥାଏ । ମୁଁ ସିଂହଦ୍ୱାରରେ ପହଞ୍ଚିଲା ବେଳକୁ ଦେଖିଲି ଦଳ ଦଳ ହୋଇ ପୁଲିସ ଲାଠିଧରି ପହରା ମାରୁଛନ୍ତି । ଭୋଳାନାଥ ସାହୁଙ୍କ ଦୋକାନରେ ଯାଇ ବସିଲି । ସିଂହଦ୍ୱାର କଂସାରି ପଟିରେ ତାଙ୍କର ଦୋକାନ, ସେ ଥିଲେ କଂଗ୍ରେସର ସମର୍ଥକ । ତାଙ୍କର ପୁଅ ହେଉଛନ୍ତି ସ୍ୱରାଜ ମଣି ସାହୁ । ସ୍ୱରାଜ୍ୟ ଆନ୍ଦୋଳନର ସ୍ମୃତି ସେ ତାଙ୍କର ପୁଅର ନାଁରେ ରଖିଥିଲେ । ସଭାର ସମୟ ହେଲା । ଡାବାଲାଟିଏ ଧରି ଖରବେଗରେ ଦୌଡ଼ିଯାଇ ତାକୁ ପକାଇ ଦେଇ ତା ଉପରେ ଠିଆହୋଇ ମୁଁ ଆରମ୍ଭ କରିଦେଲି ମୋର ବକ୍ତୃତା । ପୁଲିସ ଇନସ୍‌ପେକ୍‌ଟର ଦଳବଳ ଧରି ମୋତେ ଘେରି ଯାଉ ଯାଉ ୧୦ ମିନିଟ୍ ଖଣ୍ଡେ ସମୟ ଚାଲିଗଲା । ମୁଁ ମୋର ବକ୍ତୃତା ତାରି ଭିତରେ ତରବରରେ ଶେଷକରି ଦେଲି । ଇନ୍‌ସପେକ୍‌ଟର ଆସି ମୋତେ ଗିରଫ କଲେ । ମୁଁ ଥାନାରେ ଥାଏ । ବାପା ମୋର ୨ୟ ବାର ଗିରଫଦାରି କଥାଶୁଣି ବ୍ୟଥିତ ହୋଇ ପଡ଼ିଲେ ଏବଂ ସାନମାମୁଁ ବୈଦ୍ୟନାଥ ଦାସଙ୍କୁ ସାଙ୍ଗରେ ଧରି ଥାନାକୁ ଆସିଲେ । ଇନ୍‌ସପେକ୍‌ଟର ଥିଲେ କ୍ଷେତ୍ରମୋହନଦାସ ଆମର ଜଣେ ନିକଟତମ ବନ୍ଧୁ । ମୋତେ କ୍ଷମାପ୍ରାର୍ଥନା ଲେଖିଦେଇ ଛାଡ଼ ପାଇବାକୁ ସେ ବହୁତ ବୁଝାଇଲେ, କିନ୍ତୁ ଏପରି ଅପମାନ ବରଣ କରିବାକୁ ମୁଁ ପ୍ରସ୍ତୁତ ନୁହେଁ । ଦେଶପାଇଁ ଦୁଃଖ, କଷ୍ଟ, ନିର୍ଯାତନା ଓ ମରଣକୁ ମୁଁ ମଣୁଥିଲି ଗୌରବ । ତେଣୁ ବାପା ନିରାଶରେ ଫେରି ଗଲେ ।

ଏଥର ଗଲି ପୁରୀ ଜେଲକୁ, ଏଠାରେ କିଛିଦିନ ଥିଲେ ପଣ୍ଡିତ ଗୋପବନ୍ଧୁ ଦାସ, ନୀଳକଣ୍ଠ, ଲିଙ୍ଗରାଜ ମିଶ୍ର । ଏ ତ ଯେବେ ତୀର୍ଥକ୍ଷେତ୍ର । ଏଠାରେ ଦେଖା ହେଲା ପ୍ରାଣନାଥ ପଟ୍ଟନାୟକଙ୍କ ସଙ୍ଗେ । ପୁରୁଣା ପରିଚୟ ପାଠପଢ଼ା ସମୟରୁ ।

ମୋର ବାପ୍ପର ହେଲ, ବିଶ୍ୱବିଦ୍ୟାଳୟରେ ସେହି ଗୋଟିଏ ପ୍ରଶ୍ନ । ତୁମେ ଦୋଷୀ ନା ନିର୍ଦ୍ଦୋଷୀ ମୋର ସେହି ଗୋଟିଏ ଉତ୍ତର । ମୁଁ ନିର୍ଦ୍ଦୋଷୀ ଏଥର ମଧ୍ୟ ପୂର୍ବପରି ଛଅମାସ ସଶ୍ରମ କାରାଦଣ୍ଡ ଆଦେଶ ହେଲା । ମେଘନାଦ ପାଚେରୀ ତଳେ ପୁଣି ଛଅମାସ ପାଇଁ ଲୁଚିଗଲି ଜନସାଧାରଣ ଆତ୍ମୀୟ ସ୍ୱଜନଙ୍କ ଆଖିରୁ ।

ବନ୍ଦୀଶାଳରେ ପଶିକରି, ଟିକେଟିକେ କରି ବନ୍ଦୀବାର ବନ୍ଧ ହୋଇଛି ଏବଂ ଧୀରେ ଜେଲରେ ସେହିଦିନ ବନ୍ଦୀଜୀବନ କଟାଇଛି । ଏହି ଜେଲ ଜୀବନ ୧୯୩୦ରୁ ଆରମ୍ଭ ହୋଇଛି ଏବଂ ସାଧାରଣ ଜୀବନରେ ପରିଣତ ହୋଇଛି । ବନ୍ଦୀଶାଳାର ମେଘନାଦ ପାଚେରୀ ଓ ଲୁହାର କବାଟ ଆଉ ପରିହାସ କରିପାରେ ନାହିଁ, ଭୟ ଦେଖାଇ ପାରେନାହିଁ, ବରଂ ସେ ଭୟଙ୍କରେ ଆମକୁ, ତାକୁ ପରିହାସ କରୁ ଆମେ ।

ଯେତେବେଳେ ପ୍ରଥମକରି ବାଲେଶ୍ୱରରୁ ଆସି ହେମଚନ୍ଦ୍ର ସାହୁ କଂଗ୍ରେସ ଅଫିସରେ ରହିଲି ସେତେବେଳେ ପଣ୍ଡିତ ରଘୁନାଥ ମିଶ୍ର, ମତ୍ୟବାଦୀ ତ୍ରିପାଠୀ ଥିଲେ ଏହାର ପରିଚାଳକ । ମୁଁ ଥିଲି ସେମାନଙ୍କ ପାଖରେ ସମ୍ପୂର୍ଣ୍ଣ ଅପରିଚିତ, ପୁଣି ଶୁଣିଲେ ମୁଁ କଲେଜ ପାଠ ପଢ଼ୁଆ ଧନୀଘରର ପିଲା ମୋତେ ପରୀକ୍ଷା କରିବା ପାଇଁ ଗୋଟିଏ ହୋଇଥିବା ବଡ଼ ବଡ଼ ପିତଳହଣ୍ଡା ମାଜିବାକୁ ଦେଲେ । କୌଣସି ପ୍ରତିବାଦ ନ କରି ଆଜ୍ଞାବହ ସୈନିକ ଭଳି ସବୁ ମାଜି ରଖିଦେଲି । ଅବଶ୍ୟ ନୂଆକାମ, ମୋତେ ଅସୁବିଧା ଓ କଷ୍ଟ ଲାଗିଲା ।

ଏହାପରେ ମୋତେ ଆଉ ପ୍ରକାରେ କାମ ମିଳିଲା । ଉତ୍ତରଦ୍ୱାର ଲକ୍ଷ୍ମୀ-ଦଜାରରୁ ପ୍ରତିଦିନ ମଙ୍ଗଳେ ପଡ଼ିବା ଚୂଡ଼ା ଆଦାୟ କରିବାକୁ ହେବ । ଅଖା ଝଣ୍ଡେ ଧରି ପରିବାବାଲାଙ୍କ ପାଖରୁ ବାଇଗଣଟାଏ, ମୂଳାଟାଏ, କଖାରୁ ଖଣ୍ଡେ, ଶାଗମୁଠାଏ ଭିକ୍ଷାକରି ବସ୍ତାରେ ବସ୍ତାଟାଏ ଭରି ପିଠିରେ ପକେଇ ଆଶ୍ରମକୁ ଫେରେ । ବାଟରେ ମୋର ବନ୍ଧୁବାନ୍ଧବ ଦେଖନ୍ତି । ସେମାନଙ୍କୁ ଭାରି ବାଧେ । କଲେଜ ପାଠୁଆ ନାମଜାଦା ସମ୍ଭ୍ରାନ୍ତ ବଂଶୀୟ ଚୂଡ଼ାମଣି ବଂଶର ପୁଅ, ଛାରପୁଣି ଲମ୍ବାମୁଣ୍ଡା, ଅଣ୍ଟୁ ଟିକେ ଖଦଡ଼ ଖଣ୍ଡେ, ପିଠି ଉପରେ ଖଦଡ଼ର ୨୫ ହାତ ଚାଦର ସାଙ୍ଗକୁ ପିଠି ଉପରେ ପରିବା ବସ୍ତା; କିନ୍ତୁ ମୋ ମନରେ ସଙ୍କୋଚ ନ ଥାଏ । ବରଂ ଭାବେ ଏଇତ ମୋର ଗୌରବ, ସମ୍ମାନ, ସ୍ୱାଧୀନତା ସଂଗ୍ରାମର ସୈନିକ, ପ୍ରତାପୀ ଇଂରେଜ ସରକାର ଧାଙ୍ଗରେ ଲଢ଼ୁଛି । ମୋର ଗର୍ବ ଆସେ । ରାମଚଣ୍ଡି ସାହିରେ ମୋର ମାମୁଁଘର – ରାଏବାହାଦୁର ଶ୍ରୀଚନ୍ଦ୍ର ଘୋଷ ନାମଜାଦା, ଲୋକ । ତାଙ୍କର ଦୁଆରବାଟେ ମୋତେ ଯିବାକୁ ହୁଏ । ଆମ ପିଲାଦିନର ଚାକର ବନା । ମୋ ତେତେ ଦେଖିଲେ ସେ ଦୌଡ଼ିଆସେ । ମୋ ପାଖରୁ ବସ୍ତାଟି ଛଡ଼ାଇ ଆଶ୍ରମରେ ଦେଇ ଆସିବାକୁ ଜିଦ୍ ଧରେ; କିନ୍ତୁ ମୁଁ ତାକୁ ବୁଝାଇ ସୁଝାଇ ଫେରାଇ ଦିଏ । ମାମୁଁ

ପୂଅ ଭାଇମାନେ ମୋ ପାଇଁ ଘରୁ ଜଳଖିଆ ଆଣି ମୋତେ ହାତରେ ଦେଇ ଦୌଡ଼ି ପଳାନ୍ତି ! ମୋ ମାମୁଁ ପୁଅ ଭାଇ ମୁରଲୀଧରଙ୍କ ପୁଅ ବର୍ତ୍ତମାନ ମାଧ୍ୟନ୍ଦିନ ଆଇନ-କଲେଜର ଅଧ୍ୟକ୍ଷ । ଆଜି କାଲିକାର କଂଗ୍ରେସ ନେତା ବା କର୍ମୀ ଏକଥାଗୁଡ଼ାକ ଆଉ ବୁଝିପାରିବେ ନାହିଁ । ଏ ସବୁ ପୁରୁଣା କାଳିଆ କଥା । ଏବେ ମନ୍ତ୍ରୀ ନ ହେଲେ ଆଉ ଗୌଡ଼ର ପୋଷାକ ନ ପିନ୍ଧିଲେ ଆଉ କଂଗ୍ରେସ ବାଲା କିଏ ?

ସେତେବେଳକାର କଂଗ୍ରେସ କର୍ମୀ ନେତା, ଓ ଆଜିକାଲିକାର କଂଗ୍ରେସ କର୍ମୀ, ନେତାଙ୍କ ଭିତରେ ଆକାଶ ପାତାଳ ପ୍ରଭେଦ । ସେତେବେଳେ ଆଦର୍ଶ ଥିଲା ତ୍ୟାଗରେ ବର୍ତ୍ତମାନ ହେଉଛି ଭୋଗ ।

ବଡ଼ ଦାଣ୍ଡରେ ସାଧାରଣ ସଭାଟିଏ କରିବାକୁ ହେଲେ ପ୍ରଚାର ପାଇଁ ସେତେବେଳେ ତାକବାଜି ଯନ୍ତ୍ର ନଥିଲା । ପୁଲିସ ଡରରେ ଢେଙ୍କୁରା ଦେବାପାଇଁ ଢେଙ୍କୁରାବାଲା ବାହାରନ୍ତି ନାହିଁ । ଆମେ ନିଜେ ବେକରେ ଢେଙ୍କୁରା ପକାଇ ଢେଙ୍କୁରା ଦେଉ, ପୁଲିସବାଲା ତାକୁ ମଧ୍ୟ ବାଡ଼େଇ ଭାଙ୍ଗି ଦିଅନ୍ତି, ଆମେ ଟିଣଟାଏ ଧରି ବାଡ଼େଇ ସଭାକଥା ଲୋକଙ୍କୁ ଜଣାଉ । ସେତେବେଳେ ଲୋକେ ଏ ସବୁ କାମକୁ ଘୃଣାଚକ୍ଷୁରେ ଦେଖୁଥିଲେ ବରଂ ବୈପ୍ଳବିକ ସମ୍ମାନ ଆଖିରେ ଦେଖୁଥିଲେ ! ଜଳଖିଆ ଦୋକାନ ଆମକୁ ତୃପ୍ତ କରି ତାଙ୍କ ଜଳଖିଆ ଖୁଆଉଥିଲେ ।

ଏମାର ମଠ ଚକଡ଼ାରେ ପ୍ରତିଦିନ କାଙ୍ଗାଳି ମାନଙ୍କୁ ମହାପ୍ରସାଦ ଛତର ଖାଇବାକୁ ଦିଆଯାଏ । ମୁଁ ମୋର ସହକର୍ମୀମାନଙ୍କ ସାଙ୍ଗରେ ସେହିଠାରେ ଖଲି ପତର ପକେଇ ଅନେକଥର ବସିଛୁ, ଏବଂ ପ୍ରସାଦ, ଡ଼ାଲି ଯେତିକି ବାହାରକୁ ଆଣି ବାଣ୍ଟି କୁଣ୍ଟି ଖାଇଛୁ, ଏଥିରେ ମୋ ମନରେ ତିଳେମାତ୍ର ଗ୍ଲାନି ଆସିନାହିଁ ।

ଆଶ୍ରମରେ ରହୁଥିଲା ବେଳେ ପୁଲିସ ଆମକୁ ଆଶ୍ରମରୁ ତଡ଼ି ଅନେକଥର ତାଲା ପକାଇ ଦେଇଛି । ସେତେବେଳେ ବଡ଼ଦାଣ୍ଡର ଦୋକାନ ପିଣ୍ଡା ହୁଏ ମୋର ଆଶ୍ରୟ ସ୍ଥଳ । ଦିନସାରା କାମରେ ବୁଲେ ରାତିରେ ଦୋକାନ ପିଣ୍ଡା ପଟା ଉପରେ ଶୋଇଯାଏ ।

ସେତେବେଳେ ଖୋଲାଖୋଲି ପତ୍ରିକା ପଣ ଛାପିବା, ବାଣ୍ଟିବା ଥିଲା ବେଆଇନ, କିନ୍ତୁ ପ୍ରଚାରପତ୍ର ଦରକାର । ତେଣୁ ତାକୁ ରାତିରେ ଲୁଚାଇ ଗୋଟାଏ ଯାଗାରେ ଲିଥୋ ମେସିନରେ ଲିଥୋ କରାଯାଏ । ଆଉ ଗୋଟାଏ ଯାଗାରେ ବାଲିରେ ବା କୁଢ଼ା ଭିତରେ ଲୁଚାଇ ରଖାଯାଏ, ସେଠାରୁ ପୁଣି ଲୁଚ ଓର ଜାଣିଥିବା ସ୍ୱେଚ୍ଛାସେବକ ନେଇ ତାକୁ ବାଣ୍ଟେ । ପୁଲିସର ଆଖି ଏଡ଼େଇ ସେ ଗୋପନୀୟ ଭାବରେ ତାକୁ ବାଣ୍ଟେ । ଏସବୁ ପ୍ରଚାର ପତ୍ରକୁ ସରକାର ଖୁବ ଭୟ କରୁଥିଲେ ।

କାରଣ ଆମର ଲଢ଼େଇର ଫଳ ଖବର ଥାଏ । ଆଉ ଇଂରେଜ ସରକାରର ସବୁ ଖୋଲ୍ ବାହାରିଥାଏ । ଏ ସବୁ ପତ୍ରିକାମାନଙ୍କୁ ଜବତ କରିବା, ଛପାଉଥିବା ଲୋକଙ୍କୁ ଓ ଲିଥୋପ୍ରେସିଙ୍କୁ ଧରିବା ପାଇଁ ସରକାରର ଗୋଇନ୍ଦା ପୁଲିସ ନିଯୁକ୍ତ ଥାନ୍ତି ; କିନ୍ତୁ ପୁଲିସର ଆଖିରେ ଧୂଳି ଦେଇ ଆମର ଏ କାମ ସୁରୁଖୁରୁରେ ଚାଲିଥାଏ ।

## ପଣ୍ଡଧାନ୍ମତି

୧୯୩୦ ମସିହା, ଏ ବର୍ଷ ପୁରୀ ଜିଲ୍ଲା ଟାଙ୍ଗିଥାନାର ସୋରଣରେ ଲୁଣ ମରାହେବାର ସ୍ଥିର ହେଲା । ଏହାର ଆୟୋଜନ, ସଂଗଠନ ଓ ପରିଚାଳନାର ଭାର ମୋ ଉପରେ ନ୍ୟସ୍ତ ହେଲା । ଦଳେ ସତ୍ୟାଗ୍ରହୀଙ୍କୁ ଧରି ମୁଁ କୁହୁଡ଼ିରେ ପହଞ୍ଚି ସେଠାରୁ ସୋରଣ ଗଲି । ଲୋକେ ଆଗ୍ରହର ସହିତ ଆମକୁ ବିପୁଳ ସମ୍ବର୍ଦ୍ଧନା ଜଣାଇଲେ; କିନ୍ତୁ ପୁଲିସ ଭୟରେ ଆମକୁ ରହିବାପାଇଁ ଘର ଖଣ୍ଡେ କେହି ଦେଲେ ନାହିଁ । ଗାଁରେ ପତିତପାବନଙ୍କ ଦେଉଳ । ଦେଉଳ କହିଲେ ଗୋଟିଏ ଚାଳଘର, ତାରି ସାମନାରେ ଗୋଟିଏ ପିଣ୍ଡା । ଉପର ଚାଳ ଉନପଟ ଖୋଲା, ଆମେ ଏହି ଖୋଲା ପିଣ୍ଡାରେ ଆଶ୍ରୟ ନେଲୁ । ଦେଉଳ କରରେ ୨, ୪ଟା କନିଅର ଗଛ । ତାରି ମୂଳରେ ସେଠେଇ କଣ ଗଣ୍ଡେ ଖାଇଦେଇ ଆଟିକା ଦଣ୍ଡାକୁ ଗଛରେ ଟାଙ୍ଗି ଗାଁ ଗଣ୍ଡାକୁ ଲୁଣ ମାରିବା ପ୍ରଚାରରେ ଯାଉ । ସନ୍ଧ୍ୟା ବେଳକୁ ଫେରିଲାବେଳେ ଦେଖୁଁ ଆଟିକା ନାହିଁ, ଆଟିକା ଦୁଇଟା ଖପରା ହୋଇ ପଡ଼ିଛି । ପିଲାଏ କହନ୍ତି "ପୁଲିସ" ଆସିଥିଲେ, ଆଟିକା ଦଣ୍ଡା ଭାଙ୍ଗିଦେଲେ । ଆମକୁ ପଚାରୁଥିଲେ ସତ୍ୟାଗ୍ରହୀମାନେ କେଉଁ ଆଡ଼େ ଯାଇଛନ୍ତି । ରାତିରେ ଉପବାସ ରହୁଁ । ନାଁ ମୋର ମନେ ନାହିଁ । ତେବେ ତାଙ୍କୁ ଆମେ ମଙ୍ଗରାଜ ବୋଲି ଡାକୁଥିଲୁ । ସେ ଚୁଡ଼ା ବା କେତେବେଳେ କେମିତି ଘରୁ ଭାତ ଆଣି ଆମକୁ ରାତିରେ ଦେଇଯାନ୍ତି । କାରଣ ଆମେ ପ୍ରତିଦିନ ହାଣ୍ଡି ଆଣୁ । ଆମେ ଗଲାପରେ ପୁଲିସ ପ୍ରତିଦିନ ତାକୁ ଭାଙ୍ଗି ଦିଏ ।

ଏ ଘଟଣା ସ୍ତ୍ରୀ ଲୋକଙ୍କ ଭିତରେ ଏକ ଆଲୋଡ଼ନ ସୃଷ୍ଟି କଲା । ପିଲାଗୁଡ଼ାକ ଉପାସ ରହିବେ ? ସେମାନଙ୍କର ଏହା ସହ୍ୟ ହେଲା ନାହିଁ । ସେମାନେ ଆମକୁ ଖାଇବାକୁ ଦବାପାଇଁ କୌଶଳ ବାହାର କଲେ । ଖୋଲାଖୋଲି ଆମକୁ ଖାଇବାକୁ ଦବା ଏକ ଅପରାଧ । କାରଣ ଯେଉଁମାନେ ସତ୍ୟାଗ୍ରହ କରିବେ ସେମାନେତ ଦଣ୍ଡ ପାଇବେ, ଯେଉଁମାନେ ସେମାନଙ୍କୁ ସାହାଯ୍ୟ କରିବେ ସେମାନେବି ଦୋଷି ଦଣ୍ଡ ପାଇବେ । ଏଥିଲା ସେତେବେଳର ଆଇନ, ତେଣୁ ସ୍ତ୍ରୀଲୋକମାନେ ନୂଆ କୌଶଳ ବାହାର କଲେ । ବାରିପଟେ ମାଇପେ ଭାତଧରି ଆମକୁ ଉଦ୍ଦେଶ୍ୟକରି ଆ ତୁ, ତୁ କରି ଡାକନ୍ତି । କାଲି ମା କାଲି ଠାରି ଜାଣେ । ଆମେ ବୁଝୁଁ ଯେ ଭାତ ଆସିଲା । ଆମେ ଜଣ ଜଣ ହୋଇ ପଲମ ଧରିଯାଉ । ସେହି ପଲମରେ ସେମାନେ ଭାତ ଢାଳି

ଦଅନ୍ତି । ଆମେ ଖାଇଦେଇ ଗ୍ଲଲଥାନ୍ତୁ । କଳିଥିବା ଜନ୍ମଙ୍ଗ ନୂଟେ ଆମେ ଖୋଲା ଯାଇଥିଲୁ । ଚଉଦକଆର ବା ଭିତର ମନ୍ଦାକୁ ଭ୍ରାଇ ଯେ ନ ଥାଏ ତାହା ନୁହେଁ, ତେଣୁ ମେ ଅନେକ ସମୟରେ ଜାବି ନଜାଣିଲ ଭଲ ବ ରହେ । ଏହିପରି ଜନ୍ମଦିନ କଟିଗଲ । ସାଧୁ ମହାନ୍ତ ବୋଲ ଜଣେ ଲୋକ ଆମକୁ ନା ସରେ ନେଇ କୁଦ୍ରରେ ରଖିଲେ । କୁହୁଡ଼ି ଗୋଟିଏ ବଡ ଗାଁ ହାଟଟିଏ ଅଛି, ମାଗନର ସ୍କୁଲଟିଏ ମଧ୍ୟଥିଲା । ବହୁ ଯୁବକ ଅଛନ୍ତି । ସେଠାରେ ଯୁବକମାନେ ଆମକୁ ସାହାଯ୍ୟ କଲେ । ରଘୁନାଥ ପାଢ଼ି ଓ ତାଙ୍କର ସାନଭାଇ ବାନାମ୍ବର ପାଢ଼ି । ଏ ଦୁହେଁ ଆଗୁଆ ହୋଇ ଆମକୁ ସାହାଯ୍ୟ କରିବାକୁ ଲଗିଲେ ।

ଆମେ ଗାଁ ଗଣ୍ଡାର ଲୋକଙ୍କ ଠାରୁ ବିପୁଳ ସାହାଯ୍ୟ ସମର୍ଥନ ପାଉଥିଉ । ପାଞ୍ଚ, ସାତ ମାଇଲ ଧରି ଯେତେ ଗାଁ, ସବୁ ବୁଲି ପ୍ରଚାର କଲୁ । ଏବଂ ସେ ସବୁ ଗାଁର ଲୋକେ ଲୁଣମରା ପାଇଁ ସମ୍ମତ ହୋଇଗଲେ । ତାରିଖ ମୋର ମନେ ନାହିଁ । ଦିନ ଠିକ୍ ହେଲା, ଆମେ ଶୋଭାଯାତ୍ରା କରି ସୋରଣ ଚଲକା କୂଳରେ ଲୁଣମାରିବା ପାଇଁ ବାହାରିଲୁ । ଆମ ସଙ୍ଗେ ହଜାର ହଜାର ଲୋକ ଗ୍ଲଲଥାନ୍ତି । ଟାଙ୍ଗି ଥାନାର ସବ୍ ଇନସ୍‌ପେକ୍ଟର ଅଖିଲ ଦତ୍ତ ତାଙ୍କ ପୁଲିସ ଦଳବଳ ଧରି ମଧ୍ୟ ଗ୍ଲଲଥାନ୍ତି । ସୋରଣର ପ୍ରଶସ୍ତ ଚଲକାକୂଳରେ ସେଦିନ ବିପୁଳ ଉତ୍ସାହ । ଶହ ଶହ ଜାତୀୟ ପତାକା ଫର ଫର ହୋଇ ଉଡ଼ିବାକୁ ଲାଗିଲା । ପ୍ରାରମ୍ଭିକ ବକ୍ତୃତା ଦେବାପରେ ମୁଁ ପ୍ରଥମେ ଲବଣ ଆଇନ ଅମାନ୍ୟ କରି ହାଣ୍ଡିରେ ଚଲକା ପାଣି ଆଣି ଚୁଲ୍ଲୀରେ ବସାଇ ଲୁଣ ରାନ୍ଧିବାକୁ ଆରମ୍ଭ କଲି । ଜୟନାଦ ଓ ସ୍ତ୍ରୀଲୋକଙ୍କ ହୁଳହୁଳି ଧ୍ୱନି ଉଚ୍ଛୁଳି ପଡ଼ିଲା; କିନ୍ତୁ ପୁଲିସ ଆମକୁ ଆକ୍ରମଣ ନକରି ନୀରବ ଦର୍ଶକ ହୋଇ ଛିଡ଼ା ହୋଇଥିଲେ । ପରେ ଯେଉଁସବୁ ଘଟଣା ଘଟିଲା ସେଥିରୁ ମୋର ମନେ ହେଲା ସେମାନଙ୍କୁ ଉପରୁ ଏହିପରି ହୁକୁମ ଥିଲା ।

ଠିକ୍ ଏହି ସମୟରେ ଗାନ୍ଧି-ଇରଉଇନ୍ କଥାବାର୍ତ୍ତା ଗ୍ଲଲଲା । ଲର୍ଡ଼-ଇରଉଇନ୍ ଥିଲେ ଭାରତର ବଡ଼ଲାଟ । ଏବଂ ଶେଷରେ ଗାନ୍ଧି-ଇରଉଇନ୍ ଚୁକ୍ତି ସ୍ୱାକ୍ଷରିତ ହେଲା ମାର୍ଚ୍ଚ ତା୪ରିଖ ୧୯୩୧ ରେ । ଏହି ଚୁକ୍ତି ଫଳରେ ଲୁଣମରା ଉପରୁ କଟକଣା ଉଠିଗଲା ।

ଯେଉଁ ଗଣଆନ୍ଦୋଳନ ବା ସଂଗ୍ରାମ ଆରମ୍ଭ ହୋଇଥିଲା ତାହାର ଗୋଟିଏ ପର୍ବ ଏହିଠାରେ ଶେଷ ହେଲା ବିଜୟସୂଚକ । ଯଦିଓ ଏ ବିଜୟ ଥିଲା ସୀମିତ । ଲୋକେ ଆଉ ଗୋଟିଏ ପଦ ଆମକୁ ବଢ଼ାଇବା ପାଇଁ ସାହାଯ୍ୟ ପାଇଲେ ଏବଂ ମନସ୍ଥକଲେ । କାରଣ ଏବେବି ସ୍ୱାଧୀନତା ଆହୁରି ଦୂରରେ ।

କୁନ୍ଦୁଡ଼ି ହାଟ ପଡ଼ିଆରେ ଏହି ବିଜୟ ଉତ୍ସବ ପାଳନର ଆୟୋଜନ ହୋଇଥିଲା କୁନ୍ଦୁଡ଼ି ଗ୍ରାମପଟେ ଯେତେ ଗାଁ ଥିଲା, ତୋରଣ ଓ କୁନ୍ଦୁଡ଼ିରେ ସେଦିନ ଦୀପାବଳୀ ଉତ୍ସବ ଭଳି ଘରେ ଘରେ ଦୀପାବଳୀ ଜଳି ଗାଁ ଦାଣ୍ଡ ଆଲୁଅ କଲା, ବାଣ ଫୁଟିଲା, ଆନନ୍ଦରେ ଲୋକେ ପିଲାଙ୍କୁ ମିଠେଇ ବାଣ୍ଟିଲେ । ଅନ୍ତରର ଉଲ୍ଲାସ ଭାଷା କଦାପି ପ୍ରକାଶ କରିପାରିବନାହିଁ, କେବଳ ଅନୁଭବ କରିହେବ । କୁନ୍ଦୁଡ଼ି ହାଟ ପଡ଼ିଆରେ ସଭା ହେଲା । ସଭାରେ ମୁଁ ବାନାମ୍ବରର ପାଣି ଓ ଆଉ କେତେଜଣ ମଧ୍ୟ ବକ୍ତୃତା ଦେଲେ । ଜୟଧ୍ୱନି ଓ ଆନନ୍ଦ ଉଲ୍ଲାସ ଭିତରେ ସଭା ଶେଷ ହେଲା । ଆମ ପାଇଁ ଭୋଜିର ବ୍ୟବସ୍ଥା ଥିଲା ।

ଏହିଠାରେ ମାଇନର ସ୍କୁଲରେ ପଣ୍ଡିତ ରଘୁନାଥ ମହାପାତ୍ର ଥିଲେ ପ୍ରଧାନ ଶିକ୍ଷକ । ସେ ଥିଲେ କଂଗ୍ରେସ ମତାବଲମ୍ବି, ତାଙ୍କ ସହିତ ମୋର ଏହିଠାରେ ଘନିଷ୍ଠ ପରିଚୟ ହୋଇଥିଲା ଏବଂ ପରେ ତାଙ୍କ ସହିତ ଏକାଠି କାମ କରିବାର ସୁଯୋଗ ମିଳିଲା ଭୁବନେଶ୍ୱରରେ, ସେ ଆଜି ଜୀବିତ ନାହାନ୍ତି ।

ରଘୁନାଥ ପାଣି ଯେ ଆମକୁ ସାହାଯ୍ୟ କରୁଥିଲେ ସେବି ଆଜି ଆଉ ନାହାନ୍ତି । ତାଙ୍କର ସ୍ମୃତି ମୋ ପାଖରେ ରଖି ଦେଇଗଲେ ।

ଏହି ଲବଣ ସତ୍ୟାଗ୍ରହ ପରେ ବହୁବାର ମୁଁ ଯାଇଛି କୁନ୍ଦୁଡ଼ି । ସେତେବେଳେ ଯାଇଛି କର୍ମ୍ମୀନିଷ୍ଠ ହିସାବରେ ; କିନ୍ତୁ ସେ ମୋତେ ତାଙ୍କ ଘରେ ଖାଇବାକୁ ନ ଦେଇ କେବେ ଛାଡ଼ି ନାହାନ୍ତି ।

ଲବଣ ସତ୍ୟାଗ୍ରହ ବନ୍ଦ ହେଲା । ଆଉ ୪, ୫ ଦିନ ଏଠାରେ ରହିଲା ପରେ ଆମେ କୁନ୍ଦୁଡ଼ିରୁ ବିଦାୟ ନେଲୁ । କୁନ୍ଦୁଡ଼ି ଷ୍ଟେସନ୍‌ରେ ଆମକୁ ବିଦାୟ ଦେବାକୁ ଅନେକ ଲୋକ ସେଦିନ ଆସିଲେ । ଜୟନାଦ ଭିତରେ ଟ୍ରେନ୍‌ଟି ଆମକୁ ନେଇ ଦିଲ୍ଲୀ ଅଭିମୁଖେ ଯାତ୍ରା କଲା ।

## ଅସନ୍ତୁଷ୍ଟ—ସନ୍ତୁଷ୍ଟ ।

ଭଗତଙ୍କର ଏଇ ବିସ୍ଫୋରଣ,, ଇଂରେଜ ସରକାରର ମୂଳଦୁଆ ଦୋହଲି ଗଲା । ଆତଙ୍କ ଜାତହେଲା ଶାସକ ଗୋଷ୍ଠି ମନରେ । ଲୋକଙ୍କ ପାଖରେ ଅସମ୍ଭବ ସମ୍ଭବ ହେଲା । କେତେକ ବିପ୍ଳବୀ ଦେଖିଲେ ଯେ ବ୍ୟକ୍ତିଗତ ଭାବେ କେତେଜଣ ଇଂରେଜ ଅଫିସରଙ୍କୁ ମାରିଦେଲେ ଇଂରେଜ ସରକାରଙ୍କୁ ଭାରତରୁ ତଡ଼ିଦିଆ ଯାଇ ପାରିବ ନାହିଁ । ଆଉ ମଧ୍ୟ ବାହାରର ଶକ୍ତି ମିଳିବା ସମ୍ଭବ ନୁହେଁ । ତେଣୁ ପ୍ରାୟ ୫୮ ଜଣ ବିପ୍ଳବୀ ଗୋଟିଏ ଯୋଜନା କଲେ । ତାଙ୍କର ଉଦ୍ଦେଶ୍ୟ ହେଲା ଇଂରେଜ ସରକାର ଉପରେ ଗୋଟାଏ ମରଣ ମାଡ଼ ମାରିବା, ବାହାର ଶକ୍ତିର ସାହାଯ୍ୟ ବିନା ଏହା ସମ୍ଭବ ? ଏହି ଧାରଣା ଲୋକଙ୍କ ମନରେ ଜନ୍ମାଇବା ଏବଂ ସେମାନଙ୍କର ଆତ୍ମ ବିଶ୍ୱାସ ଆଣିବା ।

ଚଟ୍ଟାଗଙ୍ଗ ଏବେ ବାଙ୍ଗଲା ଦେଶରେ । ସେଠାରେ ଥିଲେ ଇଂରେଜ ମାନଙ୍କର ଫୌଜ, ଅସ୍ତ୍ରାଗାର ଓ ଇଂରେଜ ଅଫିସରମାନଙ୍କର ଆଡ୍ଡା ।

୧୯୩୦ ଅପ୍ରେଲ ତା ୧୮ ଶନ୍ଧ ଅନ୍ଧକାର ଘୋର ବନ୍ଦରରେ ଭୟଙ୍କର ବିସ୍ଫୋରଣ ଘଟିଲା । ହଠାତ୍ ଗୁଳିବନ୍ଧୁକ ଆବାଜରେ ସମସ୍ତେ ସ୍ତବ୍ଧ ହୋଇଗଲେ । ଘଟଣା କ'ଣ କେହି ଅନୁମାନ ମଧ୍ୟ କରିପାରିଲେ ନାହିଁ । ଅନେକେ ଯୁବକ ଇଂରେଜ ମାନଙ୍କର ଅସ୍ତ୍ରାଗାର ଉପରେ ଆକ୍ରମଣକରି ମେଜରଙ୍କୁ ମାରି ଦେଲେ । ଅସ୍ତ୍ର ଶସ୍ତ୍ର ଯାହା ପାଇଲେ ବୋହି ନେବାରେ ଲାଗିଲେ ଯାହା ନେଇ ନ ପାରିଲେ ସେଥିରେ ନିଆଁ ଲଗାଇ ଦେଲେ, ଯେତେ ପୁଲିସ ଗ୍ରୁଇଣି (ଇଂରେଜ) ଥିଲା ସେ ସବୁ ଆକ୍ରମଣ କରି ସେଠାରୁ ଗୁଳି ବନ୍ଧୁକ ନେଇଗଲେ । ଜିଲ୍ଲା ମାଜିଷ୍ଟ୍ରେଟ ଖବର ପାଇ ସେଠାକୁ ଦୌଡ଼ିଲେ । ତାଙ୍କ ଉପରକୁ ଗୁଳି ହେଲା ପ୍ରାଣ ବିକଳରେ ସେ ବନ୍ଦରର କୋଠିକୁ ପଳାଇ ଆଶ୍ରୟ ନେଲେ । '

ଯାହା କିଛି ବନ୍ଧୁକ ଗୁଳିଥିଲା ତାକୁ ନେଇ ପୁଲିସଙ୍କୁ ଏକାଠି କରି ଗୋଟାଏ ପାହାଡ଼ ଉପରୁ ବିପ୍ଳବୀମାନଙ୍କୁ ଆକ୍ରମଣ କଲେ । ବିପ୍ଳବୀମାନେ ମଧ୍ୟ ଓଲଟା ଆକ୍ରମଣ ଚଳେଇଲେ । ରେଳ ରାସ୍ତା, ପୋଲ ସବୁ ଭାଙ୍ଗି ଉଡ଼େଇ ଦେଲେ ।

ପୁଲିସ ଲାଇନ ଦଖଲକରି ସେଠାରେ ଇଉନିୟନ ଜ୍ୟାକକୁ (ଇଂରେଜ ପତାକା) ପୋଡ଼ିଦେଲେ ଏବଂ ତା ଜାଗାରେ ଭାରତର ଜାତୀୟ ପତାକାକୁ ତୋପ ଧ୍ୱନିର ଅଭିବାଦନ ଦେଇ ଉଡ଼ାଇଦେଲେ । ଭାରତ ପାଇଁ ଏକ ସରକାର ଗଢ଼ିଲେ, ତାର ସଭାପତି ହେଲେ ସୂର୍ଯ୍ୟସେନ । କିଛିଦିନ ପାଇଁ ଏ ସହରଟିରୁ ଇଂରେଜଶାସନ ଲୋପପାଇଲା । ସେହିଦିନରୁ ଖଣ୍ଡପ୍ରଳୟ ସବୁ ଚାଲିଲା । ବହୁତ ଇଂରେଜସୈନ୍ୟ, ସେନାପତି ମଲେ, ବିପ୍ଳବୀମାନଙ୍କ ଭିତରୁ ମଧ୍ୟ କେତେକ ଲଢ଼େଇରେ ପ୍ରାଣ-ହରାଇଲେ, ଏହି ଲଢ଼େଇ ଚାଲିଲା ୧୯୩୩ ଯାଏ ।

ଏ ଲଢ଼େଇରେ ଅନେକଙ୍କୁ ଫାଶି ହେଲା । ସୂର୍ଯ୍ୟସେନ ଧରାପଡ଼ିଲେ । ୧୯୩୩ ଜାନୁଆରୀ ୧୨ ତାରିଖ ଅଧ ରାତି । ସୂର୍ଯ୍ୟସେନଙ୍କୁ ଫାଶି ଖୁଣ୍ଟକୁ ନିଆଗଲା । ତାଙ୍କ ପଛରେ ଗଲେ ତାରକେଶ୍ୱର ଦସ୍ତିଦାର । ଉଭୟଙ୍କ ବେକରେ ଲାଗିଲା ଫାଶିର ଦଉଡ଼ି । ମରଣରେ କୋଳରେ ନୂତନ ଜୀବନର ସନ୍ଧାନ ଦେଇଗଲେ ଏକାଠିକୁ । ମରଣ ଭିତରେ ରହିଛି ବାସ୍ତବ ଜୀବନ । ଏହି ଦର୍ଶନ ଆଦର୍ଶ ସେଦିନ ଶିଖିଲା ଏ ଜାତି ।

ଲବଣ ସତ୍ୟାଗ୍ରହ ଗଣ ଆନ୍ଦୋଳନ; ତା ସାଙ୍ଗକୁ ଏହି ଚଟ୍ଟାଗଙ୍ଗ ଅସ୍ତ୍ରାଗାର ଲୁଣ୍ଠନ ଓ ନୂତନ ରାଷ୍ଟ୍ରର ଘୋଷଣା । ଏସବୁ ଏକା ସାଙ୍ଗରେ ଖୁବ୍ ବେଗରେ ଆଗେଇ ନେଉଥାଏ ଇତିହାସକୁ ତାର ଚଲା ବାଟରେ । ମୋଡ଼ ବୋହୁଥାଏ ଗୋଟାଏ ନିର୍ଦ୍ଦିଷ୍ଟ ଦିଗକୁ, ଆଉ କେନ୍ଦ୍ରୀଭୂତ ହେଉଥାଏ । ଇଂରେଜ ସରକାରର ମୂଳଦୁଆ ଦୋହଲୁଥାଏ ଭାରତରେ ।

ଭାରତର ନୂଆ ଶାସନ ଖସଡ଼ା ବିଷୟ ଆଲୋଚନା କରିବାକୁ ଇଂରେଜ ସରକାର ଲଣ୍ଡନରେ ୨ୟ ଥର ଗୋଲଟେବୁଲ ଡକାଇଲେ । ବହୁଦଳ ଓ ବ୍ୟକ୍ତି ଗଲେ । ଗାନ୍ଧି କଂଗ୍ରେସ ତରଫରୁ ନେତା ହୋଇଗଲେ । ୧୯୩୧ ବର୍ଷ ଶେଷ ହୋଇ ଆସୁଥାଏ । ଏମିତି ଅବସ୍ଥା, ସବୁ କୋଳ ମାରି ଯାଉଥାଏ । ଗୋଲଟେବୁଲ ବୈଠକରୁ ଅସ୍ଥା ବରଂ ବାହାରିବାର ଆଶଙ୍କା ଥାଏ ଅଧିକ ।

## ଜଟିଳ ଗତି

ଗୋଟାଏ ପଟରେ ଇଂରେଜ ସରକାର କଂଗ୍ରେସ ସାଙ୍ଗରେ ଆଲୋଚନା କଲା ଜଟିଳ ସମସ୍ୟାଗୁଡ଼ିକ ଉପରେ । ଆଉ ଗୋଟାଏ ପଟରେ ଚାଲିଥାଏ ଆତଙ୍କବାଦୀଙ୍କର ଇଂରେଜ ସରକାରର ବହୁ ହାକିମମାନଙ୍କ ଉପରେ ଆକ୍ରମଣ ଓ ସଙ୍ଗଠିତ ଦଳର ଷଡ଼ଯନ୍ତ୍ର । ଇଂରେଜ ସରକାରର ସେମାନଙ୍କ ଉପରେ ଆକ୍ରମଣ, ଫାଶି ଗୁଳି ଚଳାଇବା ଚାଲିଛି । ଜେଲ ସବୁ ଭରିଯାଉଥାଏ ଏହି ବିପ୍ଳବୀ ଯୁବକଙ୍କ ଗିରଫରେ । ପୁରୁଣା ଜେଲ ସବୁରେ ଆଉ ଯାଗା ନାହିଁ, ନୂଆ ନୂଆ କେମ୍ପ ଜେଲ ସବୁ ଖୋଲା ଯାଉଥାଏ । ହିଜଳି ଜେଲ ତା'ହାର ଭିତରୁ ଗୋଟିଏ । ଏହି ଜେଲ ଭିତରେ ସଂଗ୍ରାମ ଚାଲେ । ଗୁଳି ବନ୍ଧୁକରେ ବିପ୍ଳବୀମାନଙ୍କର ଚେତନା ଓ ମନର ବଳକୁ ଦବାଇ ଦେବାପାଇଁ; କିନ୍ତୁ ଫଳ ହେଉଥାଏ ଓଲଟା । ଅନେକ କ୍ଷେତ୍ରରେ ହେଉଥାଏ ସେମାନଙ୍କର ପ୍ରତିହିଂସା, ସେମାନେ ବରଂ ଓଲଟା ଆକ୍ରମଣ କରି ଇଂରେଜ ସରକାରର ମନର ବଳ ଭାଙ୍ଗି ଦେଉଥାନ୍ତି ।

ଭାରତଭଳି ଏଡ଼େ ବଡ଼ ସାମ୍ରାଜ୍ୟ ଲୁଟ କରିବା ପାଇଁ ଏତେ ସମ୍ପତ୍ତି, ସହଜରେ କିଏ ଛାଡ଼େ । ତେଣୁ ଇଂରେଜ ସରକାର ତାର ସମସ୍ତ କଳ କୌଶଳ କରିବାରେ ବ୍ୟସ୍ତ ଥାଏ ।

ଭାରତର ଜନସାଧାରଣ ସ୍ୱାଧୀନତା ପାଇଁ ଲଢ଼ୁଛନ୍ତି । ମଧ୍ୟବିତ୍ତ ଶ୍ରେଣୀ ସଚେତନ, ସଂଗଠିତ, ମଧ୍ୟବିତ୍ତ ପେଟିବୁର୍ଜୁଆ ଶ୍ରେଣୀ ସ୍ୱାଧୀନତାରେ ଉଦ୍ବୁଦ୍ଧ, କୃଷକ ଶ୍ରେଣୀ ଅତ୍ୟାଚାରର ଶୋଷଣରେ ଜର୍ଜରିତ ହେଉଛନ୍ତି । ବୁର୍ଜୁଆ ଶ୍ରେଣୀ ୧ମ ମହାଯୁଦ୍ଧ ପରେ ବେଶ ମୁଣ୍ଡଟେକି ଉଠିଲେଣି । ସେମାନଙ୍କର କଂଗ୍ରେସ ବେଶ ସଂଗଠିତ ଓ ଲୋକପ୍ରିୟ ହେଲାଣି । ଗାନ୍ଧି, ଜବାହରଲାଲ, ମୋତିଲାଲ, ବଲ୍ଲଭଭାଇ ପଟେଲ, ସରୋଜିନୀ ନାଇଡୁ, ଆବୁଲକଲାମ ଆଜାଦ ପ୍ରଭୃତି ବଡ଼ ବଡ଼ ବ୍ୟକ୍ତି ଏହି ସଂଗଠନର ନେତା । ରୁଷିଆ ଭଳି ଗୋଟାଏ ବିରାଟ ଦେଶରେ ରାଷ୍ଟ୍ରୀୟ କ୍ଷମତା ଶ୍ରମିକ ଶ୍ରେଣୀର ହାତରେ, ପୁଞ୍ଜିବାଦ ଉପରେ ସାମ୍ୟବାଦର ବିଜୟ ଧ୍ରୁବତାରା ଭଳି ସମସ୍ତଙ୍କ ଆଖି ଆଗରେ ଜଳୁଛି । ସାମ୍ରାଜ୍ୟବାଦ ବିରୋଧୀ କଂଗ୍ରେସ ମଞ୍ଚ ଉପରେ ସବୁ ଶ୍ରେଣୀ ଏକଯୁଟ ।

ଏହିପରି ଏକ ପରିସ୍ଥିତି ଭିତରେ ସୁଦୂରେ କଂଗ୍ରେସର ୧୯୩୨ ଅଧିବେଶନ ବସିବାର ସ୍ଥିର ହେଲା, ୧୯୩୨ ଫେବ୍ରୁୟାରୀରେ । ଦେଶବାସୀ ବିଶେଷକରି ଆମେ କଂଗ୍ରେସର ଆୟୋଜନରେ ଭାରି ବ୍ୟସ୍ତ ।

ଅଭ୍ୟର୍ଥନା ସମିତିର ସଭ୍ୟ ସଂଗ୍ରହ ଯୋରସୋରରେ ଚାଲିଲା । ପଣ୍ଡିତ ନୀଳକଣ୍ଠଙ୍କୁ ଅଭ୍ୟର୍ଥନା ସମିତିର ସଭାପତି ନକରାଇ ଦବାକୁ ଷଡ଼ଯନ୍ତ୍ର ମଧ୍ୟ ତା'ର ସଙ୍ଗେ ଚାଲିଲା । କିନ୍ତୁ ଶେଷରେ ପଣ୍ଡିତ ନୀଳକଣ୍ଠ ଦାସ ଅଭ୍ୟର୍ଥନା ସମିତିର ସଭାପତି, ଗୋପବନ୍ଧୁ ଚୌଧୁରୀ ସଂପାଦକ ଓ ହରେକୃଷ୍ଣ ମହତାବ ସ୍ୱେଚ୍ଛାସେବକ ବାହିନୀର ନାୟକ ନିର୍ବାଚିତ ହେଲେ ।

ପ୍ରଥମ ସ୍ୱେଚ୍ଛାସେବକ ତାଲିମ ଶିବିର ପୁରୀଜିଲ୍ଲାର ମୁଁ, ଗତିକୃଷ୍ଣ ସ୍ୱାଇଁ, ନୃସିଂହଚରଣ ସାମନ୍ତସିଂହାର କଟକରୁ ନବକୃଷ୍ଣ ଚୌଧୁରୀ, ସୁଧୀର ଘୋଷ, ମାଳତୀ ଚୌଧୁରୀ, ସୁରେନ୍ଦ୍ର ଦ୍ୱିବେଦୀ, ସୁରେନ୍ଦ୍ର ପଟ୍ଟନାୟକ, ବିନୋଦ କାନୁନଗୋ, ମନମୋହନ ଚୌଧୁରୀ ଏହିଭଳି ଓଡ଼ିଶାର ପ୍ରତ୍ୟେକ ଜିଲ୍ଲାରୁ ବଛା ବଛା ଯୁବକ ପ୍ରୌଢ଼ ଏହି ଶିବିରରେ ଶିକ୍ଷା ପାଇଲେ । ବମ୍ବେରୁ ତାଲିମ ଦବାପାଇଁ ହିନ୍ଦୁସ୍ଥାନ ସେବା ଦଳରୁ ବଲସାଭର ଆସିଥାନ୍ତି । ସେତେବେଳେ ଭାରତରେ ହିନ୍ଦୁସ୍ଥାନ ସେବାଦଳ ଗଢାଯାଇଥାଏ ଏବଂ ଡକ୍ଟର ହାଡ଼ିକାର ଥାନ୍ତି ତାର ମୁଖ୍ୟ । ଏ ଥିଲା କଂଗ୍ରେସର ଏକ ଅଂଗ ।

ଯେଉଁମାନେ ଏଠାରେ ତାଲିମ ପାଇଲେ ସେମାନେ ପ୍ରଦେଶସାରା ବିଛେଇ ହୋଇଗଲେ ଏବଂ ବିଭିନ୍ନ ଶିବିରରେ ସ୍ୱେଚ୍ଛାସେବକ ତାଲିମ ଦବା କାମ ଆରମ୍ଭ କରିଦେଲେ । ମୁଁ କଟକର ଗୋଟିଏ ଶିବିରର ଜନୈକ ପରିଚାଳକ ହେଲି । ପୁରୀରେ ଆଉ ଗୋଟିଏ ମୁଖ୍ୟଶିବିର ରହିଲା । ମୋତେ ଅଭ୍ୟର୍ଥନା ସମିତିର ସ୍ୱେଚ୍ଛାସେବକ ବିଭାଗରେ ହରେକୃଷ୍ଣ ମହତାବଙ୍କ ସହକାରୀ ହିସାବରେ ରଖାଗଲା, କିନ୍ତୁ ଜଗତସିଂହପୁରରେ ନମାପଡ଼ାରେ ଗୋଟିଏ ଶିକ୍ଷା ଶିବିର ଖୋଲି ତାଲିମ ଦବାପାଇଁ ସେଠାକୁ ମୋତେ ପଠାଗଲା ।

ଲର୍ଡ ଆରଉଇନ୍‌ଙ୍କ ପରେ ଲର୍ଡ ଉଇଲିଂଡନ ବର୍ତ୍ତମାନ ଭାରତର ବଡ଼ଲାଟ ଇଂରେଜ ସରକାର ତେଣେ ଗାନ୍ଧିଙ୍କୁ ଗୋଲଟେବୁଲ ବୈଠକକୁ ଡ଼କାଇ ନେଇ ଏଣେ ଭାରତରେ ଦମନ ଓ ଅତ୍ୟାଚାରର ସମସ୍ତ ଅସ୍ତ୍ର ପଜେଇ ସଜେଇ ରଖିଲେ । କଂଗ୍ରେସ ଓ ସ୍ୱାଧୀନତା ଆନ୍ଦୋଳନ ଉପରେ ଆକ୍ରମଣପାଇଁ ପ୍ରସ୍ତୁତ ହୋଇଗଲେ ।

ଗୋଲଟେବୁଲ ବୈଠକର ଫଳାଫଳ ସମ୍ପର୍କରେ ଯାହା ଆଶଙ୍କା କରାଯାଉଥିଲା ତାହାହିଁ ହେଲା ଗାନ୍ଧିଜୀ ଖାଲିହାତରେ ୧୯୩୧ ତା ୨୮ ଡ଼ିସେମ୍ବରରେ ଭାରତ ଫେରିଲେ । ସେତେବେଳେକୁ ଜବାହରଲାଲ ବନ୍ଦୀ ହୋଇସାରିଲେଣି ।

୧୯୩୨ ଜାନୁଆରୀ ୨୪ ତାରିଖ, ଗାନ୍ଧିଙ୍କ ଗିରଫ ହେଲେ, କଂଗ୍ରେସ ବେଆଇନ ହେଲା ପୁରୀ ବଲଭ ମଣ୍ଡପରେ କଂଗ୍ରେସ ଅଧିବେଶନ ପାଇଁ ଧାଡ଼ି ଧାଡ଼ି ଘର ସାଜସଜ୍ଜା ସବୁ ଧୂଳିସାତ୍ ହୋଇଗଲା ! କଂଗ୍ରେସ ନେତା ଓ କର୍ମୀ ସମସ୍ତଙ୍କୁ ଗିରଫ କରି ନିଆହେଲା ।

ଜମାପଡ଼ାର ସ୍ୱେଚ୍ଛାସେବକ ଶିବିରର ତତ୍ତ୍ୱାବଧାନ କରି ମୁଁ ପୁରୀ ବାହାରି ଆସିଲି । ସିମିଳି ଅଂଶ ଛକରେ ପୁଲିସ ଜଗୁଥାଏ । ସେତେବେଳେ ଜମାପଡ଼ାକୁ କୌଣସି ବସ ନଥାଏ । ସିମିଳିରୁ ଜମାପଡ଼ା ୧୨ ମାଇଲ୍ । ୬ ମାଇଲ ନାମକୁ ପକ୍କା ରାସ୍ତା । ବାକୀତକ ମାଟି ରାସ୍ତା । ସାଇକେଲରେ ଆସୁଥାଏ । ମୋତେ ଖଦଡ଼ ପିନ୍ଧା ଦେଖି ପୁଲିସ ଜଗୁଆଳ ଅଟକାଇ ନାନା ଜେରା କଲାପରେ କ'ଣ ଭାବିଲା କେଜାଣି ଛାଡ଼ି ଦେଲା । ସିଧାସଳଖ ସେଠାରୁ ଚାଲିଲି ପୁରୀକୁ ।

ପୁରୀ ଆସି ଦେଖେ ପୁନ୍ଦୂଣା ରାମଚଣ୍ଡୀସାହି ଆଶ୍ରମକୁ ଗଲି । ପ୍ରକୃତରେ ଅନେକ କର୍ମୀ ସେତେବେଳକୁ ଗିରଫ ହୋଇ ନଥାନ୍ତି । ଏଠି କଂଗ୍ରେସ ଅଫିସରେ କେମିତି କାହିଁକି ପୁଲିସ ଆଖିରୁ ବାଦ୍ ପଡ଼ିଯାଇଥାଏ । ବୋଧହୁଏ ବଲ୍ଲଭପଣ୍ଡା କଂଗ୍ରେସ ନଗର ଓ ଅଭ୍ୟର୍ଥନା ସମିତି ଅଫିସ ଉପରେ ବେଶୀ ନଜରଥିଲା ବୋଲି ।

ଆମେ ସେଠାରେ ରହି ଯୋଜନା କରୁଥାଉ ଆନ୍ଦୋଳନ ପାଇଁ । ଠିକ୍ ହେଲା ସବୁରେ କଲେକ୍‌ଟ୍ରେଟ ଅଫିସ ସବୁରେ ତାଲା ବନ୍ଦ କରିଦେବୁ । ଏହି ଯୋଜନାକୁ କାର୍ଯ୍ୟ କରିବାକୁ ବାହାରିଛୁ । ହଠାତ୍ ଆମ ଉପରେ ପୁଲିସ ଆକ୍ରମଣ ହେଲା ଆଶ୍ରମକୁ ଘେରିଯାଇ ଆମ ସମସ୍ତଙ୍କୁ ଗିରଫ କରିନିଆହେଲା । ସେତେବେଳକୁ ଭାରତରୁ ଲକ୍ଷାଧିକ ଲୋକ ଗିରଫ ହୋଇସାରିଲେଣି ଏବଂ ଆହୁରି ଗିରଫ ହେବାରେ ଲାଗିଥାନ୍ତି ! କଂଗ୍ରେସ ବେଆଇନ ସଙ୍ଗଠନ ହେଲା ଆମେ ତାର କର୍ମୀ ଥିବାରୁ ଆମକୁ ଛଅମାସ ଦଣ୍ଡ ହେଲା ସେତେବେଳେ ନୂଆ ଅର୍ଡିନାନ୍‌ସ ଜାରି ହୋଇଥାଏ । ଏହି ଅର୍ଡିନାନ୍‌ସ ବଳରେ ଶାସନ ଓ ବିଚାର ଚାଲିଥାଏ ।

ପୁରୀ ଜେଲରେ ସ୍ଥାନାଭାବ । ଆମକୁ ପ୍ରଥମେ ହଜାରିବାଗ ଜେଲକୁ ନିଆଗଲା । ସେଠାରେ ଥିଲେ ଡକ୍‌ଟର ରାଜେନ୍ଦ୍ର ପ୍ରସାଦ, ନୀଳକଣ୍ଠ ଦାସ ପ୍ରଭୃତି । ତାଙ୍କଠାରୁ ଅଲଗା କରି ଆମକୁ ଆଉ ଏକ କୋଠରୀରେ ବନ୍ଦରେ ରଖାହେଲା । ଆମର ଜଗୁଆଳି ସକାଳେ ଅନୁଗ୍ରହ କରି ଆମକୁ ବୁଲେଇ ଆଣେ । କାରଣ ଆମେ ଥାଉ ସେମାନଙ୍କ ଆଖିରେ ଛିଲା । ବସୁରପଡ଼ ମଧ୍ୟ ଆମ ନାମ ପିଲାଙ୍କ ତାଲିକାରେ ଦେଇଥାନ୍ତି । ବୁଲି ଆସିଲାବେଳେ ରାଜେନ୍ଦ୍ର ପ୍ରସାଦ, ନୀଳକଣ୍ଠ ଦାସ ପ୍ରଭୃତିଙ୍କ ସହ ଦେଖା ଓ କଥାବାର୍ତ୍ତା ହୁଏ । ଏ ଦୁଇ ନେତାଙ୍କ ସଙ୍ଗେ କଥାବାର୍ତ୍ତାରୁ ମୁଁ ନୀଳକଣ୍ଠ ଦାସଙ୍କୁ ରାଜେନ୍ଦ୍ର ପ୍ରସାଦଙ୍କଠାରୁ ସବୁ ବିଷୟରେ ଉଚ୍ଚ ମନେ ।

ଏହିଠିଏ ଥିଲେ ଆଉ ଜଣେ ଲୋକ । ଯେମିତି ଉଚ୍ଚା, ସେମିତି ମୋଟାସୋଟା, ସେମିତି ରଙ୍ଗ, ସେମିତି ସ୍ମୃତି । ଏବେ ଯେ ଆଉ ଭାରତର ନାଗରିକ ନୁହନ୍ତି, ପାକିସ୍ଥାନର । ତାଙ୍କୁ ସରକାର ଏତେ ଭୟ କରୁଥିଲେ ଯେ ତାଙ୍କ ଦେଶଠାରୁ ହଜାର ହଜାର ମାଇଲ ଦୂର ଏହି ଜେଲରେ ଆଣି ବନ୍ଦୀ କରି ରଖିଥିଲେ । ପୁଣି ଜେଲ ଭିତରେ ଆହୁରି ଏକ ପାଚେରୀ ଘେର ପ୍ରଶସ୍ତ ଅଗଣା ମଝିରେ ଗୋଟିଏ ଘରେ ତାଙ୍କୁ ଏକୁଟିଆ ରଖା ହୋଇଥିଲା । ଏହାଙ୍କୁ ମୁଁ ଏହିଠାରେ ଦେଖିଥିଲି ପ୍ରଥମ । ତାଙ୍କ ନାମ ଅବଦୁଲ ଗଫୁର ଖାଁ ସୀମାନ୍ତଗାନ୍ଧି ବୋଲି ସମସ୍ତେ ଡାକନ୍ତି । ଏ ଯେଉଁ ସ୍ୱେଚ୍ଛାସେବକ ବାହିନୀ ଗଢ଼ିଥିଲେ ସେଥିରେ ଥିଲେ ଏକଲକ୍ଷ ତାଲିମପ୍ରାପ୍ତ ଯୁବକ ।

ଏଠାରେ କଏଦୀମାନେ ଆମକୁ ପେଟପୂରେଇ ଖାଇବାକୁ ଦେବାକୁ ଲାଗିଲେ । ମୋଟା ମୋଟା ବଡ଼ ତାଓ୍ୱାଭଳି ଛଅପଟ ରୋଟିକୁ ଲୁହା ପଇଁମରେ ପଲମେ ଡାଲି ତା ସାଙ୍ଗକୁ ଅଧପଲମେ ବାଇଗଣ, କୋବି, ଆଳୁ, ପାଳଙ୍ଗ ସାଗର ଭୁଣା । ଖାଇବ କେତେ ? ସକାଳୁ ଗୋଟାଏ ଲୋକ ଆଉଟା କ୍ଷୀର ବାଲ୍ଟିଏ ଆଣି ଆମକୁ କୁହେ ଯେତେ ପିଇବ ପିଅ । ଆମେତ ଥାଉ ଜେଲରେ ଗଜା ଟୋକା । ମୁଁ କ୍ଷୀରରୁ ପ୍ରାୟ ୩।୪ ଗିଲାସ ହେଲାଭଳି ପିଇଯାଏ । ଜଳଖିଆ ୨ ପଟ ରୋଟି, ଖାଇଲା ବେଳେ ସବୁ ଡାଲି, ଭୁଣା ୪ ପଟ ଯାଏ ରୋଟି ଖାଇ, ଦି' ବେଳା ଦଣ୍ଡ ବଇଠ ମାରେ । କାମତ କିଛି ନାହିଁ ପଢ଼ିବା ପାଇଁକି ଖବର କାଗଜ କି ବହି କିଛି ନାହିଁ । ଆଖି ସାମନାରେ ଖାଲି ପାଚେରୀ, ଆଉ ପାଚେରୀ ଡେଇଁ ଆକାଶକୁ ଚାହିଁ ଚାହିଁ ଦିନ କଟେ । ରାତି ହେଲମାତ୍ରେ ଦୁଆର ବନ୍ଦ । ପ୍ରବଳ ଶୀତ ୪, ୫ଟା କମ୍ବଳ ଏକାସଙ୍ଗେ ଘୋଡ଼େଇ ଶୋଇଯାଉ ସକାଳ ଯାଏ ।

ଅଳ୍ପଦିନ ପରେ ହଠାତ୍ ଦିନେ ଡାକରା ପଡ଼ିଲା ଜେଲଅଫିସକୁ । ଆମେ ସେଠାରେ ପହଞ୍ଚି ଦେଖିଲୁ ସଶସ୍ତ୍ର ଭଳି ଦଳେ ଲାଠି ଧାରି ପୁଲିସ ହାତକଡ଼ା ଧରି ଆ ହୋଇଛନ୍ତି । ଆମ ହାତରେ ହାତକଡ଼ା ପଡ଼ିଲା । ଆମେ ବୁଝିଲୁ ଯେ ଆମକୁ ଆଉ କୌଣସି ଜେଲକୁ ନିଆ ଯାଉଛି । ମଟରରେ ଆମକୁ ଯିବାକୁ ପଡ଼ିଲା । ଅନ୍ୟ ଗୋଟିଏ ଜେଲକୁ । ସେହି ଜେଲରେ ଦୁଇଦିନ ରହିଲାପରେ ଯାଇ ବୁଝିଲୁ ଯେ ସେ ଜେଲଟା ହେଉଛି ଗୟାଜେଲ । ଗୟାତ ଏକ ଧର୍ମକ୍ଷେତ୍ର, ସେଠାରେ ପୁଣି ଜେଲଖାନା ଆଉ ଏକ ଧର୍ମକ୍ଷେତ୍ର ।

ବୁଦ୍ଧଙ୍କ ତପସ୍ୟାକ୍ଷେତ୍ର ବୋଧିଦ୍ରୁମ ଦେଖିବାକୁ ମନ ଉଚ୍ଛନ୍ନ ହେଲା । କିନ୍ତୁ ଯିବାଟା ସହଜ ନୁହେଁ । ତେଣୁ ନିରାଶ ହେଲେ ଦେଖିଯିବାକୁ ସ୍ଥିର କଲି । ମାତ୍ର ୨ଦିନ ରାତି ପାହିଲା ପରେ ଦେଖିଲି ଯେ ଗୟାଜେଲରେ ଆମର ସ୍ଥାନ ନାହିଁ । ଆମକୁ ପୁଣି ଟ୍ରେନରେ ବସାଇ ଅନ୍ୟସ୍ଥାନକୁ ପଠାଗଲା । କିନ୍ତୁ କେଉଁଠାକୁ ଯାଉଛୁ ଜାଣିବା ସହଜ ନୁହେଁ । ସେ କଥା ଆମକୁ କେହି କହନ୍ତି ନାହିଁ ।

ଧାଟଣା ରେଲଷ୍ଟେସନ ପାଖରେ ହିଁ ଆମ ଗାଡ଼ିଟି ଆଗକୁ ଚାଲିଲା । ଗୋଟିଏ ଛୋଟିଆ ଷ୍ଟେସନ ଫୁଲବାଡ଼ି ଷ୍ଟେସନ । ସେଇଠାରେ ଆମର ପାଇଁ କେବଳ ଗାଡ଼ିଟି ଅଟକିଲା । ସାମନାରେ ଏକ ବିସ୍ତୃତ କ୍ଷେତ । ତାର ମଝିରେ ଧାଡ଼ିକ ଧାଡ଼ି ଟିଣଘର । ଚାରିପଟେ ତାର କଣ୍ଟାର ବାଡ଼ । ଚାରିପଟେ ଘୋଡ଼ା ସୱାର ଗୋରା ସୈନ୍ୟ ।

ସେହି ଗାଡ଼ିରେ ବିହାରର ଅନ୍ୟାନ୍ୟ ଅଞ୍ଚଳରୁ ମଧ୍ୟ ଅନେକ ସତ୍ୟାଗ୍ରହୀ ଆସିଥିଲେ । ଆମେ ସମସ୍ତେ ଜାତୀୟ ସଙ୍ଗୀତ ଓ ଜୟନାଦ କରି ଜେଲ ଅଭିମୁଖେ ଚାଲିଲୁ ।

ଜେଲଭିତରେ ଯେଉଁ ସବୁ ଘର ଆମ ପାଇଁ ତିଆର ହୋଇଥିଲା ତା ଭିତରେ ଓ ବାହାରେ ପୁରୁଷେ ଉଚ୍ଚ ଘାସ । ସେ ସବୁ ସଫାକରି ଲିପାପୋଛା କରି ବାସଯୋଗ୍ୟ କଲୁ ।

ଶୋଇବା ପାଇଁ ଆମକୁ ଦିଆହେଲା ଖଣ୍ଡେ ବାରମାସି ଚଟ, ୨ଖଣ୍ଡ କମ୍ବଳ ପିନ୍ଧିବା ପାଇଁ ୨ଟା କଛିଆ ୨ଟା ହାତକଟା ଜାମା ଖଣ୍ଡେ ଗାମୁଛା ମଶାରି ନାହିଁ କି ମୁଣ୍ଡପାଇଁ ତକିଆ ନାହିଁ । ତକିଆ ପାଇଁ ମୁଣ୍ଡତଳକୁ ଉଚ୍ଚ ମାଟି ପିଣ୍ଡି କରିଦେଲୁ । ଶୀତଦିନ, କମ୍ବଳ ଘୋଡ଼ିହୋଇ ମଶା ଦାଉରୁ ରକ୍ଷା ପାଇଲୁ । ମଶାତ ନୁହଁ ଗୋଟାଏ ଗୋଟାଏ ଛୋଟିଆ ଉଡ଼ାଜାହାଜ, ଗୁଣୁଗୁଣୁ ଶବ୍ଦ ମଧ୍ୟ ସେହିପରି ।

୬୦୦ରୁ ବେଶୀ ବନ୍ଦୀ ଏହି ଜେଲକୁ ଓଡ଼ିଶାରୁ ଆସିଲେ । ମୋଟରେ ୪୦୦୦ରୁ ଉର୍ଦ୍ଧ୍ୱ ବନ୍ଦୀଙ୍କୁ ଏହି ବନ୍ଦୀ ଖାନାରେ ରଖାଗଲା । ଖାଇବା ପାଇଁ ଚାଉଳ ଯେଉଁଭଳି ଧୋକରା ସେହିଭଳି ମୋଟା, ସକାଳୁ ଗୋଟା ବୁଟ ସିଝା । ଖାଇବା ଯେମିତି ଅଖାଦ୍ୟ ସ୍ଥାନଟା ଥିଲା ସେହିଭଳି ସ୍ୱାସ୍ଥ୍ୟ ପକ୍ଷରେ ହାନିକାରକ । ଏହିଭଳି ଅବସ୍ଥାରେ ଟାଇଫଡ଼ ଓ ନାଲିରକ୍ତ ଝାଡ଼ାରେ ଓଡ଼ିଶାର ଏକୋଇଶ ଜଣ ଗଜା ଟୋକା ଦିନ କେଇଟା ଭିତରେ ମରିଗଲେ ! ଶୁଣିବା ପାଇଁ ସରକାରର କାନ ନାହିଁ । ମୋର ଏଇଠାରେ ନାଲିରକ୍ତ ଝାଡ଼ା ହେଲା । ୫୨ ଦିନ ଭୋଗିଲି, ହାଡ଼ ଉପରେ କେବଳ ଚମଡ଼ା ରହିଲା । ଶେଷରେ କୌଣସି ପ୍ରାଣଟା ରହିଗଲା ଧଡ଼ରେ । କର୍ମଚାରୀ ଓ ସୁପରିନ୍ ଟେଣ୍ଡେଣ୍ଟଙ୍କ ବ୍ୟବହାର ଜାଣିଶୁଣି ସେ ଯେତେ ପାରନ୍ତି ଅପମାନଜନକ ବ୍ୟବହାର କରନ୍ତି । କଥା କଥାକେ ମାଡ଼ ଗୋଇଠା । ସଶ୍ରମ କାରାଦଣ୍ଡ ଆମକୁ ଦିଆଯାଇଥିଲା । ତେଣୁ ଆମକୁ ନେଇ ଚକ ପେଷାଉ ଥିଲେ । ଚକ ପେଷି ମୋ ହାତରେ ବଣ୍ଟି ପଡ଼ିଗଲା । ଏହି ଜେଲରେ ଓଡ଼ିଶାର ଖ୍ୟାତନାମା କଂଗ୍ରେସ ନେତା ମୋହନ ଦାସ, ପ୍ରାଣକୃଷ୍ଣ ପଢ଼ିଆରି, ହରେକୃଷ୍ଣ ମହତାବ, ନବକୃଷ୍ଣ ଚୌଧୁରୀ ସୁଧୀର ଘୋଷ, ସୁରେନ୍ଦ୍ର ପଟ୍ଟନାୟକ, ବିନୋଦ କାନନଗୋ ମଧ୍ୟ ଥିଲେ । ବିହାରର ତ ଅନେକ ଥିଲେ । ସେତେବେଳେ ବିହାର ଓଡ଼ିଶା ସରକାରଙ୍କର

ଜଣେ ମୁଖିଆ ଓଡ଼ିଆ ମନ୍ତ୍ରୀ ଥିଲେ । ସେ ହେଉଛନ୍ତି ଜନକାର ମେଡେବେଲ ନାର ରାଜା । ଜେଲ ବାଗ୍ଭାର ଥିଲା ତାଙ୍କ ହାତରେ । ତାଙ୍କର ନିର୍ଦ୍ଦେଶରେ ଜେଲ ସବୁରେ ବିଶେଷ କରି ପାଟଣା କେମ୍ପ ଜେଲରେ ରାଜନୈତିକ ବନ୍ଦୀ ମାନଙ୍କ ଉପରେ ଯେତେ ପ୍ରକାର ଅତ୍ୟାଚାର ଚାଲିଥାଏ ।

ଜେଲ ଭିତରେ ଆମର ଚଳାଚଳ ପାଇଁ ଗୋଟିଏ ଜେଲ କମିଟି ଗଢ଼ାଗଲା ପ୍ରତି ଓ୍ୱାର୍ଡ଼ ବା ବଖରାରେ ମଧ୍ୟ ମେମ୍ବରଙ୍କ ଗୋଟିଏ ଗୋଟିଏ କମିଟି ଗଠନ କରାହେଲା ଉପଯୁକ୍ତ ଖାଦ୍ୟ, ଭଲ ବ୍ୟବହାର ଓ ସ୍ୱାସ୍ଥ୍ୟରକ୍ଷା ଓ ଚିକିତ୍ସାର ବ୍ୟବସ୍ଥା ଆଦିପାଇଁ ଜେଲ କର୍ତ୍ତୃପକ୍ଷଙ୍କ ପାଖରେ ଦାବୀ କରାଗଲା ଘରୁ ଆସୁଥିବା ଚିଠି ଆମ୍ଭମାନଙ୍କୁ ଦିଆଯାଉ ନଥିଲା କି ଆମ ଚିଠି ଠିକ୍ ଠିକ୍ ଭାବରେ ପଠାଯାଉନଥିଲା । ପ୍ରବଳ ଶୀତ ଘୋଡ଼େଇ ହବାପାଇଁ ଯଥେଷ୍ଟ କମ୍ବଳ ଦିଆଯାଉନଥିଲା ଏ ସବୁ କଥା ମଧ୍ୟ ସେଥିରେ ଥିଲା । କିନ୍ତୁ ଏସବୁ କଥା ଶୁଣୁଛି କିଏ ? ତେଣୁ ଜେଲ ନିୟମ ଭାଙ୍ଗିବାପାଇଁ ଠିକ୍ ହେଲା । ସନ୍ଧ୍ୟାରେ ଘର ବନ୍ଦ କରିବା ପୂର୍ବରୁ ଆମକୁ ଆଗ ଗଣାଯାଏ । ଯେମିତି କଂସେଇ ତାର ଛେଳିଗୁଡ଼ିକ ଗୁହାଳରେ ବା ଅଡ଼ାରେ ଭର୍ତ୍ତି କରେ ଠିକ୍ ଅଛନ୍ତି କି ନାହିଁ ଦେଖି । ଆମର ଠିକ୍ ହେଲା ଆମେ ଗଣତି ହେବୁ ନାହିଁ କି ଓ୍ୱାର୍ଡରେ ପଶିବୁ ନାହିଁ ।

ଆମର ଏ ନିଷ୍ପତ୍ତିର ପାଲଟା ବ୍ୟବସ୍ଥା ହେଲା—ଆମକୁ ଓ୍ୱାର୍ଡ଼ରମାନେ ଲାଠି ସାହାଯ୍ୟରେ ଯବରଦସ୍ତି ଓ୍ୱାର୍ଡର (ବଖରା) ମାନଙ୍କରେ ଭର୍ତ୍ତି କରିବେ । ଏହା ଫଳରେ ଓ୍ୱାର୍ଡର ଓ ଆମ ଭିତରେ ଧସ୍ତା ଧସ୍ତି ଲାଗେ. ଲାଠି ଚାଲେ ଅନେକ ଝଣ୍ଡିଆ ଖାବରା ହୁଅନ୍ତି । ପରେ ଆମକୁ ଜବତ୍ କରିବା ପାଇଁ ସରକାର, ଆଗରୁ ଯୋଜନା କଲେ । ପାଟଣା ଓ ପାଖ ସେହିଠାରେ ଲାଟ, ମନ୍ତ୍ରୀ, ମନ୍ତ୍ରଣା ସବୁ ସେହିଠାରେ ହେଲା । ଆମର ଅମାନିଆ ପଣ ଓ ମନର ବଳ ଭାଙ୍ଗିବାକୁ ସେମାନେ କଠୋର ନୀତି ଧରିଲେ । ସନ୍ଧ୍ୟା ପୂର୍ବରୁ ବହୁ ଶହ ଗୋରା ଫୌଜ ଜେଲ ଭିତରେ ପଶି ଘେରିଗଲେ ଏବଂ ଦେଶୀ ସୈନ୍ୟ ମଧ୍ୟ ଥିଲେ । ପୁଲିସ ଫୌଜ ଓ ଓ୍ୱାର୍ଡ଼ରମାନେ ଲାଠି ବନ୍ଧୁକ ଧରି ଜେଲଭିତରେ ପଶି ଆଖିବୁଜି ଆମକୁ ପିଟି ଚାଲିଗଲେ । କେହି ଅବଶ୍ୟ ମରି ନଥିଲେ --ଆମର ଜୀବନ ଖଣ୍ଡ ଶାଣ, କିନ୍ତୁ କେତେ ଯେ ଝଣ୍ଡିଆ ଖାବରା ହେଲେ ତାର ସଂଖ୍ୟା ନାହିଁ ମୋର ମନେହୁଏ ୨ ହଜାରରୁ ବେଶି ଆହାତ ହେଲେ । ଏଥିରେ ବନ୍ଦୀମାନଙ୍କର ମନର ବଳତ ଭାଙ୍ଗିଲା ନାହିଁ ବରଂ ସେମାନଙ୍କର ସଂଗଠନକୁ ଅଧିକ ମଜବୁତ କରିବାକୁ ଲାଗିଲେ । ସରକାର ମଧ୍ୟ ସେଦିନର ଘଟଣାରୁ ବୁଝିଲା ଯେ ତାଙ୍କର ରାଗ ଓ ଜିଦ୍ ବଜାୟ ପାଇଁ ସିନା ପିଟିଚାଲିଗଲେ; କିନ୍ତୁ ସେଥିରେ କୌଣସି ଫଳ ଫଳିଲା ନାହିଁ । ଜେଲ ଭିତରେ କଥା କଥାକେ ଲାଠି ଗୋଟାଏ ନିତିଦିନିଆ କଥା ହୋଇଥିଲା ।

ତେବେ ସେଦିନର ଏକ ବାଟ୍ସ ଆକ୍ରମଣ ପରେ ଜେଲରେ ଅନେକ ପରିବର୍ତ୍ତନ ହେଲା । ଶୃଙ୍ଖଳ ପନ୍ନପରବା ଭଳ ଆସିଲା, କମ୍ବଳ ଅଧିକା ଦିଆହେଲା, ମଶା ମରିବାପାଇଁ ନାଲ ପରିଷ୍କାର ହେଲା, ଔଷଧ ପଡ଼ିଲା, ପାଣିକଳ ସବୁ ଆହୁରି ବସିଲା, ଡାକ୍ତରଖାନାକୁ ଔଷଧ ଆସିଲା, ରୋଗୀଙ୍କ ରହିବାପାଇଁ ଅଧିକ ଖଟ ପଡ଼ିଲା, ଚଠିପତ୍ର ଦେବାନବାର ବ୍ୟବସ୍ଥା ଆଦି ହେଲା ।

ମଣିଷ ତା'ର ଜୀବନକୁ ସରସ ଓ ସୁଖମୟ କରିବାକୁ ଚାହେଁ । ମଣିଷ ତ ଏହି ଚେଷ୍ଟା ତା'ର ଜନ୍ମରୁ କରିଆସିଛି । ଏଇଥିପାଇଁ ସେ ପ୍ରସ୍ତରଯୁଗରୁ ଆସି ବୈଜ୍ଞାନିକଯୁଗରେ ପହଞ୍ଚିଲାଣି । ଚନ୍ଦ୍ର ଉପରେ ବୁଲିଲାଣି । ଆମେ ଆବଦ୍ଧହୋଇ ରହିଥିଲେ ମଧ୍ୟ ଆମର ଇଚ୍ଛାନୁସାରେ କାମ କରିବାର ସୁବିଧା ସୁଯୋଗ ନ ଥିଲେ ମଧ୍ୟ ଜେଲ୍ ଜୀବନକୁ ସୁଖମୟ କରିବାକୁ ଉଦ୍ୟମ ଚଳାଇଲୁ ।

ଜେଲଭିତରେ ପାଠଶାଳା ଖୋଲି ପିଲଙ୍କ ସ୍ତରଅନୁଯାୟୀ ଶ୍ରେଣୀସବୁ କରି ପାଠପଢ଼ା ଆରମ୍ଭ ହେଲା । ଆମେ ମଧ୍ୟ ନିଜେ ପାଠପଢ଼ାରେ ସମୟ ଦେଲୁ, ରାଜନୈତିକ ଆର୍ଥିକଅବସ୍ଥା, ଦେଶର ଆନ୍ଦୋଳନ ସମ୍ପର୍କରେ ଆଲୋଚନା ସଭା ଓ ବିଶିଷ୍ଟ ଦିବସ ମାନଙ୍କରେ ଉତ୍ସବ ପାଳନ କଲୁ । ସ୍ୱେଚ୍ଛାସେବକ ମାନଙ୍କର ପରେଡ୍, ଖେଳପାଇଁ ସ୍ୱତନ୍ତ୍ର ବ୍ୟବସ୍ଥା କରାଗଲା । ସକାଳେ ଏସବୁ କାମ ନିୟମିତ ଓ ଶୃଙ୍ଖଳାର ସହିତ ଚାଲିଲା । ଥିଏଟର, ଗୀତ, ନାଟ, ହାସ୍ୟକୌତୁକ ଓ କ୍ରୀଡ଼ା ପ୍ରତିଯୋଗିତାର ମଧ୍ୟ ବ୍ୟବସ୍ଥା କରାଗଲା । ଓଡ଼ିଶାରେ କୋଣାର୍କ ନାଟକ ଏହିଠାରେ କରାଯାଇଥିଲା । ଏହା ଉତ୍କୃଷ୍ଟ ଧରଣର ହୋଇଥିଲା । ପୋଷାକ ସେହି ଜେଲର ପେଣ୍ଟ ଓ ଲୁଗା ପଟାରୁ ତିଆରି ହୋଇଥିଲା । ଲୁହାବାଟି ଓ ଟିଣକୋହାଳି କରି ବାଜାସବୁ ହୋଇଥିଲା । କମ୍ବଳସବୁ ହୋଇଥିଲା ପର୍ଦ୍ଦା, ଅଉକିଛି ଲୁଗାପଟା, ଶାଢ଼ୀ ଦେଇଥିଲେ ଓଡ଼ିଆ ଜେଲ କର୍ମଚାରୀମାନେ । ସେମାନଙ୍କ ପାଇଁ ତ ଆମୋଦ ପ୍ରମୋଦର କୌଣସି ସୁଯୋଗ ବା ବ୍ୟବସ୍ଥା ନ ଥିଲା । ତେଣୁ ସେମାନେ ମଧ୍ୟ ଏହି ଅଭିନୟର ଥିଲେ ଦର୍ଶକ ।

ପାଟଣା କେମ୍ପ ଜେଲକୁ ମୁଁ ଦୁଇଥର ଆସିଛି ଏବଂ ବର୍ଷେକାଳ କଟାଇଛି । ଏଠାକାର ଜଳବାୟୁ ଓଡ଼ିଶା ଲୋକଙ୍କୁ ସୁହାଏ ନାହିଁ । ଖରାଦିନେ ପ୍ରଚଣ୍ଡ ଗରମ, ସେଥିରେ ପୁଣି କରୋଗେଟ ଟିଣର ଛପରକୁ କାନ୍ଥ ମଧ୍ୟ ସେହି କରୋଗେଟ ଟିଣର । ଖରାଦିନେ ଉପର ତଳ ସବୁ ତାତି ନିଆଁ ହୋଇଯାଏ । ଆମର ଆନ୍ଦୋଳନ ଓ ସରକାର ସଙ୍ଗେ ଲଢ଼େଇ ଫଳରେ ତା'ର ଗୃହପଟେ ସବୁ ତାରଜାଲିରେ ମାଟି ଲେପି ଗୋଟାଏ ପାତଳ ମାଟି କାନ୍ଥପରି କରି ଦିଆହେଲା । କମ୍ବଳସବୁ ଉପରେ ଚାନ୍ଦୁଆଭଳି ଟାଣି ତାକୁ ଓଦା କରିଦେଉ । ଗଣତି ପରେ ରାତିରେ ବାହାରେ ଶୋଇବାକୁ ମଧ୍ୟ ଅନୁମତି ମିଳିଲା । ତଥାପି ସେ ଗରମ ଥିଲା ଅସହ୍ୟ । ଲୁ ବୋହେ ।

ଲୁରେ ମଶା କେତେକ ମରିଗଲେ । ଆମଭିତରୁ କେତେକ ଅସୁସ୍ଥ (ଗୋଟାଏ ପ୍ରକାର ଗାଲୁଆ) ରୋଗରେ ପଡ଼ିଲେ । ଗରମ ଯେମିତି ଶୀତ ଦିନରେ ଶୀତ ମଧ ସେହିପରି । ଜେଲ ହତାଟି ଥିଲା ଯେତେଦୂର ସମ୍ଭବ ଏକ ବର୍ଗମାଇଲ - ବରଂ ବେଶି ହେବ କମ ନୁହେଁ । ଓ୍ୱାର୍ଡ଼ ଗୁଡ଼ିକ ଗୋଟିଏ ଗୋଟିଏ ସାହିଭଳି ଧାଡ଼ି ଧାଡ଼ି ତିଆରି । ଏହି ସାହିଗୁଡ଼ିକୁ ପରସ୍ପରଠାରୁ ଅଲଗା କରି କଣ୍ଟା ତାର ବାଡ଼ରେ ଘେରେଇ ଦିଆହୋଇ ଥାଏ । ଯେପରି ଗୋଟାଏ ଧାଡ଼ିରୁ ଆଉ ଧାଡ଼ିକୁ ଫାଟକ ନ ଖୋଲିଲେ କେହି ଯାଇପାରିବେ ନାହିଁ ।

ତେବେ ଓ୍ୱାର୍ଡରମାନେ ଆମକୁ ପ୍ରାୟ ଫାଟକ ଖୋଲି ଦେଉଥିଲେ । ଆମେ ବାହାରେ ସଞ୍ଜ ବେଳେ ଯେତେ ଥର ବୁଲୁ, ଅଉ ଅନେଇ ରହୁ ଦୂର ଦିହାରକୁ । ଚାଷୀ ଓ ଗାଁ ଲୋକେ ଦଳ ଦଳ ହୋଇ, ଅନେକ ସମୟରେ ଗୀତ ଗାଇ ଫେରୁଥାନ୍ତି ନିଜ ନିଜ ଘରକୁ, ଅନେଇ ରହୁ ଫାଟକର ଖୋଲିବାକୁ । ପ୍ରତିଦିନ ଟ୍ରେନ ଆସେ, ଅଟକେ; ଛାଡ଼ିଯାଏ ସତ୍ୟାଗ୍ରହୀଙ୍କୁ ଜେଲ ପାଇଁ, ଆଉ ନେଇଯାଏ ମୁକୁଳା ବନ୍ଦୀମାନଙ୍କୁ ତାଙ୍କ ଘରକୁ ବା ସମର କ୍ଷେତ୍ରକୁ । ପୁଣି ଧୂଆଁ ଛାଡ଼ି ଗର୍ଜ୍ଜି କରି ଚାଲିଯାଏ । ଅନେଇ ରହେ ତା'ର ଗତିକୁ । ଚାଲିଛି ସେ ଆଗକୁ । ଚାଲିଛି ତାର ନିୟମରେ, ଚକ ବୁଲି ଯାଉଛି ଆଗକୁ ଖର ବେଗରେ । ଭାବେ ଦିନ ମଧ ରାତି ଚକଭଳି ଚାଲି ଯାଉଛି ଆଗକୁ । ଏହି ଲୁହାର ଚକ କାଠ ତିଆରି ଶଗଡ଼ ଚକକୁ ପଛରେ ପକେଇ ଦେଇଛି । ମଣିଷ ଚାହେଁ ଆଗକୁ ଯିବ, ଚଞ୍ଚଳ ଯିବ । ସେଥିପାଇଁ ସେ ବାହାର କରିଛି ଏହି ଲୁହାର ଚକ, ଘୋଡ଼ା ବଳଦର ଶକ୍ତିକୁ ଥୋଇଦେଇ ନିଆଁ ପାଣିରୁ ବାହାର କରିଛି ନୂଆ ଶକ୍ତି । ଚାଲିଛି ଆଗକୁ । ଭାବେ ଏ ଜେଲର କଣ୍ଟା ତାରବାଡ଼ ଆମର ଗତିକୁ ଅଟକେଇ ପାରିବ ନାହିଁ । ଆମେ ମୁକ୍ତ ହେବୁ, ଆଗକୁ ଯିବୁ । ନିତ୍ୟ ଓହ୍ଲେଇଆସେ ସେହି ଟିଣ ଛାତ ଓ ବାଉଁଶ ପଡ଼ିଆ ଉପରକୁ ଚଢ଼େଇମାନେ କା'ଉଗୁଡ଼ାକ ରାବି ଉଡ଼ିଯାନ୍ତି ସେମାନଙ୍କ ବସାକୁ । ଆସେ ପହରା ବାଲାଙ୍କ ଦଳ । ଆମେ ଅଉ, ଗଣାହେଉ । ପଡ଼ିଯାଏ ଟିଣରେ ଜାବାଠ । ବିଗୁଲ ବାଜି ଉଠେ । ଲଣ୍ଠନର ଧିମି ଧିମି ଆଲୁଅର ଛାଇରେ ଆମେ ଆରମ୍ଭ କରୁ ପ୍ରାର୍ଥନା—ଗୀତାର କର୍ମଯୋଗରୁ ଶ୍ଳୋକ, ଶେଷରେ ମାଗୁ ଭିକ୍ଷା—ଏ ଦେଶର ମୁକ୍ତି । ମାଗିନାହୁଁ କେବେ ନିଜପାଇଁ ଧନସମ୍ପତ୍ତି, ମାନ ସମ୍ମାନ ଓ ବିଭବ ।

ଗାନ୍ଧିଜୀ ଥାନ୍ତି ଜେଲରେ ଏରୱ୍ୟାବାରେ । ମାକଡୋନାଲ୍ଡ ଥାନ୍ତି ବିଲାତର ପ୍ରଧାନମନ୍ତ୍ରୀ । ଭାରତକୁ ଏକ ନୂଆ ଶାସନ କ୍ଷେମତା ଦବାପାଇଁ ଶାସନ କ୍ଷମତା ବିଲାତରେ ଗଠା ହେଉଥାଏ । ସେଥିରେ ଭାରତ ପାଇଁ ଗୋଟିଏ କାଳା ସଜଡ଼ା ହେଉଥାଏ । ବିଭିନ୍ନ ଧର୍ମ ଭିତରେ; ଜାତି ଜାତି ଭିତରେ ବିଭେଦ ସୃଷ୍ଟି କରି ଭାରତକୁ ଶାସନ କରିବା ହେଲା ଇଂରେଜ ସରକାରର ନୀତି । ସେଥିପାଇଁ

ମୁସଲମ ଲିଗ, ଓ ହିନ୍ଦୁ ମହାସଭା ଭଳି ସାମ୍ପ୍ରଦାୟିକ ଅନୁଷ୍ଠାନ ସବୁକୁ ହିମ୍ମତ ଯୋଗାଇ ହିନ୍ଦୁ ମୁସଲମାନ ବର୍ଗ, ଜାତି ଭିଆଇଥିଲେ । ଏବେ ଆଉ ଏକ ନୂଆ କଳା ଖଞ୍ଜିବାରେ ଲାଗିଲେ ଯେପରି ସବର୍ଣ୍ଣ ଓ ଅବର୍ଣ୍ଣଙ୍କ କାଳ କାଳକୁ ଫାଟିଯିବେ ଏବଂ ସେମାନଙ୍କ ଭିତରେ ପୁଣି ଦଙ୍ଗା ଲାଗିବ । ସେଇ ଇଂରେଜ ସରକାରର ପ୍ରରୋଚନାରେ ଭାରତରେ ଦଳିତ ଜାତିସଂଘଟିଏ ଗଢ଼ି ଉଠିଲା ଆମ୍ବେଦ୍କାରଙ୍କ ନେତୃତ୍ୱରେ । ହିନ୍ଦୁ ମହାସଭା ମୁସଲିମ୍‌ଲିଗ୍ ଦଳିତ ଜାତିସଂଘ ଏଗୁଡ଼ିକ ଥିଲେ ଭାରତର ସ୍ୱାଧୀନତା ଆନ୍ଦୋଳନର ପରିପନ୍ଥୀ, ସାମ୍ରାଜ୍ୟବାଦୀ ଦଲାଲ । ଦଳିତ ଜାତିସଂଘ ଓ ସେମାନଙ୍କ ଦାବୀର ଆଳରେ ଭୋଟ ବ୍ୟବସ୍ଥା କରୁଥାନ୍ତି ଓ ହରିଜନମାନେ କେବଳ ହରିଜନପ୍ରାର୍ଥୀଙ୍କୁ ଭୋଟଦେବାର ବ୍ୟବସ୍ଥା ହେଉଥାଏ । (Separate Function) । ଗାନ୍ଧିଜୀ ଏହାକୁ ହୋଇ ନଦେବାକୁ ଦୃଢ଼ ସଙ୍କଳ୍ପ । ସେତ ଜେଲରେ କଣ କରିବେ ? ଶେଷରେ ଏହି ବ୍ୟବସ୍ଥା ଶାସନଙ୍କମଣ୍ଡଳୀରୁ ଉଠାଇଦେବା ପାଇଁ ସେ ଆମରଣ ଅନଶନ କଲେ । ମାତ୍ର ଭାରତରେ ଚାଲିଥିଲା ଇଂରେଜ ସରକାର ତାର ଏତେ ବଡ଼ ଅସ୍ତ୍ର ଛାଡ଼ିବାକୁ ନାରାଜ । ଗାନ୍ଧିଜୀଙ୍କ ଅନଶନ ଚାଲିଲା ଆମେ ସମସ୍ତେ ପାଟଣା କେମ୍ପ ଜେଲରେ ଏ ସମ୍ବାଦ ପାଇ ବ୍ୟସ୍ତ ହୋଇପଡ଼ିଲୁ । ସାରା ଭାରତରେ ଇଂରେଜ ସରକାର ଉପରେ ପ୍ରବଳ ଚାପ ପଡ଼ିବାକୁ ଲାଗିଲା, ପ୍ରତିବାଦର କୁଆର ଉଠିଲା । ଗାନ୍ଧିଜୀଙ୍କ ଅବସ୍ଥା କ୍ରମେ ସଙ୍କଟାପନ୍ନ ହୋଇଉଠିଲା । ବଞ୍ଚିବାରେ ସନ୍ଦେହ ସୃଷ୍ଟି ହେଲା ଇଂରେଜ ସରକାର ଦେଖିଲେ ଯେ ଗାନ୍ଧିଜୀ ଯଦି ମରିଯାନ୍ତି ତେବେ ତାଙ୍କ ସହିତ ହାଲ୍‌କଣା କରିବା ଭଳି ଗୋଟାଏ ଲୋକତ ହରେଇବେ ତାହା ସଙ୍ଗେ ସଙ୍ଗେ ତାଙ୍କ ଅବସ୍ଥା ଭାରତରେ ଶୋଚନୀୟ ହୋଇ ପଡ଼ିବ । ବୁଦ୍ଧିଆ ଶ୍ରେଣୀ ତାଙ୍କର ଏକାବେଳକେ ବିରୋଧୀ ହୋଇଯିବେ । ତେଣୁ ଇଂରେଜ ସରକାରଙ୍କୁ ପଛକୁ ହଟିବାକୁ ପଡ଼ିଲା ଏବଂ ଶାସନ ସଂସଦରୁ ସେ ବ୍ୟବସ୍ଥାକୁ ଉଠାଇ ଦେଲେ । ଗାନ୍ଧିଜୀଙ୍କ ଅବସ୍ଥା ଶୋଚନୀୟ ହୋଇପଡ଼ିଥିବାରୁ ତାଙ୍କୁ ମଧ୍ୟ ଖଲାସ କରିଦେଲେ । ଆନ୍ଦୋଳନ '୧୯୩୪ ସେ ପର୍ଯ୍ୟନ୍ତ ଚାଲିବା ପରେ ଗାନ୍ଧିଜୀ ଏହି ପ୍ରତ୍ୟାହାର କରିନେଲେ । ଜେଲରୁ ଫେରା ଦଫା କରି ସତ୍ୟାଗ୍ରହୀମାନଙ୍କୁ ଖଲାସ କରିଦେବା ପାଇଁ ସରକାର ନିର୍ଦ୍ଦେଶ ଦେଲେ ।

ପର୍ଶୁରାମ ପଟ୍ଟନାୟକ, ଗଙ୍ଗାଧର ମିଶ୍ର, ପ୍ରାଣନାଥ ପଟ୍ଟନାୟକ, ଜଗନ୍ନାଥ ମହାନ୍ତି, ଶ୍ରୀହର୍ଷ ମିଶ୍ର, ମୁଁ ଓ ବିଭିନ୍ନ ଜିଲ୍ଲାର ଆହୁରି କେତେଜଣ ଖଲାସ ହେବା ପୂର୍ବରୁ ଜେଲରେ ଏକାଠି ବସିଲୁ । ଆମର ଗୋଟିଏ ସଂଗଠନ ଗଢ଼ିଲୁ । ସେଇଠି ଆମେ ସବୁ ଶପଥ ନେଲୁ । କେତେଜଣ ଆଜୀବନ ଦେଶ ସେବାର ଶପଥ ନେଲେ ମୁଁ ଓ ଆଉ କେତେଜଣ ଦଶବର୍ଷ ଦେଶସେବା କରିବାକୁ ଶପଥ ନେଲୁ । ଶପଥ ନବାଟାକୁ ମୁଁ ଗୋଟାଏ ମାମୁଲି କଥା ବା ଛୋଟିଆ କଥା ବୋଲି ଭାବୁ ନ ଥିଲି । ତେଣୁ ଭବିଷ୍ୟତକୁ ବୁଝି ବାଛିକରି ଦଶବର୍ଷ ପାଇଁ ଶପଥ ନେଇଥିଲି ।

ଯେଉଁମାନେ ଆଜୀବନ ଦେଶସେବା କରିବାକୁ ଶପଥ ନେଇଥିଲେ ସେମାନଙ୍କ ଭିତରୁ ଅନେକ ଦେଶକୁ ସେବା କରିବା ବାଟ ଧରିଲେ । ଗୁରୁ ଚରଣ ପଟ୍ଟନାୟକ, ଗଙ୍ଗାଧର ମିଶ୍ର, ପର୍ଶୁରାମ ପ୍ରଭୃତି କେତେଜଣ ଏବେବି ଦୁଃଖ ଦାରିଦ୍ର୍ୟରେ ପଡ଼ିଥିଲେ ମୁଦ୍ଧା ନିଜର ପଥରେ ଅଟଳ ରହି ଚାଲିଛନ୍ତି । ଜେଲରୁ ଆମେ ସବୁ ଖଲାସ ହୋଇ ପୁଣି ଫେରିଲୁ ।

ପ୍ରଚାରକ ଅନନ୍ତ ମିଶ୍ର ଥିଲେ ଜଣେ କଂଗ୍ରେସର ନେତା । ଆମେ ଏକାସାଙ୍ଗରେ ଗିରଫ ହୋଇ ହଜାରିବାଗ ଜେଲକୁ ଯାଇଥିଲୁ । ସେ ଏ ଜଗତରେ ଆଉ ନାହାନ୍ତି । ସ୍ୱାଧୀନତା ଆନ୍ଦୋଳନ ଚାଲିଥିବା ବେଳେ ସେ ବହୁକଷ୍ଟ ଭୋଗିଥିଲେ । ଖାଇବାର ଅଭାବରେ ଅସୁସ୍ଥ ହୋଇ ପଡ଼ିଲେ । ଏବଂ ଶେଷରେ ଚିରଦିନ ପାଇଁ ବିଦାୟ ହୋଇଗଲେ । ବିଚ୍ଛିନ୍ନ ଉତ୍କଳ ମିଶ୍ରଣ ପାଇଁ ସେ ସବୁଆଡ଼ ବୁଲି ପ୍ରଚାର କରୁଥିଲେ । ସେ ଭଲ ପ୍ରଚାରକ ଥିଲେ । ସେଥିପାଇଁ ଲୋକେ ତାଙ୍କୁ ପ୍ରଚାରକ ଅନନ୍ତ ମିଶ୍ର ବୋଲି ଡାକୁଥିଲେ । ୧୯୩୨ ସାଲରେ ଆନ୍ଦୋଳନ ଚାଲିଥାଏ । ଜେଲରୁ ଖଲାସ ହୋଇ ପୁଣି ଜେଲ ଯିବା ଭିତରେ କିଛିଦିନ ବାହାରେ ରହୁ । ସେହି ସମୟରେ ଗାଁ ଗଣ୍ଡା ବୁଲି ବାହାରୁ କଂଗ୍ରେସ ପ୍ରଚାର ପାଇଁ । ପୁଲିସର ଡରରେ ଲୋକ କଂଗ୍ରେସ ସଭାକୁ ଆସନ୍ତି ନାହିଁ । ପ୍ରଚାରକେ ଏକ ନୂଆ ବାଟ ଧରିଲେ । କିପରି ଲୋକେ ସଭାକୁ ନଆସିବେ ? ଗୋଟିଏ ଚ୍ଛୋଟିଆ ପାଠିମାଙ୍କଡ଼ ପୋଷିଲୁ । ଗାଁ ଗଣ୍ଡା ବୁଲିଗଲା ବେଳେ ତାକୁ କାନ୍ଧରେ ବସାଇ ନେଇଯାନ୍ତି ।

ସମସ୍ତ ଜାଣିବାପାଇଁ ପକେଟ ଘଣ୍ଟା ବା ରିଷ୍ଟୱାଚ ନଥାଏ । ସେ ଗୋଟାଏ ବଡ଼ ଟାଇମପିସ୍ ଘଣ୍ଟାକୁ କତା ଦଉଡ଼ିରେ ବାନ୍ଧି ବେକରେ ଓହଳାଇ, ବେତବାଡ଼ି ଖଣ୍ଡେ ଧରି ପ୍ରଚାରରେ ଚାଲିଲେ ।

ହାଟ, ମେଳା, ଗହଳି ସ୍ଥାନ ମାନଙ୍କରେ ବସି ମାଙ୍କଡ଼ ନାଚ ହେବ ବୋଲି ଡାକନ୍ତି । ଆମେ ଲୋକଙ୍କୁ ଡାକୁ, ଲୋକେ ଜମା ହୁଅନ୍ତି । ସେତିକି ବେଳେ ମାଙ୍କଡ଼କୁ ଟିକିଏ ନଚାନ୍ତି ଏବଂ ତା'ର ସାଙ୍ଗେ ସାଙ୍ଗେ କଂଗ୍ରେସ ସମ୍ପର୍କରେ ଯାହା କହିବାର ଅଳ୍ପେ ଅଳ୍ପେ କହି ବାହାରି ଯାନ୍ତି । ପୁଲିସ ପଚାରିଲେ ଲୋକେ କହନ୍ତି ମାଙ୍କଡ଼ ନାଚ ହେଉଥିଲା ।

ଆଜି କାଲିକାର କଂଗ୍ରେସ କର୍ମୀ ଓ ନେତାମାନେ ଏହାକୁ ହୁଏତ ବିଶ୍ୱାସ କରିବେ ନାହିଁ; କିମ୍ବା ତାଚ୍ଛଲ୍ୟ ଦୃଷ୍ଟିରେ ଦେଖିବେ; କିନ୍ତୁ ଏମାନଙ୍କର ଏହିପରି ପ୍ରଚାର ଓ କାର୍ଯ୍ୟ ଫଳରେ କଂଗ୍ରେସ ତ୍ୟାଗର ଯେଉଁ ସୁନାମ ଅର୍ଜନ

କୋଉଥିଲା ତାହାର ନା'ରେ, ପର ପ୍ରଶ୍ନରେ ଆଜିକାର କଂଗ୍ରେସ ଲୋକେ ଭୋଗ କରୁଛନ୍ତି ।

ଗାନ୍ଧି ସତ୍ୟାଗ୍ରହ ଆନ୍ଦୋଳନ ଉଠେଇ ନେଲେ । ଆମେ ପୁରୀକୁ ଫେରିଲୁ । ଅଗ୍ରଣୀ ହରିହର ଦାସ ପ୍ରଭୃତି ଆମକୁ ଘରକୁ ଚାଲିଯିବାକୁ କହିଲେ । ସେମିତି ଯଦିଓ ସ୍ୱରାଜ୍ୟ ଆନ୍ଦୋଳନ ଶେଷ ହୋଇଗଲା । ଆମର ମନ ତାଙ୍କ କଥାରେ ମାନିଲା ନାହିଁ । ଅନ୍ୟ ନେତାମାନଙ୍କ ଦେଖାମିଳିଲା ନାହିଁ ।

ଏଥର ଆମେ ଆମର ନେତା ମାନିଲୁ ଗଙ୍ଗାଧର ମିଶ୍ର, ଲୋକନାଥ ରାଏ, ପରଶୁରାମ ପଧାଢକରାଏ ପ୍ରଭୃତି ଆମେ କେତେଜଣ କାଳିକା ଦେବୀ ସାହିରେ ଗୋଟିଏ ଗ୍ରେଟଘର ଏକଟଙ୍କାରେ ଭଡ଼ାନେଇ ରହିଲୁ । ଖାଇବାକୁ କିଛି ନଥାଏ ନାଇରେ ପଣାରୁଣି ଗଛ ମାଡିଥାଏ । ଗଣ୍ଡେ ଗ୍ରହଲ ମାଗିଆଣି ପଣାରୁଣି ପତର ଝୋଳ କରି ତାକୁ ଖାଇ କୌଣସି ମତେ ଦିନ କାଟିବାକୁ ଲାଗିଲୁ ।

ପୁରୀରେ ରଥଯାତ୍ରା ଆସିଲା, ପୁରୀସେବାସମିତି କାମ ଆରମ୍ଭ ହେଲା । ଆମେ ସେଥିରେ କାମକରିବାକୁ ଗଲୁ । ସେଇଠି ଗଣ୍ଡେ ଖାଇବାକୁ ମିଳିଲା । ସେହି ସମୟରେ ଆମ ଭିତରେ ଠିକ୍ ହେଲା ଗୋଟିଏ ହୋଟେଲ କରିବୁ । ଜଗନ୍ନାଥ ମହାନ୍ତି ତାର ଦାୟିତ୍ୱରେ ରହିବେ । ଲୋକନାଥ ରାଏ, ପରଶୁରାମ ପଧାଢକ ରାଏ ହୋଟେଲରେ କାମ କରିବେ, ଗଙ୍ଗାଧର ମିଶ୍ର ସେବା ସମିତିରେ ସ୍ଥାୟୀଭାବରେ କାମକରିବେ, ଖବର କାଗଜ ବିକିବେ, ଦରଜି ଦୋକାନରେ କାମ କରିବେ, ମୁଁ ପିଲାଙ୍କୁ ପାଠ ପଢ଼ାଇବି (ଟ୍ୟୁସନ କରିବି), ଗୋକୃଷ୍ଣ ଧାରି, ବଳରାମ ପାଇକେରି କାକଟପୁର ପୁନାଗଡ଼ଠାରେ ଆଶ୍ରମଟିଏ କରି ସେଠାରେ ଲୋକଙ୍କ ଭିତରେ କାମ କରିବେ । ପଇସା ମିଳିବା ଓ ଲୋକଙ୍କ ଭିତରେ କାମ କରିବା ପାଇଁ ଆମେ ଏହିଭଳି କାମ ବାଣ୍ଟିନେଲୁ । ଯେ ଯାହା କାମରେ ଲାଗିଲେ । ଆମେ ଯାହା ପଇସା ରୋଜଗାର କଲୁ ସେଥିରୁ କୌଣସିମତେ ଗଣ୍ଡେ ଖାଇ ବାକି ପଇସରେ କୃଷକ ସଂଗଠନ ଗଢ଼ିବା ଓ କୃଷକମାନଙ୍କ ଭିତରେ କାମ କରିବାକୁ ଲାଗିଲୁ ।

୧୯୩୪ ଜୁନମାସରେ ଘୋର ବର୍ଷିହେଲା ବାପା ବେମାର ପଡ଼ିଲେ ଗାଁରେ । ସେ ଗାଁରେ ମାଉସୀଙ୍କ ଘରେ ରହୁଥିଲେ ଓ ମୋର ସାବତ ମା' ଅଉ ଗୋଟିଏ ଗ୍ରେଟିଆ ଭଉଣୀ ମଧ୍ୟ ସେହିଠାରେ ରହୁଥିଲେ । ଅଈ ମରିଯିବାପରେ ଏହି ସାବତ ମା' ମୋତେ ମଣିଷ କରିଥିଲେ । ବାପାଙ୍କର ଚିକିତ୍ସା ପାଇଁ ତାଙ୍କୁ ପୁରୀ ଆଣିବାକୁ ଗଲି । ପୁରୀରୁ ୨୧ ମାଇଲ ଚାଲି ଚାଲି ଗଲି । ଘୋର ବରଷା, ନଈ ସବୁ ବଢ଼ି ଦୁଇକୂଳ ଉଛୁଳି ରାସ୍ତାଘାଟ ବୁଡ଼ାଇ ଦେଇଥାଏ, ପୁଅ ଚାଲିଥାଏ ରାସ୍ତା ଉପରେ କେଉଁଠି ଜଙ୍ଘେତ କେଉଁଠି ଅଣ୍ଟାଏ ପାଣି । ବାପାଙ୍କର ଅବସ୍ଥା ଅତ୍ୟନ୍ତ

ଶୋଚନୀୟ । ତାଙ୍କୁ କୌଣସିମତେ ଝୁଡ଼ି ନୂଆଁଣି ଭିତରେ ପୂରି ଅଣି ସେଠାରେ ଯେତେ ଚିକିତ୍ସା କରାଇବାର କଥା କଲି ମୋତେ ଗଙ୍ଗାଧର ମିଶ୍ର, ପଶୁରାମ, ରବୀନ୍ଦ୍ର ମୋହନ ଦାସ (ପୋଷ୍ଟ ମାଷ୍ଟର) ପ୍ରଭୃତି ସାହାଯ୍ୟ କରୁଥାନ୍ତି, କିନ୍ତୁ ସେପ୍ଟେମ୍ବର ତା ୧୪ରେ ତାଙ୍କର କାଳ ହୋଇଗଲା, ଖୋର୍ଦ୍ଧାରେ ଆଇ ପ୍ରଥମ କରି ଚାକିରି କରିଥାନ୍ତି ପୁରୀ ଜିଲ୍ଲାବୋର୍ଡର ଓଭରସିଅର । ହୋଇ ସେଠାରେ ସୁଭିଝି ସ୍ଥା ଶେଷକରି ମୁଁ ପୁଣି କୁଞ୍ଜି ଫେରିଆସିଲି !

ଏଥର ମୋର ଟ୍ୟୁସନ ସାଙ୍ଗକୁ ଅଉ ଗୋଟିଏ କାମ ଆରମ୍ଭ କଲି ! ଏଙ୍ଗ୍ଲୋ ବେଙ୍ଗଲି ସ୍କୁଲରେ ଅସ୍ଥାୟୀ ଭାବରେ ଶିକ୍ଷକ ହେଲି ଏବଂ ପୋଷ୍ଟଅଫିସ ପାଖରେ ରାମକୃଷ୍ଣ ଲାଇବ୍ରେରୀର ଲାଇବ୍ରେରିଆନ୍ ହେଲି ମାତ୍ର ସାହୁ ବୁଲି ଫେରି-ବାଲାଙ୍କୁ ଲୁଗା ବିକିବାର ଦେଖେ । ପଇସା ଯାହା ପାଏ ତାହା କାମପାଇଁ ନିଅଣ୍ଟ ହେଉଥାଏ । ତେଣୁ ଠିକ କଲି ଫେରିବାଲା ହୋଇ ଲୁଗା ବିକ୍ରୀ କରିବି । ସେଥିରୁ ଅଳ୍ପ ପଇସା ମିଳିବ । ବନାରସରୁ ପ୍ରାଣନାଥବାବୁ କିଛି ସିଲ୍କ ଲୁଗା ପଠାଇବାର ବ୍ୟବସ୍ଥା କଲେ । ଫେରିବାଲା ହୋଇ ସେହି ସିଲ୍କ ଲୁଗା ବିକିବାରେ ଲାଗିଲି । ସେଥିରୁ ବେଶ୍ ଦୁପଇସା ମିଳିଲା । ଏହିଭଳି ଦିନାକୁ ମୁଁ ରାତି ଗୋଟାକ ଯାଏ ପଇସା ରୋଜଗାର ଓ ରାଜନୀତି ଦୁଇଟି କାମରେ ଲାଗିଥାଏ ।

ଏହି ସମୟରେ ବହୁଯୁବକଙ୍କୁ ଆମେ ସ୍ୱାଧୀନତା ଆନ୍ଦୋଳନ ଆଡ଼କୁ ଟାଣି ଅଣିଥିଲୁ । ଉପେନ୍ଦ୍ର ମହାନ୍ତି, ଜୟକୃଷ୍ଣ ମହାନ୍ତି, ବନମାଳି ପଟ୍ଟନାୟକ, ନରସିଂହ ତ୍ରିପାଠୀ, ଚନ୍ଦ୍ରଶେଖର ମହାପାତ୍ର ପ୍ରଭୃତି ଯେଉଁମାନେ କଂଗ୍ରେସ ନେତୃତ୍ୱରେ ଏବେ ରହିଛନ୍ତି ସେମାନେ ଏହି ସମୟରେ ଆମର ଉଦ୍ୟମରେ ରାଜନୈତିକ ଆନ୍ଦୋଳନ ଭିତରକୁ ଆସିଥିଲେ । ସେମାନଙ୍କୁ ବିଭିନ୍ନ ଦେଶର ସ୍ୱାଧୀନତା ସଂଗ୍ରାମର ଇତିହାସ ଭାରତବର୍ଷର ବୈପ୍ଳବିକ ଆନ୍ଦୋଳନର ଇତିହାସ, ଦେଶପ୍ରେମୀ ମାନଙ୍କର ଆତ୍ମବଳିଦାନର କଥା, ସେମାନଙ୍କର ଜୀବନୀ, ଜମିଦାରୀ ଅତ୍ୟାଚାର, କୃଷକ ମାନଙ୍କର ଦୁର୍ଦ୍ଦଶା ଓ ଶୋଷଣ ଆଦି ବିଷୟରେ ବହୁକଥା ବୁଝାଉଥିଲୁ । ମୋର ରାମକୃଷ୍ଣ ଲାଇବ୍ରେରୀରେ ରହିବାଦ୍ୱାରା ଏ କାମର ବିଶେଷ ସୁଯୋଗ ମିଳିଥିଲା ବହୁଗ୍ରନ୍ଥ ଓ ଯୁବକଙ୍କ ସହିତ ଘନିଷ୍ଠ ପ୍ରତିଷ୍ଠା କରି ପାରିଥିଲି ଏବଂ ସଂଗଠିତ କରିପାରିଥିଲି ।

ଏହି ସମୟରେ ବଙ୍ଗଳାର ଆତଙ୍କବାଦୀମାନେ ଗୋରା ଅଫିସରମାନଙ୍କୁ ଗୁଳି କରି ପୁରୀକୁ ଚାଲି ଆସିଥିଲେ ଏଠାରେ ଆତ୍ମଗୋପନ କରି ରହିବାକୁ । ସେମାନଙ୍କ ସାଙ୍ଗରେ ମୋର ଦେଖାହେଉଥିଲା । ଏବଂ ସେମାନଙ୍କ ପାଇଁ ଘର ଠିକ୍ କରିବା ଏବଂ ସେମାନଙ୍କ ଭିତରେ ଯୋଗସୂତ୍ର ରକ୍ଷା କରିବା ଦିଗରେ କାମ କରିବାକୁ ଲାଗିଲି । ସତ୍ୟେନ ଗୁହ ବୋଲି ଜଣେ ଆତଙ୍କବାଦୀ ଏଠାକୁ ବଙ୍ଗଳାରୁ ତଡ଼ାଖାଇ ନଜରବନ୍ଦୀ ଭାବରେ ଥିଲେ । ତାଙ୍କ ସହିତ ମୋର ପରିଚୟ ହେଲା ଏବଂ ସେଠାରେ ଅନେକ ଗ୍ରୁପ ଏକଜୁଟ ହେଉଥିଲେ ।

ଗୋପ, କାକଟପୁର ପଟେ ଘୋର ବନ୍ୟା ହେଲା ଏବଂ ବହୁ କ୍ଷୟ କ୍ଷତି ହେଲା । ଗୋପ ଥାନାରେ ରିଲିଫ ଜାର୍ଯ୍ୟର ଦାୟିତ୍ୱ ନେଇ ମୁଁ ଗୋପ ଚାଲିଗଲି । ଲେଣ୍ଡୋ ଗ୍ରାମର ପୂର୍ଣ୍ଣଚନ୍ଦ୍ର ମହାନ୍ତି ମୋ ସାଙ୍ଗରେ ଗଲେ । ବାଯ୍ୟାକୁଦା ମଠରେ ଆମେ କେନ୍ଦ୍ର କଲୁ । ଗାଁ ଗଣ୍ଡା ବୁଲି ଅବସ୍ଥା ଦେଖିବାକୁ ଗଲୁ । ଲୋକଙ୍କର ଦୁରବସ୍ଥା କହିଲେ ନସରେ । ଜଣେ ମଧ୍ୟବିତ୍ତ ଚାଷୀ, ତା ଦୁଆର ମୁହଁରେ ଆଠଟି ବଡ଼ ବଡ଼ ବଳଦ ବନ୍ଧା ହୋଇଛି । ଘର ଭିତରେ ପଶି ଦେଖିଲୁ ମାଇପେ ତୋରାଣି କଂସାରେ ହାମୁଠା ଭାତକୁ କଂସାଏ ତୋରାଣି, ଅନାବନା ଶାଗ ପୁଳାଏ ଖାଇ ବସିଛନ୍ତି । ଘରେ ଚାଉଳ ପୋସେ ବି ଦେଖିଲୁ ନାହିଁ । ମଧ୍ୟବିତ୍ତ ଚାଷୀର ଅବସ୍ଥାତ ଏଇଆ ଆଉ ଗରିବ ଚାଷୀ ମୂଲିଆଙ୍କ ଅବସ୍ଥା କ'ଣ ନହୋଇଥିବ । ସେଇଠି ଦେଖିଲୁ ଏମାର ମଠ, ଦକ୍ଷିଣ ପାର୍ଶ୍ୱ ମଠ, ପାଟେଲିଆ ରଥ ପ୍ରଭୃତି କେତେକ ଜମିଦାରମାନଙ୍କ ଦୁଆର ମୁହଁରେ ପାଲଗଦା ସବୁ ନଡ଼ିଆ ଗଛ ଭଳି ମୁଣ୍ଡେଟେକି ଠିଆ ହୋଇଛି । ଯେଉଁ ଚାଷୀମାନେ ରକ୍ତକୁ ପାଣିକରି ଏହି ଧାନ ଅମଳ କରିଥିଲେ, ଜମିଦାରଙ୍କ ଖମାରରେ ପାଲଗଦା ମାରି ଦେଇଛନ୍ତି । ସେହି ପାଲଗଦା ପାଖରେ ସେମାନେ ନଖାଇ ହାଡ଼କଙ୍କାଳ ହୋଇ ମରଣ ସାଙ୍ଗରେ ଯୁଝୁଛନ୍ତି । ଏ ଦୃଶ୍ୟ ମୋ ପକ୍ଷରେ ଅସହ୍ୟ ହୋଇ ଉଠିଲା । ମନ ବିଦ୍ରୋହୀ ହେଲା, ପୁରୀ ସେବା ସମିତି ବନ୍ୟା ସାହାଯ୍ୟ ପାଇଁ ଟଙ୍କା ଦେଉଥାଏ । ଜମିଦାର ମାନଙ୍କୁ ଏହି ଟଙ୍କା ନେଇ ଧାନ ବିକିବାକୁ ଅନୁରୋଧ କଲି । ସେମାନେ ନାସ୍ତିବାଣି ଶୁଣାଇଲେ । ପୂର୍ବରୁ ଚାଉଳ କିଣି ଶଗଡ଼ରେ ଗୋପକୁ ଆଣି ଲୋକଙ୍କୁ ଦେଉଥାଏ, ଏଥିରେ ଆମକୁ ଯେତେ ଅସୁବିଧା ହେଉଥାଏ ଶଗଡ଼ ଭଡ଼ାରେ ମଧ୍ୟ ସେହି ଭଳି ଗୁଡ଼ାଏ ପଇସାଖର୍ଚ୍ଚ ହେଉଥାଏ । ଏସବୁ କଥା ବିଗୃରକରି ଲୋକଙ୍କୁ ଏହି ପାଲଗଦା ସବୁରୁ ଧାନ ନେଇଯିବା ପାଇଁ କହିବାକୁ ବାଧ୍ୟ ହେଲି ।

ଏସ୍ ଡ଼ି.ଓ ଓ ଆର୍ତ୍ତ୍ରାଣ ହରିହର ଦାସଙ୍କୁ ସବୁକଥା ଜଣାଇ ଦେଲି । ଆର୍ତ୍ତ୍ରାଣ ମହାଶୟ ମୋ ଉପରେ ଅସନ୍ତୁଷ୍ଟ ହୋଇ ସେଠାରୁ ଚାଲି ଆସିବାକୁ ମୋତେ ଜଣାଇଲେ । ଏସ୍.ଡ଼ି ଓ. ଅବସ୍ଥା ଦେଖିବାକୁ ପାଟେଲିଆ ଆସିଲେ ଏବଂ ମୋତେ ଧମକ୍ ଚମକ୍ ଦେଲେ କିନ୍ତୁ ତେବେଣ ପାଟେଲିଆ ରଥଙ୍କୁ ଆମକୁ ଧାନ ବିକିବାକୁ ବାଧ୍ୟ କଲେ । ଲୋକେ ଟୋକେଇ ବାଉଁଶିଆ ଧରି ଦାଣ୍ଡରେ ଜମା ହୋଇଥାନ୍ତି । ସବ୍ ଇନସ୍‌ପେକ୍‌ଟରଙ୍କ ଜରିଆରେ ସେଦିନ ଲୋକଙ୍କୁ ଧାନଦେଇ ମୋ ପାଖରୁ ପାଟେଲିଆ ରଥ ଟଙ୍କା ନେଲେ । ତା'ପରେ ପରେ ଉଚିତ ଦରରେ ଜମିଦାରମାନେ ଲୋକଙ୍କୁ ଧାନ ବିକିବାକୁ ଲଗିଲେ ।

ଏହି ସମୟରେ ଜହରଲାଲଙ୍କର (Whether India) (ହ୍ୱୋଦର ଇଣ୍ଡିଆ) ବହି ଖଣ୍ଡିକ ପଢ଼ିଲି । ସେଥିରେ ସେ ସାମ୍ୟବାଦର ଏକ ସଂକ୍ଷିପ୍ତ ଚିତ୍ର ଦେଇଥିଲେ । ଏହା ମୋ ମନରେ ରେଖାପାତ କଲା । ମୋର ଚିନ୍ତା ଓ କାର୍ଯ୍ୟ ଠିକ୍ ହୋଇଛି

ବୋଲି ବିଗ୍ରିଲି । କିନ୍ତୁ ଏଠୁ ଗ୍ଳିଯିବା ପାଇଁ ତ ଆଗ୍ରଯ୍ୟ ମହାଶୟ ନିର୍ଦ୍ଦେଶ ଦେଇଥାନ୍ତି, ତେଣୁ ମୁଁ ଯିବାପାଇଁ ପ୍ରସ୍ତୁତ ହେଉଥାଏ ଠିକ୍ ଏହି ସମୟରେ ମୋତେ ବସନ୍ତ ଆକ୍ରମଣ କଲା ।

ବଡ ଭାଇ ବ୍ରଜମୋହନ ରାଏଚୂଡାମଣି ଖୋର୍ଦ୍ଧାରେ ଥା'ନ୍ତି । ତାଙ୍କ ପାଖକୁ ଗ୍ଳିଗଲି । ସେଠାରେ ଅସୁସ୍ଥ ଅବସ୍ଥାରେ ପଡିଥିଲାବେଳେ ବିହାରରେ ଭୂମିକମ୍ପ ହେଲା । ଏହା ଖୁବ୍ ଭୟାବହ ହୋଇଥିଲା । ବହୁ ଘରଦ୍ୱାରତ ଭାଙ୍ଗିଥିଲା, ଅସଂଖ୍ୟ ଲୋକ ମଧ୍ୟ ମରିଗଲେ ।

ମୁଁ ଆରୋଗ୍ୟ ହେଲାପରେ ପୁଣି ପୁରୀ ଫେରି ଆସିଲି ଏବଂ ସେହି ରାମକୃଷ୍ଣ ପାଠାଗାରରେ ରହିଲି ଏବଂ ଟ୍ୟୁସନ କରିବାକୁ ଲାଗିଲି । ଆମର କାମ ଦାମ ସଫଳତାର ସହିତ ଗ୍ଳିଥାଏ ।

ଯୁବକ ଓ କୃଷକମାନେ କିପରି ବହୁ ସଂଖ୍ୟାରେ ଆନ୍ଦୋଳନ ଭିତରକୁ ଆସିବେ ଏହା ଚିନ୍ତା କରୁଥାଉ । ସେମାନେ ଥିଲେ ସବୁଠାରୁ ନିପ୍ପେଷିତ । ତେଣୁ ଦେଶ ସ୍ୱାଧୀନ ହେଲେ ସେମାନେ କ'ଣ ପାଇବେ । ସେମାନଙ୍କର ଏହି ଶୋଷଣ ଓ ଅତ୍ୟାଗ୍ରର ଦୂର ହେବକି ? ଏମାନେ ନିଜେ ଏହି ଆନ୍ଦୋଳନରେ ଯୋଗ ନଦେଲେ ସେମାନଙ୍କର ଦାବୀ ନ ଉଠାଇଲେ, ଅତ୍ୟାଗ୍ରର ବିରୁଦ୍ଧରେ ନ ଲଢ଼ିଲେତ ହେବ ନାହିଁ । କଂଗ୍ରେସର ଦାବୀ ଭିତରେ ଏସବୁତ ରହିବା ଦରକାର । ତା' ନହେଲେ ଏମାନେ ବା କାହିଁକି କଂଗ୍ରେସ ଆନ୍ଦୋଳନରେ ଯୋଗ ଦେବେ । ଏହି ସବୁ ବିଷୟ ଆମ ମନକୁ ଘାଣ୍ଟୁଥାଏ ।

ସେତେବେଳେ ଓଡ଼ିଶାରେ କୌଣସି ଶିଳ୍ପ ଓ କଳକାରଖାନା ନଥାଏ, କୃଷକ ଶ୍ରେଣୀ କେବଳ ଥାଏ । ତେଣୁ ଆମେ ଗାଁ ଗଣ୍ଡାରେ କୃଷକ ଶ୍ରେଣୀ ଭିତରେ ସେମାନଙ୍କର ସମସ୍ୟା ନେଇ କାମ କରୁଥାଉ ।

## ନୂଆ ଆଲୁଅ

୧୯୩୬ ଠାରୁ ଆମେ କୃଷକ ଆନ୍ଦୋଳନ ଗଢ଼ି ତୋଳିବାକୁ ଲାଗିଲୁ । ବେଠି ଭେଟି, ଦାଖଲ ଖାରଜ ରେସମ ଗୁଡ ପାଇଁ, ମଠଧନ କୋଠ ହେଉ ବୋଲି ଡାକରା ଦେଲୁ । ଏହି ସ୍ଲୋଗାନ ଜରିଆରେ କୃଷକମାନେ ରୁଣ୍ଡ ହେବାକୁ ଲାଗିଲେ । ସେମାନେ ପୁରୁଷ ପୁରୁଷ ଧରି ଜମିଦାର ଅତ୍ୟାଗ୍ରରରେ ସଢ଼ୁଥିଲେ ଏବଂ ଶୋଷିତ ହେଉଥିଲେ । ତେଣୁ ଏହି ସ୍ଲୋଗାନ ସବୁ ଥିଲା ତାଙ୍କର ନିଜର । କିନ୍ତୁ ତୁଣ୍ଡ ଖୋଲି ଏ ସବୁ ସେମାନେ କହିପାରୁ ନଥିଲେ । ଆମେ ଯେତେବେଳେ ଏହିସବୁ

ସ୍ଲୋଗାନ ଦେଲୁ ସେମାନେ ନିଜର ଭାଷା ପାଇଲେ ଏବଂ ଜମାଟବାନ୍ଧିଥିବା ଅସନ୍ତୋଷ ପ୍ରକାଶ ପାଇଲା । ସେମାନେ ଖୋଲି ଖୋଲି ବାହାରକୁ ବାହାରି ପଡ଼ିଲେ । ସଭା ସମିତିରେ ବହୁ ସଂଖ୍ୟାରେ ଯୋଗ ଦେବାକୁ ଲାଗିଲେ । ଜମିଦାର ଓ ମଠ ମହନ୍ତମାନଙ୍କ ଭିତରେ ଏହା ଯେପରି ଶୃଙ୍ଖଳ୍ୟ ସୃଷ୍ଟି କଲା କୃଷୀ ଓ ପ୍ରଜାମାନଙ୍କ ଭିତରେ ସେହିପରି ଏକ ଜାଗରଣ ଆଣିଲା । ପୁରୀ ଓ କଟକ ଜିଲ୍ଲାରେ ଏହା ବିଜୁଳି ବେଗରେ ମାଡ଼ି ଚାଲିଲା । ଚାଷୀମାନେ ଜମିଦାରୀ ଅତ୍ୟାଚାର ଓ ଏକଛତ୍ରବାଦ ଶାସନକୁ ପ୍ରତିରୋଧ କରିବାପାଇଁ ପ୍ରସ୍ତୁତ ହେବାକୁ ଲାଗିଲେ । ସଭା ସମିତି ଓ ମେଣ୍ଟ ସେମାନଙ୍କ ଭିତରେ ସାହସ, ବଳ ଓ ଆତ୍ମ ବିଶ୍ୱାସ ସୃଷ୍ଟି କଲା । ସେମାନଙ୍କ ଭିତରେ ଛପି ରହିଥିବା ଦୁର୍ବାର ଶକ୍ତି ଆତ୍ମ ପ୍ରକାଶ କରିବାକୁ ଲାଗିଲା । ଆମେ ସେମାନଙ୍କ ଭିତରେ କାମ କଲାବେଳେ ନୂଆ ନୂଆ ସମସ୍ୟା ଆସି ଆଗକୁ ଆସେ । ଆମର ଅଭିଜ୍ଞତା ବଢ଼ୁଥାଏ ଏବଂ ଆମେ ଅଧିକ ସଚେତନ ହେଉଥାଉ । ଲୋକଙ୍କର ମଧ୍ୟ ସେହିପରି ଚେତନା ବଢ଼ୁଥାଏ ।

ଗୁରୁଚରଣ ପଟ୍ଟନାୟକ ବନାରସରେ କାଶୀ ବିଦ୍ୟାପୀଠରେ ପଢ଼ିବାକୁ ଯାଇଥିଲେ ସେ ପୁଣି ଫେରିଲେ, ଭଗବତି ବାବୁ ମଧ୍ୟ ତାଙ୍କର ପୁରୀ ରାମଚଣ୍ଡି ସାହି ଘରେ ଆସି ରହୁଥାନ୍ତି । ଗୁରୁଚରଣ ପଟ୍ଟନାୟକଙ୍କ ମୁଖରୁ ଆମେ ସାମ୍ୟବାଦ ସମ୍ପର୍କରେ କିଛି କିଛି ଶୁଣୁଥାଉ । ଏହି ସମୟରେ ପୁରୀ ବଡ଼ ଦାଣ୍ଡରେ ଆମେ ଯେଉଁ ନେସେନାଲ ହୋଟେଲ କରିଥିଲୁ ସେହିଠି ଆସି ଜଣେ ବଙ୍ଗାଳି ଭଦ୍ରଲୋକ ରହିଲେ । ତାଙ୍କର ଘର ମୟୂରଭଞ୍ଜ ଜିଲାରେ ବୋଲି ସେ କହନ୍ତି । କିଛିଦିନ ଗଲାରୁ ସେ ମୋର ଢଙ୍ଗଢାଙ୍ଗ ଦେଖି ମୋତେ ଏକୁଟିଆ ପାଖରେ ବସାଇ ଦେଶର ରାଜନୈତିକ ଆନ୍ଦୋଳନ ବିଷୟରେ କଥାବାର୍ତ୍ତା କରନ୍ତି । ସେହି କଥାବାର୍ତ୍ତା ଭିତରେ ମୁଁ ପ୍ରଥମ କରି ତାଙ୍କ ପାଖରୁ କମ୍ୟୁନିଷ୍ଟ ପାର୍ଟି, ମାର୍କସ, ଲେନିନଙ୍କ ବିଷୟରେ ଅନେକ କଥା ଶୁଣିଲି । ସେ ଦିନୁ ମୋର କମ୍ୟୁନିଷ୍ଟ ପାର୍ଟି ସହିତ ସମ୍ପର୍କ ପ୍ରତିଷ୍ଠା କରିବାକୁ ମନ ବଳେଇଲା । ପରେ ଜାଣିଲି ଏ ହେଉଛନ୍ତି ବ୍ରଜେନପାଲ, ଜଣେ ବିଦ୍ରୋହୀ ଓ କମ୍ୟୁନିଷ୍ଟ, ଫନିପାଲଙ୍କ ବଡ଼ଭାଇ ।

ଏହି ସମୟରେ ମୋତେ ଗୋଟିଏ ଘଟଣା ଖୁବ୍ ବିଚଳିତ କରିଥିଲା । ହୋଟେଲରେ ବସିଥିଲା ବେଳେ ପ୍ରାୟ ଦେଖେ ଅଇଁଠା କୁଣ୍ଡ ଭିତରୁ ଭୋକିଲା ପିଲାଏ, ବୁଢ଼ା, ସ୍ତ୍ରୀ ଲୋକ ଆସି ଅଇଁଠା ପତର କାଢ଼ି ଚାଟୁ ଚାଟନ୍ତି । ଏ ଦୃଶ୍ୟ ମୋ ପକ୍ଷରେ ଖୁବ୍ ଅସହ୍ୟ ହେଉଥାଏ । ଦିନେ ୨,୩ଟା କୁକୁର ଓ ଗୋଟିଏ ସ୍ତ୍ରୀ ଲୋକ ଭିତରେ ଏହି ଅଇଁଠା ପତର ନେଇ ଟଣା ଓଟରା ଲାଗିଲା । କୁକୁରଟା ରାଗିଯାଇ

ମାଇପିଟାର ହାତକୁ କାମୁଡ଼ି ଧଇଲା । ଏଦୃଶ୍ୟ ଦେଖି ମୁଁ ଅସ୍ଥିର ଓ ଅଧୈର୍ଯ୍ୟ ହୋଇପଡ଼ିଲି । ସମାଜରୁ ଏ ଦୃଶ୍ୟ ପୋଛିଦେବାକୁ ଯାହା ଦରକାର କରିବାକୁ ହେବ ବୋଲି ଚିତ୍କାର କରି ଉଠିଲି । ଧନୀ ଲୋକଙ୍କ ପ୍ରତି ଘୃଣା ବଢ଼ିବାକୁ ଲାଗିଲା ।

ମୁଁ ରାମଚଣ୍ଡି ସାହିର ଗୋଟିଏ ଭଡ଼ାଘରେ ରହୁଥାଏ । ଲିଥୋ ମେସିନରେ ଗୋଟିଏ ପ୍ରଚାର ପତ୍ର 'ବିଦ୍ରୋହ ପାଇଁ ଡାକରା' । ବାହାର କରି ଓଡ଼ିଶାର ବିଭିନ୍ନ ସ୍କୁଲର ଛାତ୍ରାବାସକୁ ପଠାଉଥାଏ । ବିଭିନ୍ନ ଛାତ୍ରାବାସ ଓ ସ୍କୁଲର ଭଲ ଭଲ ପିଲାଙ୍କ ନା' ସଂଗ୍ରହ କରିଥାଏ । ତାଙ୍କରି ଠିକଣାରେ ସେ ସବୁ ଯାଏ । ପୁଲିସର ଆଖିରେ ଏହି କାଗଜ ପଡ଼ିଲା । ଏବଂ ସେମାନେ ତା'ର ପିଛା ଧରିଲେ । ଏହାର ସୁରାଗ ପାଇଲା ପରେ କାଗଜ ଖଣ୍ଡିକ ବନ୍ଦ କରିଦେଲି; କିନ୍ତୁ ପୁଲିସ ମୋତେ ଏଥିପାଇଁ ସନ୍ଦେହ କରି ଗୋଡ଼େ ଗୋଡ଼େ ଜଗିଥାଏ ।

ଦିନତ ବସିନାହିଁ । ବେଗରେ ଧାଇଁଛି, ଘଟଣା ବି ସ୍ଥିର ନୁହେଁ, ସେ ବି ସମୟ ସହିତ ପ୍ରତିଦ୍ୱନ୍ଦିତା କରି ଧାଇଁଛି । ତେଣୁ ଚଳଚିତ୍ରରେ ଗୋଟାକ ପରେ ଗୋଟାଏ ଛବି ଆଖି ପିଛୁଳାକେ ପଳାଉଥିଲା ଭଳି ଏହି କେତୋଟି ବର୍ଷରେ ଘଟଣା ସବୁ ଘଟି ଯାଉଥାଏ । ପଛକୁ ଚାହିଁବାକୁ ବେଳ ନାହିଁ, ସବୁ କିଛି ଧାଇଁଛି ଆଗକୁ । ପ୍ରତ୍ୟେକଟି ଘଟଣା ପରସ୍ପର ଯୋଡ଼ିହୋଇ ଧାଇଁଛନ୍ତି, ଗୋଟାଏ ଆରଟା ଉପରେ ଯେତିକି ଢଳିପଡ଼ୁଛି ସେତିକି ଲଗାଲଗି ହୋଇ ଚାଲିଛି; କିନ୍ତୁ ଚାହୁଁ ଚାହୁଁ ଚିତ୍ରଗୁଡ଼ାକର ରଙ୍ଗ ବଦଳି ଯାଉଛି ।

ମୋର ଅହିଂସା, ଈଶ୍ୱର ବିଶ୍ୱାସ ମହାପୁରୁଷଙ୍କ ପ୍ରତି ଭକ୍ତି ସବୁକିଛି ଏହି ଘଟଣା ପ୍ରବାହ ଓ ଅନୁଭୂତି ଭିତରେ ଏତେବେଳକୁ କେତେବେଳେ ଯେ ଉଭେଇ ଗଲାଣି ମୋତେ ଜଣାନାହିଁ । ମୋର କଥା ଓ ଲେଖା ଭିତରେ, କାମ ଓ ଚାଲି ଚଳନରେ ସେ ସବୁ ଫୁଟି ଉଠୁଥାଏ ।

ଭଗବତୀ ଚରଣ ପାଣିଗ୍ରାହୀ ମୋର ବହୁକାଳର ସାଙ୍ଗ । ଆମ ପରିବାର ସହିତ ତାଙ୍କ ପରିବାରର ବହୁକାଳରୁ ସମ୍ପର୍କ । ମୁଁ ତାଙ୍କୁ ପିଲାଦିନରୁ କକେଇ ବୋଲି ଡ଼ାକୁଥିଲି ।

ଆଚାର୍ଯ୍ୟ ନରେନ୍ଦ୍ର ଦେବ ଅସୁସ୍ଥ ହୋଇ ଜଳବାୟୁ ପରିବର୍ତ୍ତନ ପାଇଁ ପୁରୀ ଆସିଲେ । ସେ ଗୋଟିଏ ଛୋଟିଆ ଘରେ ସମୁଦ୍ରକୂଳ ପାଖରେ ରହିଲେ । ସେ ଥିଲେ କାଶୀସ୍ଥ ମହାବିଦ୍ୟାଳୟ କାଶୀ ବିଦ୍ୟାପୀଠର ଅଧକ୍ଷ (ପ୍ରିନ୍‌ସିପାଲ), ମହାପଣ୍ଡିତ, ଭାରତ ବର୍ଷର କଂଗ୍ରେସ, କମ୍ୟୁନିଷ୍ଟ ବହୁନେତା ଏହିଠାରୁ ତାଲିମ ପାଇ ବାହାରିଛନ୍ତି । ଶ୍ରୀ ପ୍ରକାଶଙ୍କ ବାପା ଭଗବାନ ଦାସ ଏହି କାଶୀସ୍ଥ ଶିକ୍ଷାନୁଷ୍ଠାନ

ସାଧନ କରିଥିଲେ । ଏହିଠାରେ ହିଁ ବିବେକାନନ୍ଦ, ଦୟାନନ୍ଦ, ଜଲବାହାଦୂର ଶାସ୍ତ୍ରୀଙ୍କ ଭଳି ଭାରତର ଖ୍ୟାତନାମା ବ୍ୟକ୍ତି ଅଧ୍ୟକ୍ଷତା କରୁଥିଲେ । ଗୁରୁଚରଣ ପଟ୍ଟନାୟକ, ପ୍ରାଣନାଥ ପଟ୍ଟନାୟକ, ଶରତ ପଟ୍ଟନାୟକ ଏହିଠାରେ ନରେନ୍ଦ୍ର ଦେବଙ୍କ ଗୁହାରେ ଥିଲେ । ନରେନ୍ଦ୍ର ଦେବ ଆସିଲା ପରେ ଆମେ ସମସ୍ତେ ତାଙ୍କ ପାଖକୁ ପ୍ରତିଦିନ ଯାଉ । ବୈଦ୍ୟନାଥ ରଥ ମଧ୍ୟ ଆମ ସାଙ୍ଗରେ ଥାନ୍ତି । ମୁଁ ବୈଦ୍ୟନାଥ ରଥଙ୍କ ସଙ୍ଗେ ମୋର ବାଲେଶ୍ୱର ଜେଲରେ ପ୍ରଥମେ ଦେଖା ହୋଇଥିଲା । ସେହିଦିନରୁ ତାଙ୍କ ସହିତ ମୋର ଘନିଷ୍ଠତା ଥିଲା । ଘନିଷ୍ଠତା ବଢ଼ିବାର କାରଣ ହେଉଛି ତାଙ୍କ ଚିନ୍ତା ତଥା ମୋ ଚିନ୍ତା ସହିତ ସମତା ଥିଲା । ସମଗୋତ୍ରର ମଧ୍ୟ ପରେ ହେଲୁ ।

ଭଗବତୀ ବାବୁଙ୍କ ଘରେ 'ପୃଥିବୀର ସମସାମୟିକ ଇତିହାସ' ଉପରେ ଆଚାର୍ଯ୍ୟ ନରେନ୍ଦ୍ର ଦେବ କେତେଗୁଡ଼ିଏ ବକ୍ତୃତା ଦେଲେ । ଏହି ବକ୍ତୃତା ଶୁଣିବାକୁ କେତେଜଣ ଯୁବକ ମଧ୍ୟ ଆସି ଆମ ସଙ୍ଗେ ଯୋଗ ଦେଲେ । ଏହି ବକ୍ତୃତା ଗୁଡ଼ିକ ଅତି ଶିକ୍ଷଣୀୟ ଓ ଉଚ୍ଚ କୋଟୀର ହୋଇଥିଲା । ଗତାନୁଗତିକ ଧାରାରେ ଯେପରି ଇତିହାସ ସବୁ ଲେଖା ହୋଇଛି, ତାହାଠାରୁ ଏହାଥିଲା ସମ୍ପୂର୍ଣ୍ଣ ଅଲଗା । ଦୃଷ୍ଟିକୋଣ ଓ ବ୍ୟାଖ୍ୟାଥିଲା ସମ୍ପୂର୍ଣ୍ଣ ନୂତନ । ମୁଁ ଏହିଠାରେ ଯୋଗଦେଇ ପୃଥିବୀର ଇତିହାସକୁ ନୂଆକରି ନୂଆ ଅର୍ଥରେ ବୁଝିଲି । ପୁରୁଣା ଧ୍ୟାନ ଧାରଣା ଦୂରେଇ ଯିବାକୁ ଲାଗିଲା ।

ସେତେବେଳର ମନେହୁଏ ୧୯୩୫ ମସିହା । ଇଂରେଜ ରାଜୁତିରେ ବିଶେଷ କରି ପଞ୍ଚମ ଜର୍ଜଙ୍କ ଶାସନ କାଳରେ ଭାରତର ଦୁର୍ଗତି ଉପରେ ଆଖିକି ଦିଶିଲା ଭଳି ମନକୁ ଛୁଇଁଲା ଭଳି ଠିକେ ଠିକେ ଲେଖାଟିଏ ଲଥୋ ହୋଇ ଗୁରିଆଡ଼େ ବଣ୍ଟା ହେଲା । ପୁଲିସର ମୁଣ୍ଡ ବୁଲେଇଗଲା । କିଏ ଲେଖିଲା ? କେଉଁଠୁ ବାହାରିଲା ? ଖୋଜାଖୋଜି ବହୁତ ଚାଲିଲା, ସନ୍ଦେହ ଆମର ଦଳଙ୍କ ଉପରେ । ଅବଶ୍ୟ ଏ କାମ ଭଗବତୀବାବୁ ଓ ଗୁରୁଚରଣଙ୍କର, କିନ୍ତୁ କିଛି ଆଉ ଧରାପଡ଼ିଲା ନାହିଁ । ତା'ର କିଛିଦିନ ପରେ ଗୋଟିଏ ଛୋଟିଆ ବହି ବାହାରିଲା 'ଭାରତରେ ଇଂରେଜ ରାଜ' । ଲେଖକ ଗୁରୁଚରଣ ପଟ୍ଟନାୟକ । ସରକାର ଏହାକୁ ପଢ଼ି ପଢ଼ି ବାଜ୍ୟାପ୍ତି କଲାବେଳକୁ ବହିର ବିକ୍ରି ଶେଷ । ଭୋକିଲା ଲୋକ ମୁଠାଏ ଭାତ ପାଇଲେ ଯେମିତି ଏକା ଗୁଣ୍ଡାକେ ପାଟିରେ ଭର୍ତ୍ତି କରି ଦିଅନ୍ତି ବହିଟି ଏପରି ସମସ୍ତଙ୍କୁ ପ୍ରିୟ ମନଲାଖି ହୋଇଲା ଯେ ବହିଟି ବାହାରୁ ନ ବାହାରୁଣୁ ବିକ୍ରି ଶେଷ ହୋଇ ଯାଇଥିଲା ।

—※—

# ସମାଜ ଚଳମାନ

୧୯୩୩-୩୪ ଏଥର ଗାନ୍ଧିଜୀ ଧଇଲେ ଏକ ଟାଙ୍ଗିଆ, ଏଇଟା ଅବଶ୍ୟ ଲୁହାରେ ତିଆରି ହୋଇନଥିଲା । କିନ୍ତୁ ଏହାର ଶ୍ରେଷ୍ଠଥିଲା ଖୁବ୍ ଟାଣ । ଏ ଟାଙ୍ଗିଆଟା ଯେଉଁ ପଟକୁ ହାଣିବ ସେପଟକୁ ହାଣିହେବ । ଆଦିମକାଳରୁ ଯେଉଁ ବେଦ-ବେଦାନ୍ତ, ଶାସ୍ତ୍ର ଧରି ବ୍ରାହ୍ମଣ, ପୁରୋହିତ, ସମାଜପତିମାନେ ଜାତି, ଧର୍ମ ନାଁରେ ଛୁଆଁ ଅଛୁଆଁ ଭେଦଭାବ ସୃଷ୍ଟିକରି ଅନ୍ଧ ବିଶ୍ୱାସରେ ବୁଡ଼େଇ ସମାଜକୁ ଶାସନକରି ଆସୁଥିଲେ, ଗାନ୍ଧିଜୀ ତାହାରି ମୂଳରେ ମାଇଲେ ଚୋଟେ । ସେ ଆରମ୍ଭ କଲେ ହରିଜନ ଆନ୍ଦୋଳନ । ବୁଲାଲେ ସାରା ଭାରତବର୍ଷ ଗୋଟାକ ଯାକ । ଯେଉଁ ଦେଉଳ ଦୁଆର ହରିଜନମାନଙ୍କ ପାଇଁ କାଳ କାଳ ଧରି ବନ୍ଦ କରି ରଖିଥିଲା ଶାସ୍ତ୍ର, ସବୁ ଗୋଟାକ ପରେ ଗୋଟାଏ ଖୋଲିଗଲା ପ୍ରଚଣ୍ଡ ଝଡ଼ରେ । ଦେଉଳରେ ହରିଜନ ପଶିଲେ ସତରେ କ'ଣ ଦାଉଁ ପଳେଇଯିବେ ? ହରିଜନ ପଶିଲେ, ଢାଉଁ ପଳେଇଲେ ନାହିଁ । ପଳେଇଲା ସମାଜରୁ ରକ୍ଷଣଶୀଳ ମନୋଭାବ, କୁସଂସ୍କାର । ସମାଜରେ ରାଜା, ଜମିଦାର ଶାସକ ଓ ସେମାନଙ୍କର ପୂଜାରିମାନଙ୍କର ଆଧିପତ୍ୟରେ ଆସିଲା ଘୋର ଆଁଚ୍ । କାରଣ ଏହି ଧର୍ମ ନାଁରେ ତ ସେମାନେ ଦେଶକୁ ଶାସନ ଓ ଶୋଷଣ କରି ଆସୁଥିଲେ । ତାରି ମୁଣ୍ଡରେ ପଡ଼ିଲା ଠେଙ୍ଗା ପାହାର । ତେଣୁ ସେମାନେ ଘୋର ବିଦ୍ରୋହ ଆରମ୍ଭ କଲେ ।

ଗାନ୍ଧିଜୀ ଏହି ହରିଜନ ଆନ୍ଦୋଳନରେ ପୁରୀ ଆସିଲେ । ଜୁନ୍ ମାସ, ତାଙ୍କର ଆସିବା ଆଗରୁ ପୁରୀର ବଡ଼ ବଡ଼ ମହନ୍ତମାନେ ଉତ୍ତର ପ୍ରଦେଶରୁ ଗୁଣ୍ଡା-ମାନଙ୍କୁ ଆଣି ମଠରେ ଭର୍ତ୍ତିକରିଥାଇ ସହରରେ ଶୋଭାଯାତ୍ରା ବାହାର କରୁଥାନ୍ତି, କାନ୍ଥ ବାଡ଼ରେ ଗୁରିଆଡ଼େ 'କଳ୍ପୁରୂପୀ ଗାନ୍ଧି ଫେରିଯାଅ', 'ଦେଶଦ୍ରୋହୀ ଗାନ୍ଧି ଫେରିଯାଅ' ଲେଖାସବୁ ଲୁଚାଇ ଦେଇଥାନ୍ତି । ଗାନ୍ଧିଜୀ ପଶିବେ ମାରିବେ ବୋଲି ହୁରି କରୁଥାନ୍ତି ।

ପଣ୍ଡିତ ନୀଳକଣ୍ଠ ଦାସ ନେଇଥାନ୍ତି ନେତୃତ୍ୱ । ଆମେ ସ୍ୱେଚ୍ଛାସେବକ ଦଳଧରି ଗାନ୍ଧିଙ୍କର ସଭା ଓ ଆସିବାର ସବୁ ବ୍ୟବସ୍ଥା କରୁଥାଉ । ନୀଳକଣ୍ଠ ଦାସ ଶାସ୍ତ୍ରକୁ ଶାଣ୍‌ଦେଇ କାଟି ଜଗନ୍ନାଥ ଦେଉଳରେ ହରିଜନମାନଙ୍କୁ ପଶେଇବା ପାଇଁ ପ୍ରସ୍ତୁତ ହୋଇଥାନ୍ତି । ଗାନ୍ଧିଜୀ ସନ୍ଧ୍ୟା ପରେ ଟ୍ରେନ୍‌ରେ ଆସି ପୁରୀ ଷ୍ଟେସନ୍‌ରେ ପହଞ୍ଚିଲେ । ଗୋପବନ୍ଧୁ ଚୌଧୁରୀ, ନୀଳକଣ୍ଠ ଦାସ ଥାନ୍ତି ଷ୍ଟେସନରେ । ସମୁଦ୍ର କୂଳରେ ଗୋଟିଏ ଘର ଗାନ୍ଧିଙ୍କର ରହିବା ପାଇଁ ଠିକ୍ ହୋଇଥାଏ । ଷ୍ଟେସନ୍‌ରୁ

ଚେସ ନାରାଯାଏ ଗ୍ରସ୍ତାରେ ଆମେ ସେଚ୍ଛ୍ୟାମାନଙ୍କ ଅଲୁଅ ଓ ସ୍ୱେଚ୍ଛାସେବକ ଜଣେଇ ଥାଉ । ଗାନ୍ଧିଜୀ ଷ୍ଟେନରୁ ସେଣ୍ଟ୍ରାଲ ଗୃଲଜଣ ବାହାରିଲେ । ଏହାଥିଲା ଶତ୍ରୁମାନଙ୍କ ତାଙ୍କର ଆହ୍ୱାନ, ପୁଲିସର ଭୟ ଥିଲା ଯେ ଗୁଣ୍ଡାମାନେ ଗାନ୍ଧିଙ୍କୁ ଆକ୍ରମଣ କରିବେ । କିନ୍ତୁ ଆକ୍ରମଣତ କାହିଁକଥା ହେଲା ନାହିଁ. ବରଂ ଗାନ୍ଧିଜୀଙ୍କର ଜୟନାଦ ହେଉଥାଏ ଏବଂ ଗାନ୍ଧି ଲୋକଗହଳି ଠେଲି ଗୃଲଥାନ୍ତି ଆମ୍ଭମାନଙ୍କ ସାଙ୍ଗରେ ତା' ପରଦିନ ଗାନ୍ଧିଜୀ ବଡ଼ଦାଣ୍ଡରେ ଏକ ବିରାଟ ସଭାରେ ବକ୍ତୃତା ଦେଲେ ହରିଜନ ଆନ୍ଦୋଳନ ଉପରେ । ମୋ ଉପରେ ସ୍ୱେଚ୍ଛାସେବକ ସଂଗଠନର ଦାୟିତ୍ୱ ଥିଲା ଏବଂ ଗାନ୍ଧିଜୀଙ୍କ ପାଖେ ପାଖେ ରହି ତାଙ୍କର ସୁବିଧା ଅସୁବିଧା କଥା ବୁଝିବାର ଭାର ମୋ ଉପରେ ଥିଲା । ସଭାପରେ ଗାନ୍ଧିଜୀ ଫେରିଲେ । ସେଦିନ ରାତିରେ ଟ୍ରେନ ରେ ତାଙ୍କ ସହିତ ଅନେକ ବିଷୟରେ ଆଲୋଚନା କରିବାର ସୁଯୋଗ ମୁଁ ପାଇଥିଲି । ତେବେ ବିଭିନ୍ନ ପ୍ରଶ୍ନ ପଗ୍ରରି ତାଙ୍କଠାରୁ ଉତ୍ତର ପାଇବ ଥିଲା ମୋର ମୁଖ୍ୟ ଉଦ୍ଦେଶ୍ୟ । ଗାନ୍ଧିଜୀଙ୍କ ରାଜନୀତି ସହିତ ମୁଁ ଏକମତ ନ ଥିଲେ ସୁଦ୍ଧା ମୃତ୍ୟୁ ପର୍ଯ୍ୟନ୍ତ ମୋ ସହିତ ତାଙ୍କର ସମ୍ପର୍କ ଥିଲା । ଏଭଳିକି ମୃତ୍ୟୁର ଅଳ୍ପଦିନ ପୂର୍ବେ ସେ ଖଣ୍ଡିଏ ଚିଠି ଅସୁସ୍ଥତା ହେତୁ ତାଙ୍କ ସେକ୍ରେଟେରିଙ୍କ ହାତରେ ଲେଖାଇ ପଠାଇଥିଲେ ।

ପଣ୍ଡିତ ନୀଳକଣ୍ଠ ଦାସ ପୁରୀ ଜଗନ୍ନାଥ ମନ୍ଦିରରେ ହରିଜନ ପ୍ରବେଶ ପାଇଁ ଯେଉଁ ପନ୍ଥା ଧରିଥିଲେ ଓଡ଼ିଶାର ନେତାମାନେ ତାକୁ ଭଣ୍ଡୁର କରିଦେଲେ ଏବଂ ଗାନ୍ଧିଜୀଙ୍କୁ କଥା ଯେଥିରେ ମନେଇ ନେଲେ । ଠିକ୍ ତା'ପରେ ନୀଳକଣ୍ଠ ଦାସଙ୍କୁ ଗାନ୍ଧିଜୀଙ୍କ ପଦଯାତ୍ରାରେ ଆଉ ଦେଖିବାକୁ ମିଳିଲା ନାହିଁ । ତାଙ୍କୁ ନୀରବ କରିଦିଆ-ହେଲା ।

ଗାନ୍ଧିଜୀ ପୁରୀରୁ ହିଁ ପ୍ରଥମେ ହରିଜନ ଆନ୍ଦୋଳନ ପାଇଁ ପଦଯାତ୍ରା ଆରମ୍ଭ କଲେ ଏବଂ ପାଦରେ ଓଡ଼ିଶାର ବହୁ ଅଞ୍ଚଳ ବୁଲିଲେ । ଏ ପଦଯାତ୍ରା ଏକ ଐତିହାସିକ ଘଟଣା । ମୁଁ ତାଙ୍କ ସଙ୍ଗେ ଏହି ପଦଯାତ୍ରାରେ କିଛିଦିନ ବୁଲିଲାପରେ ପୁରୀ ଫେରିଆସିଲି ଏବଂ ମୋର ଆଗ କାମରେ ମନଦେଲି । ଏହା ଛଡ଼ା କଂଗ୍ରେସ ସଭ୍ୟ ସଂଗ୍ରହ ଆଦି କରୁଥାଏ ଏବଂ ପୁରୀଜିଲ୍ଲା କଂଗ୍ରେସ କମିଟିର ସଭ୍ୟ ଥାଏ ।

# କୁଆର

୧୯୩୭ ପରଠାରୁ ମୌଳିକ ଦୃଷ୍ଟି କୋଣରୁ କେତୋଟି ବର୍ଷ ଘଟଣା ବହୁଳ ସମୟ । ଏହି ସମୟ ଭିତରେ ବହୁ ଘଟଣା ଯାହାକି ପୂର୍ବେ କେବେ ନଥିଲା ଏବଂ ଗୁଣରେ ମଧ୍ୟ ସମ୍ପୂର୍ଣ୍ଣ ନୂତନ ଘଟିବାକୁ ଲାଗିଲା ଏବଂ ଭାରତ ବର୍ଷରେ ଏକ ମୌଳିକ ପରିବର୍ତ୍ତନ ଆଣିବାର ବାଟ ଫିଟାଇଲା । ଗାନ୍ଧିଜୀଙ୍କ ହରିଜନ ଆନ୍ଦୋଳନ ଥିଲା ଏଥି ଭିତରୁ ଗୋଟିଏ ।

ଆଉ ଗୋଟିଏ ଘଟଣା ଘଟିଲା । ରୁଷର ନୂତନ ଶ୍ରମିକ ସାମ୍ୟବାଦୀ ସମାଜର ପ୍ରଭାବ ଭାରତ ଉପରେ ବେଶ୍ ପଡ଼ୁଥାଏ । ଶ୍ରମିକ ଶ୍ରେଣୀ ସଂଗଠିତ ଭାବରେ ରାଜନୈତିକ ଆନ୍ଦୋଳନରେ ଭାଗ ନେଉଥାନ୍ତି ! ସ୍ୱାଧୀନତାର ଆକାଂକ୍ଷା କୃଷୀଙ୍କ ଭିତରେ ଜମିଦାରୀ ଅତ୍ୟାଚାରରୁ ମୁକୁଳିବାର ଆକାଂକ୍ଷାରେ ପ୍ରକାଶ ପାଉଥାଏ । ମଧ୍ୟବିତ୍ତ, ନିମ୍ନ ମଧ୍ୟବିତ୍ତ ଶ୍ରେଣୀ ବିଶେଷ କରି ଯୁବକମାନେ ବୈପ୍ଲବିକ ଭାବରେ ଅନୁପ୍ରାଣିତ ଓ ଉତ୍ସାହିତ ହେଉଥାନ୍ତି । ସାମ୍ୟବାଦର ଚିନ୍ତା ଏ ସମସ୍ତଙ୍କ ମନରେ କାମ କରୁଥାଏ । ମିରଟ, କାନପୁର ଷଡ଼ଯନ୍ତ୍ର ମାମଲା ଶେଷ ହୋଇଥାଏ । ସେ ସମ୍ବାଦ ସମସ୍ତଙ୍କ ପାଖରେ ପହଞ୍ଚୁ ଥାଏ । ବିଭିନ୍ନ ଯେଉଁଠାରେ—ବମ୍ବେ, କାନପୁର, କଲିକତା ପ୍ରଭୃତିରେ ମାର୍କସ୍‌ବାଦ ତତ୍ତ୍ୱ ଉପରେ ଛୋଟିଆ ଛୋଟିଆ ଗୋଷ୍ଠୀ ଗଠନ ହୋଇଥାଏ, ଏବଂ ଭାରତୀୟ କମ୍ୟୁନିଷ୍ଟ ପାର୍ଟି ମଧ୍ୟ ଗୋପନରେ ଗଠିତ ହୋଇ ସାରିଥାଏ । ସେମାନେ କଂଗ୍ରେସ, ଶ୍ରମିକ ସଙ୍ଗଠନ ଭିତରେ କାମ କରୁଥାଆନ୍ତି ।

ଏହିଭଳି ଅବସ୍ଥାରେ ସମସ୍ତଙ୍କଠାରେ ଭାରତରେ କଂଗ୍ରେସ ସାମ୍ୟବାଦୀ ଦଳ ଗଠନ ପାଇଁ ଏକ ସମ୍ମିଳନୀ ୧୯୩୪ ମଇ ତା ୧୪ ରେ ଅନୁଷ୍ଠିତ ହେଲା । ଆଚାର୍ଯ୍ୟ ନରେନ୍ଦ୍ର ଦେବ ଏହାର ସଭାପତି ହେଲେ ।

ଏହି ସମ୍ମିଳନୀ ପରେ ଓଡ଼ିଶାର କଂଗ୍ରେସ ବାମପନ୍ଥୀମାନେ ଓଡ଼ିଶାରେ ଏକ ସମ୍ମିଳନୀ ଡାକିବାକୁ ସ୍ଥିର କଲେ । କଂଗ୍ରେସର ବହୁଲୋକ ଏହି ସମ୍ମିଳନୀକୁ ଆସିଲେ । ସମ୍ମିଳନୀ ହୋଇଥିଲା ନବକୃଷ୍ଣ ଚୌଧୁରୀଙ୍କ ଘରେ । ପ୍ରାଣନାଥ ପଟ୍ଟନାୟକ ଏହି ସମ୍ମିଳନୀର ସଭାପତି ହୋଇଥିଲେ । ଏହିସମ୍ମିଳନୀର ଚରିତ୍ର ଥିଲା ବାମପନ୍ଥୀ କଂଗ୍ରେସର ଚରିତ୍ର । କଂଗ୍ରେସ ସାମ୍ୟବାଦୀ ଦଳ ବା କଂଗ୍ରେସ ସୋସିଏଲିଷ୍ଟ ପାର୍ଟିର ଜନ୍ମ ହେଲା ଏହି ସମ୍ମିଳନୀରୁ । ଏହାର ସମ୍ପାଦକ ହେଲେ ଭଗବତୀ ଚରଣ ପାଣିଗ୍ରାହୀ । ଏହାର ଗୋଟିଏ ସାପ୍ତାହିକ ମୁଖପତ୍ର ବାହାରିଲା ସାରଥୀ ଥିଲା ତା'ର ନା । ଭଗବତୀ ବାବୁ କମ୍ୟୁନିଷ୍ଟ ମେନିଫେଷ୍ଟୋକୁ ଓଡ଼ିଆରେ ଅନୁବାଦ କଲେ ଏବଂ ବହିର ନାମ ଦେଲେ 'ବୈଜ୍ଞାନିକ ସାମ୍ୟବାଦ ।'

ଜୟ ପ୍ରକାଶ ନାରାୟଣ, ମିନୁ ମଶାନି. ସମ୍ପୂର୍ଣ୍ଣାନନ୍ଦ, ଆଚାର୍ଯ୍ୟ ନରେନ୍ଦ୍ର ଦେବ, ଜେଡ୍. ଏ ଅହମ୍ମଦ, ଅଶୋକ ମେହେଟା, ୟୁସୁଫ ମେହେରଅଲି ପ୍ରଭୃତି ଏହି ସାମ୍ୟବାଦୀ ଦଳର ନେତାଥିଲେ ।

୧୯୩୧ ରେ ଗାନ୍ଧି ଆରଉଇନ ଚୁକ୍ତିପରେ କରାଚିରେ କଂଗ୍ରେସ ଅଧିବେଶନ ବସିଲା, ଏବଂ ଏହିଠାରେ କେତୋଟି ଦଫା ବିଶିଷ୍ଟ ମୌଳିକ ଅଧିକାର

ପ୍ରସ୍ତାବ ଗ୍ରହଣ କରାଇଥିଲି । ସେଥିରେ ପ୍ରଥମ କରି କୃଷକ ଶ୍ରମିକମାନଙ୍କର ଅଧିକାର ଘେନି କେତୋଟି କଥା ସ୍ପଷ୍ଟ କରି ଉଲ୍ଲେଖ ଥିଲା । କଂଗ୍ରେସର ଏହା ଥିଲା ଉଲ୍ଲେଖଯୋଗ୍ୟ ପଦକ୍ଷେପ ।

ଆମେ ସମସ୍ତେ କଂଗ୍ରେସରେ ଥାଇ ସାମ୍ୟବାଦୀ ଦଳ ଗଢ଼ିଥିବାରୁ ଏହି ଦଳର ନାମ 'କଂଗ୍ରେସ ସାମ୍ୟବାଦୀ ଦଳ' ଦିଆଯାଇଥିଲା । ତେଣୁ କରାଚି କଂଗ୍ରେସର ପ୍ରସ୍ତାବ ଆମକୁ ସାହାଯ୍ୟ କଲା । ନବକୃଷ୍ଣ ଚୌଧୁରୀ, ମାଳତୀ ଚୌଧୁରୀ, ଗୌରାଙ୍ଗ ଚରଣ ଦାସ ଏହାଙ୍କର ଗୋଟିଏ ହାତର ପାପୁଲି ନଥିଲା । ଆମେ ଆଦରରେ ତାଙ୍କୁ ପରିଚୟ ଦେଉଥିଲୁ ହାତକଟା ଗୌରାଙ୍ଗ ବାବୁ, ବାଲେଶ୍ୱରରେ ସୁରେନ୍ଦ୍ର ଦାସ, ସାରଙ୍ଗଧର ଦାସ, ଗଞ୍ଜାମର ଗୋବିନ୍ଦ ପ୍ରଧାନ ଓ ପୁରୀ ଜିଲ୍ଲାର ମୋହନ ଦାସ ଓ ଆମେ ସମସ୍ତେ କୃଷକ ଆନ୍ଦୋଳନରେ ଲାଗିଲୁ ଏବଂ ସାମ୍ୟବାଦ ଚିନ୍ତାଧାରା ପ୍ରଚାର କରି ଚାଲିଲୁ ।

ପୁରୀ ଜିଲ୍ଲାରେ ପରେ କଂଗ୍ରେସ ସାମ୍ୟବାଦୀ ଦଳ ଗଠିତ ହେଲା ଏବଂ ଜିଲ୍ଲା କମିଟିର ସମ୍ପାଦକ ଭାବେ ମୁଁ ରହିଲି ।

ମୋର ମା'ଙ୍କର ୧୯୩୬ ରେ ସରସ୍ୱତୀ ପୂଜା ବାସି ଦିନ କାଳ ହୋଇ ଯିବାର ଖବର ଟେଲିଗ୍ରାମ ପାଇ ମୁଁ ବାଲୁଗାଁ ଚାଲିଗଲି । ଶୁଦ୍ଧିକ୍ରିୟା ଶେଷ ହେବା ପରେ ପୁରୀ ଫେରି ଆସିଲି । ଆଚାର୍ଯ୍ୟ ନରେନ୍ଦ୍ର ଦେବ ପୁରୀରେ ଆସି ପୁଣି ରହୁ-ଥାନ୍ତି । ଏଥର ତାଙ୍କର ସ୍ତ୍ରୀ ତାଙ୍କ ସାଙ୍ଗରେ ଆସିଥାନ୍ତି । ମୋର ମନ ଖୁବ୍ ଖରାପ ଥିବାର ଦେଖି ସେ ମୋତେ ତାଙ୍କ ପାଖରେ ନେଇ ରଖିଲେ ।

ପଣ୍ଡିତ ଜବାହରଲାଲ ବିଲାତରେ ନିର୍ବାସିତ ହୋଇ ରହୁଥିଲେ । ତାଙ୍କର ସ୍ତ୍ରୀ କମଳା ନେହେରୁଙ୍କର ସେଠିପାରେ କାଳ ହୋଇଗଲା । ଏହାପରେ ସେ ଭାରତକୁ ଫେରୁଥାନ୍ତି ଏବଂ ଲକ୍ଷ୍ନୌଠାରେ କଂଗ୍ରେସର ଅଧିବେଶନ ମଧ୍ୟ ଠିକ୍ ସେହି ସମୟରେ ବସୁଥାଏ । ଆଚାର୍ଯ୍ୟ ନରେନ୍ଦ୍ର ଦେବ ପୁରୀରୁ ବନାରସ ଫେରିଗଲେ । ଗଲାବେଳେ ମୋତେ ତାଙ୍କ ପାଖକୁ ଯିବାକୁ କହିଗଲେ ମୁଁ ଲକ୍ଷ୍ନୌ କଂଗ୍ରେସରେ ଯୋଗଦେବା ପାଇଁ ବନାରସ ଗଲି । ସେଠାରେ କିଛିଦିନ ରହିବା ପରେ ନରେନ୍ଦ୍ର ଦେବଙ୍କ ଘର ଫୈଜାବାଦ ଗଲି । ସେଠାରେ ମଧ୍ୟ ତାଙ୍କ ପାଖରେ କିଛିଦିନ ରହି ଲକ୍ଷ୍ନୌଠାରେ କଂଗ୍ରେସର ସ୍ୱେଚ୍ଛାସେବକ ଶ୍ରେଣୀରେ ଡେରା ପକାଇଲି । ଏହି କଂଗ୍ରେସରେ ମନ୍ତ୍ରୀମଣ୍ଡଳ ଗ୍ରହଣ କରିବା ନକରିବା ଉପରେ ଖୁବ୍ ବାଦାନୁବାଦ ହେବାପରେ ମନ୍ତ୍ରୀମଣ୍ଡଳ ଗ୍ରହଣ କରିବାର ନିଷ୍ପତ୍ତି ହେଲା ।

ଏହି କଂଗ୍ରେସ ନଗର ଭିତରେ କମ୍ୟୁନିଷ୍ଟ ପ୍ରଚୁର ପର୍ଚ୍ଚା ବଣ୍ଟା ହେଉଥିଲା। ସେଥିରୁ କେତେ ଖଣ୍ଡି ମୋ ହାତରେ ପଡ଼ିଥିଲା। ଡ଼କ୍‌ଟର ଧାଙ୍ଗିକାରଙ୍କ ସହିତ ମୋର ଏହିଠାରେ ପରିଚୟ ହୋଇଥିଲା।

ଫେରିବା ବାଟରେ ଏଲାହାବାଦ ହୋଇ ଫେରିଲି। ବନାରସ, କାଶୀ ବିଦ୍ୟାପୀଠରେ ଶ୍ରୀଚନ୍ଦନ ରହି ପାଠାଗାରରୁ ବହି ଆଣି ପଢ଼ାପଢ଼ି କରିବାକୁ ଲାଗିଲି।

ଲକ୍ଷ୍ନୌ କଂଗ୍ରେସ ନଗର ଭିତରେ ନିଖିଳ ଭାରତ କୃଷକ ସଂଘ ଗଠନ ଉଦ୍ଦେଶ୍ୟରେ ଗୋଟିଏ ସଭା ସବୁ ପ୍ରଦେଶରୁ ଆସିଥିବା ଅନେକ ପ୍ରତିନିଧିଙ୍କୁ ନେଇ ହେଲା। ବଲ୍ଲଭ ଭାଇ ପଟେଲ ଏ ସଭା ନ ହେବା ପାଇଁ ଚାହାନ୍ତି। କିନ୍ତୁ ଜବାହାରଲାଲ ମତ ଦେବାରୁ ସଭା ହେଲା ଏବଂ ନିଖିଳ ଭାରତ କୃଷକ ସଭା ଗଠିତ ହେଲା। ସ୍ୱାମୀ ସହଜାନନ୍ଦ ସରସ୍ୱତୀ ଏହାର ସଭାପତି ହେଲେ। ସାମାଜିକ ଓ ଅର୍ଥନୈତିକ ଜୀବନରେ ଏକ ଓଲଟ ପାଲଟ ଆଣିବା ପାଇଁ ଆଉ ଏକ ମାନଦୁଆ ପଡ଼ିଲା। ପରବର୍ତ୍ତୀ କାଳରେ ଏହା ସୃଷ୍ଟି କରିଛି। ସାମାଜିକ ଓ ଅର୍ଥନୈତିକ ଜୀବନରେ ଘୂର୍ଣ୍ଣିବାତ୍ୟା ଏହାର ଅବସାନ ଏବେ ବି ସମ୍ପୂର୍ଣ୍ଣ ହୋଇନାହିଁ।

## ନୂଆ ଅସ୍ତ୍ର

କଂଗ୍ରେସ, ନିର୍ବାଚନରେ ଭାଗ ନେବାକୁ ସ୍ଥିର କଲା। ଖୋର୍ଦ୍ଧା, ଚଦନା, କଟଣୀ ଓ ଭୁବନେଶ୍ୱରକୁ ନେଇ ଗୋଟିଏ ନିର୍ବାଚନ ମଣ୍ଡଳୀ। ଓଡ଼ିଶା ଆସେମ୍ବ୍ଲି ପାଇଁ ୬୦ଟି ସୀଟ। ବରହମପୁରରେ ପ୍ରାଦେଶିକ କଂଗ୍ରେସ କମିଟି ବୈଠକରେ କିଏ କେଉଁଠାରୁ ପ୍ରାର୍ଥୀ ହେବା କଥା ବିଚାର ପଡ଼ିଲା। ସେହି ବୈଠକରେ ମୁଁ ଯୋଗ ଦେଇଥାଏ। ପ୍ରାଣନାଥ ପଟ୍ଟନାୟକ ଖୋର୍ଦ୍ଧା ନିର୍ବାଚନ ମଣ୍ଡଳୀରୁ ଛିଡ଼ା ହେବା କଥା ଏକ ପ୍ରକାର ଠିକ୍ ହେଲା। ଗୋଦାବରୀଶ ବାବୁ ଏଥିରେ ରାଜି ନଥିଲେ। ସେ ଚାହୁଁଥିଲେ ସ୍ୱାମୀଜୀ ବିଚିତ୍ରା ନନ୍ଦ ଦାସ ଛିଡ଼ା ହେବାକୁ।

ଇଂରେଜ ସରକାର ସିଧା ସଳଖ ଓ ତା'ର ପ୍ରାର୍ଥୀ ଛିଡ଼ା କରେଇ ପାରିବେ ନାହିଁ। କନିକା ରାଜାଙ୍କୁ ଶ୍ରୀଖଣ୍ଡି କରି ଗୋଟିଏ ଦଳ କଂଗ୍ରେସ ବିରୁଦ୍ଧରେ ଛିଡ଼ା କରେଇଲେ। ମୁସଲିମ ଲିଗ୍ ମଧ୍ୟ ତା'ର ପ୍ରାର୍ଥୀ ଛିଡ଼ା କରେଇଲା। ବ୍ରହ୍ମାନନ୍ଦ ମହାନ୍ତ ପୁରୀର ନାମଯାଦା ଓକିଲ। ଖୋର୍ଦ୍ଧା ନିର୍ବାଚନ ମଣ୍ଡଳୀରୁ ସେ କନିକା ତରଫରୁ ଛିଡ଼ା ହେଲେ। ପାରଳା ମହାରାଜା ମଧ୍ୟ ତାଙ୍କ ମନୋନୀତ

ମଧୁସୂଦନ ମହାନ୍ତିଙ୍କୁ ଛିଡ଼ା କରେଇଲେ । ଆଉ ଜଣେ ମଧ୍ୟ ସ୍ୱାଧୀନ ଭାବରେ ଛିଡ଼ା ହେଲେ । ସେତେବେଳେ ଭୋଟରଙ୍କ ସଂଖ୍ୟା ଏତେ ନଥିଲା । ସହରର ଲୋକେ ବାରଅଣା ଓ ଅଞ୍ଚଳର ଲୋକେ ଚାରିଅଣା ଟିକସ ଦେଉଥିଲେ ଏବଂ ଯେଉଁ ମାଟ୍ରିକ ପାସ୍ କରିଥିବ ସେହି ଲୋକ କେବଳ ଭୋଟ ଦେବାର ଅଧିକାର ପାଇଥିଲେ ।

ଖୋର୍ଦ୍ଧା ଥିଲା ସେତେବେଳେ ଇଂରେଜ ସରକାରଙ୍କର ହସ୍ତମୁଦ୍ଧ ମାହାଲ । ତା'ପାଇଁ ଥିଲା ଏକ ସ୍ୱତନ୍ତ୍ର ଆଇନ । ସରବରାକାରମାନେ ଥିଲେ ଗାଁ ମାନଙ୍କରେ ସରକାରଙ୍କର ଖୁଣ୍ଟି ଆଉ ଏସ ଡ଼ି ଓ ଥିଲେ ହର୍ତ୍ତାକର୍ତ୍ତା ବିଧାତା । ଲୋକଙ୍କ ଭିତରେ ଥିଲା କୋଲୁଆ ଭୟ । ପାଇକବିଦ୍ରୋହ ପରେ ପାଇକମାନଙ୍କର ଖୋର୍ଦ୍ଧା ଜମୀଙ୍କର ମେନ୍ଦୁଦାର ଭାଙ୍ଗି ଚୂନା କରି ଦିଆଯାଇଥିଲା । ଗୋପବନ୍ଧୁ ଦାସଙ୍କ ନିଜଙ୍କ ଜାଗା ପରେ ୧୯୨୨ ଠାରୁ ସେଭଳି କୌଣସିଧରଣର ସଭା ଆଉ ଖୋରଧରେ ହୋଇନଥିଲା । ରାଧାଚରଣ ଦାସ ଜଣେ ଏସ୍ ଡ଼ି. ଓ ଥିଲେ ଆଇନ ଅମାନ୍ୟ ଆନ୍ଦୋଳନ ସମୟରେ ଓ ତା'ପରେ ମଧ୍ୟ କଲ୍ଟ୍ରୀଦନ ଥିଲେ । ଲୋକେ ତାଙ୍କୁ ଏତେ ଡ଼ରୁଥିଲେ ଯେ ସେ ଖୋର୍ଦ୍ଧା ବେଙ୍କ୍ ଛକରେ ଠିଆ ହୋଇଥିଲେ, ଲୋକେ ସେ ବାଟରେ ଯାଉ ନଥିଲେ ।

ପ୍ରାଣନାଥ ପଟ୍ଟନାୟକଙ୍କୁ ସାହାଯ୍ୟ କରିବା ପାଇଁ ପ୍ରାଦେଶିକ କଂଗ୍ରେସ କମିଟି ଓ ଆଚାର୍ଯ୍ୟ ହରିହର ଦାସ ମୋତେ ଖୋର୍ଦ୍ଧା ଯିବାପାଇଁ କହିଲେ । ମୁଁ ୧୯୩୬ ମଧ୍ୟ ଭାଗରେ ଖୋର୍ଦ୍ଧା ଗଲି । ରହିବା ପାଇଁ ଆମକୁ ଘର ମିଳୁ ନଥାଏ । ପୁଲିସ ଡ଼ରରେ ଘର କେହି ଦେଲେ ନାହିଁ । ଉଦୟନାଥ ମହାନ୍ତିଙ୍କ ଦୋକାନ ପିଣ୍ଡାରେ ଆମେ ଆଶ୍ରୟ ନେଉ ।

ସାଧାରଣ ସଭାଟି କରିବା ଥିଲା । ସେତେବେଳେ ଏକ ଅସମ୍ଭବ କଥା । ଏସ. ଡ଼ି ଓ. ଙ୍କ ବଙ୍ଗଳା ସାମନାରେ ସଭାଟିଏ କରିବା ପାଇଁ ସ୍ଥାନ ମିଳୁ ନଥିଲା । ଦୁଇଟଙ୍କା ଆଠଅଣା ଦେଇ ଆମେ ହଜାରେ ହଳଦିଆ ପ୍ରଚାର ପତ୍ର ଛାପିଲୁ । ଦୀ'ଗୁର ପଇସା ଅଣ୍ଟାରେ ଗୁଞ୍ଜି ସଭାପାଇଁ ପ୍ରଚାରରେ ବାହାରିଲୁ । ସେତେବେଳେ ନିର୍ବାଚନ ପାଇଁ ଆମ ହାତରେ ସର୍ବମୋଟ ପାଣ୍ଠି ହେଉଛି ପାଞ୍ଚଅଣା (ବର୍ତ୍ତମାନର ୩୧ ପଇସା ।)

ଖୋର୍ଦ୍ଧା ଥାନାର ସବୁ ଗାଁ ପାଦରେ ବୁଲି ଲୋକଙ୍କୁ ଭଲ ଭାବରେ ବୁଝାଇ ପ୍ରଚାର କରିବାକୁ ଲାଗିଲୁ । ଖୋର୍ଦ୍ଧା ଗୁଣ୍ଡମାଣ୍ଡ ପଡ଼ିଆରେ ସଭାର ଆୟୋଜନ ହେଲା । ବାହାରୁ ପଣ୍ଡିତ ନୀଳକଣ୍ଠ ଦାସ, ମୋହନ ଦାସ, ବ୍ରଜକୃଷ୍ଣ ବୋଷ ନବକୃଷ୍ଣ ଚୌଧୁରୀ, ଯଦୁମଣି ମଙ୍ଗରାଜ ପ୍ରଭୃତି ନେତାମାନେ ଆସିଲେ । ସେତେବେଳକୁ ଆମେ ଦେଢ଼ ଟଙ୍କା ଦେଇ ଗୋଟିଏ ଘରଭଡ଼ା ପାଇଲୁଣି ।

ସଭା କରାଇ ନଦେବା ପାଇଁ ସରକାର ବ୍ୟବସ୍ଥା କରୁଥାନ୍ତି । ତେଣୁ ଏସ୍. ଡ଼ି. ଓ, ଙ୍କ ପାଖରୁ ଡାକରା ଆସିଲା । ମୁଁ ଓ ପ୍ରାଣନାଥ ବାବୁ ଗଲୁ ଏସ.ଡ଼ି. ଓ ଆମକୁ ଧମକ ଦେବାକୁ ଲାଗିଲେ ଏବଂ ଜଣାଇ ଦେଲେ ଯେ ତାଙ୍କର ବିନା ଅନୁମତିରେ ସଭା କରି ପାରିବ ନାହିଁ । ଏଥିରେ ମୁଁ ଉତ୍ତେଜିତ କଣ୍ଠରେ ଜବାବ ଦେଲି "ଏ ମାଟି ଆମର, ଏ ଦେଶ ଆମର ଏ ମାଟି ଉପରେ ଆମର କଥା କହିବା ପାଇଁ କାହାର ଅନୁମତି ଦରକାର ନାହିଁ । ଆମେ ଏତିକି କହି ଚାଲି ଆସିଲୁ ।

ଆକାଶ ମେଘାଚ୍ଛନ୍ନ । ଝିପି ଝିପି ବର୍ଷା ଲାଗି ରହିଥାଏ । ତେଣେ ପୁଲିସର ଧମକ । "ସଭାକୁ ଗଲେ ସମସ୍ତେ ଗିରଫ ହେବେ" । ବହୁତ ପୁଲିସ ଆସି ରାସ୍ତା ନିକଟରେ ଖେଦ ପଇଁତରା ମାରୁଥାନ୍ତି । ମନ ଭିତରେ ଆଶା ଓ ନିରାଶା ।

ସଭାର ସମୟ ପାଖେଇ ଆସୁଥାଏ । ଖୋର୍ଦ୍ଧାର ଗଳି କନ୍ଦି ଲୋକଙ୍କ ଗହଳିରେ ପୁରି ଉଠୁଥାଏ । ନାନା ସ୍ଥାନରୁ ଶୋଭାଯାତ୍ରା ପଡ଼ିଆ ଲୋକାରଣ୍ୟ ହୋଇ-ଗଲା । ଏ ଦୃଶ୍ୟ ଦେଖି ଲୋକଙ୍କର ଆଶା ଆକାଂକ୍ଷା ସାହାସ ଓ ମନର ବଳ ବଢ଼ିଗଲା ।

ସଭାରେ ବକ୍ତାମାନେ ଖୁବ୍ ଉତ୍ତେଜନା ମୂଳକ ବକ୍ତୃତାମାନ ଦେଲେ । ଏସ୍.ଡ଼ି ଓ ଓ. ପୁଲିସ ନୀରବ ଦର୍ଶକ ହୋଇ ଏହା ଦେଖୁଥାନ୍ତି । ଲୋକେ କଥାବାର୍ତ୍ତା ହେଉଥାନ୍ତି "କେତେ ଧମକ ଦେଉଥିଲେ, କାହିଁକି ତୁନି ହୋଇ ବସିଛନ୍ତି ? ନେତା ମାନେ ତ ଏତେ ଗାଳି ଦେଉଛନ୍ତି, କଡ଼ା କଡ଼ା କଥା କହୁଛନ୍ତି କାହିଁ କିଛି ତ କରି ପାରୁନାହାନ୍ତି । "ଲୋକେ ଏହିଠାରୁ ଭୟ ଛାଡ଼ି ନିର୍ବାଚନରେ କଂଗ୍ରେସକୁ ଜୟଯୁକ୍ତ କରିବାକୁ ଅଣ୍ଟାଭିଡ଼ି ବାହାରିଲେ ।

ଆମ ପଛରେ ଝାଙ୍କୁଆ ହୋଇ ଛିଡ଼ା ହେଲେ । ତାପଙ୍ଗ ଗଡ଼ର ଚନ୍ଦ୍ରମଣି ପାତାଳ ସିଂ, କାଳି ଚରଣ ଜଗଦେବ, ନଚଣ ଗଡ଼ର ଦଳବେହେରା ବଂଶର ରଘୁନାଥ, ଓଲସିଂହର ରଘୁନାଥ ଦାସ, ଲକ୍ଷ୍ମଣ ପଟ୍ଟନାୟକ, ମଳିପଡ଼ା ଜଙ୍ଗିଆର ଯୁବକମାନେ, ଚନ୍ଦକାର ଦାମୋଦର ମିଶ୍ର, ବ୍ରଜବନ୍ଧୁ ମହାନ୍ତି, ଅନନ୍ତ ହେଁଙ୍ଗ, ନିରଞ୍ଜନ ଜଗଦେବ, ଭୁବନେଶ୍ୱରର ରଘୁନାଥ ମହାପାତ୍ର ଓ ଅଧିକାଂଶ ଯୁବକ ।

ପଣ୍ଡିତ ଜବାହାରଲାଲ ଏହି ନିର୍ବାଚନରେ ପ୍ରଥମଥର ଓଡ଼ିଶା ଆସିଲେ । ଭୁବନେଶ୍ୱରଠାରେ ତାଙ୍କର ଅଭ୍ୟର୍ଥନାର ଭାରଥିଲା ମୋ ଉପରେ । ରାତିରେ ସେ ରହିବେ ଏଠାରେ, ସେଦିନ ଜବାହାରଲାଲଙ୍କୁ ଷ୍ଟେସନରୁ ଆଣିବା ପାଇଁ ମଟର ଗାଡ଼ି ମିଳିଲା ନାହିଁ, ଶେଷରେ ଗୋଟିଏ ଲୁଜ ଘୋଡ଼ା ଓ ତୃତୀୟ ଶ୍ରେଣୀର

ପ୍ରଭୃତି ପୁରୁଣା କାଳିଆ ଘୋଡ଼ାଗାଡ଼ିଟିଏ କୌଣସିମତେ ବ୍ୟବସ୍ଥା କଲି । ଘର ମିଳୁ ନଥାଏ ତାଙ୍କୁ ରଖିବାପାଇଁ । ଶେଷରେ ବେଲୁଡ଼ମଠ ସନ୍ନ୍ୟାସୀଙ୍କ ସହିତ କଥାବାର୍ତ୍ତା କରି ବହୁକଷ୍ଟରେ ଘର ଖଣ୍ଡେ ମିଳିଲା । ସେଦିନ ଭୁବନେଶ୍ୱର ଗ୍ରାମରେ ଅଳି ଅନ୍ଧାର । ଚେନ୍ନମନ ପାଖଥିଲା ଜଙ୍ଗଲ ।

ଜବାହାରଲାଲ ଭିତରେ ଆସି ପହଞ୍ଚିଲେ ଦୀପାଳୀର ଆଲୋକ ମଳା ବାଣ, ସାଏଁ, ନାଗା, ମେଢ଼ ଓ ବାଣରେ ଭୁବନେଶ୍ୱର ଉତ୍ସବ ମୁଖର ହୋଇଉଠିଲା । ମହାରାଜ ନରପାଳ ଖୁଣ୍ଟିଆ ନବାସ ସାମନା ପଡ଼ିଆରେ ମଞ୍ଚ ହେଲା । ଠିକ୍‌କରି ମଧ୍ୟ କଳନା କରିଯାଇ ପାରିବ ନାହିଁ ।

ଜବାହାରଲାଲ ସେଦିନ ରାତିରେ ଭୁବନେଶ୍ୱରରେ ରହିଲେ । ପୁଣି ପିଲାକଥା, ତାଙ୍କପାଇଁ ପ୍ରଥମ ଶ୍ରେଣୀର ଓ ମୋ ପାଇଁ ତୃତୀୟ ଶ୍ରେଣୀର ଟିକେଟ କରିଥିଲି । କାହିଁକି ନା ତାଙ୍କପାଇଁ ତୃତୀୟ ଶ୍ରେଣୀର ଟିକେଟ ନକରି ପ୍ରଥମ ଶ୍ରେଣୀର ଟିକେଟ କଲିବୋଲି ବିରକ୍ତ ହେଲେ ।

କିନ୍ତୁ ଦେଖିଲି ପ୍ରଧାନମନ୍ତ୍ରୀ ହେଲପରେ ସେ ଜବାହାରଲାଲ ଆଉ ନାହାନ୍ତି ।

ପୁରୀ, ସାକ୍ଷୀଗୋପାଳ, ପିପିଲି ହୋଇକି, କଟକରେ ସଭାସବୁ ସାରି ଜବାହାରଲାଲ ଖୋର୍ଦ୍ଧା ଗଲେ । ପଲଟଣ ପଡ଼ିଆରେ ସଭାହେଲା । ହାଇସ୍କୁଲ ଛାତ୍ରମାନେ ପ୍ରଧାନ ଶିକ୍ଷକ ବାଙ୍କନାଥ ପଟ୍ଟନାୟକଙ୍କ ଭୟରେ ଡ଼ରି ଡ଼ରି ଆସି ସଭାରେ ବସିଥିଲେ । ହଠାତ୍ ବାଙ୍କନାଥ ବାବୁଙ୍କୁ ସଭାର ପଛପଟେ ଠିଆହେବାର ଦେଖି ବାଘ ଦେଖିଲେ ଛେଳିପଲ ଯେପରି ଛୁଟୁଛି ଏଣେ ତେଣେ ପଳାନ୍ତି ସେହିପରି ଅନେକଛାତ୍ର ପଳେଇଗଲେ । ଜବାହାରଲାଲ ଭାରି ରାଗ ଓ ବ୍ୟଙ୍ଗରେ ସଭାଶେଷରେ ମୋତେ ପଚାରିଲେ, ପିଲାଏ ଏପରି ଏଣେ ତେଣେ ପଳାଇଲେ କାହିଁକି ? ତାଙ୍କୁ କାରଣ କହିବାରୁ ସେ କହିଲେ "ଛଅ ମାସ ଭିତରେ ଏ ଅବସ୍ଥାର ଯେପରି ପରିବର୍ତ୍ତନ ହୁଏ ।"

ସେଦିନଠାରୁ ଛାତ୍ର ଆନ୍ଦୋଳନ ଉପରେ ତୀକ୍ଷ୍ଣ ଦୃଷ୍ଟି ଦେବାକୁ ଲାଗିଲି ଓ ଯଥାସମ୍ଭବ ଚେଷ୍ଟା ଚଳାଇଲି । ଉଦ୍ୟମ ଫଳବତୀ ହେଲା । ପ୍ରଧାନଶିକ୍ଷକଙ୍କ ବଡ଼ପୁଅ ମନମୋହନ ଓ ତାଙ୍କର ଅତି ପ୍ରିୟଛାତ୍ର ବସନ୍ତ । ଯେଉଁଦିନ ଛାତ୍ରମାନଙ୍କର ଏକ ବିରାଟ ପଟୁଆର ପ୍ରଥମ କରି ଖୋର୍ଦ୍ଧାରେ ବାହାରିଲା ସେଦିନ ମନମୋହନ ପଟ୍ଟନାୟକ କଂଗ୍ରେସ ପତାକାଧରି ଚାଲିଲେ ଶୋଭାଯାତ୍ରାର ଅଗ୍ରଭାଗରେ, ଆଉ ବସନ୍ତ ଦେଉଥିଲେ ସ୍ଲୋଗାନ । ଏହି ଆନ୍ଦୋଳନ ଛାତ୍ରମାନଙ୍କ ଭିତରୁ ଗଢ଼ିଥିଲେ, ରାମଚନ୍ଦ୍ର ମିଶ୍ର ଓ ଦୁର୍ଗାଚରଣ ମହାନ୍ତି, ରାମଚନ୍ଦ୍ର ମିଶ୍ର ଅନ୍ୟ ପ୍ରାଦେଶିକ କୃଷକ

ସହରର ସମ୍ପାଦକ ଏବଂ ଦୁର୍ଗାଚରଣ ମହାନ୍ତି ପ୍ରାଦେଶିକ କମ୍ୟୁନିଷ୍ଟ ପାର୍ଟିର ସମ୍ପାଦକ ଓ ଶ୍ରମିକ ସଂଘର ସଭାପତି ରାମଚନ୍ଦ୍ର ରାମ ମଧ୍ୟ ସେତେବେଳେ ଏହି ଆନ୍ଦୋଳନକୁ ଜାଗ୍ରତ ରଖିଥିଲେ ।

ନିର୍ବାଚନ ପାଇଁ ପ୍ରାଦେଶିକ କଂଗ୍ରେସ କମିଟିରେ ନିର୍ବାଚନ ଇସ୍ତାହାର ପ୍ରସ୍ତୁତ କରାଗଲା । କୃଷକମାନଙ୍କ ଭିତରେ ସେତେବେଳେ ଅବସ୍ଥା ବେଶ୍ ସଙ୍ଗଠିତ ହୋଇ ଆସିଥିଲା । ପ୍ରାଦେଶିକ କଂଗ୍ରେସ କମିଟିରେ କଂଗ୍ରେସ ସାମ୍ୟବାଦୀ ଦଳର ଜୋର ଖୁବ୍ ବେଶୀ । ଆଉ ଭାରତ ବର୍ଷରେ ନେହେରୁଙ୍କର ପ୍ରଭାବ । ନିର୍ବାଚନ ଇସ୍ତାହାରରେ ଏ ସବୁର ପ୍ରଭାବ ପଡ଼ିଲା । କୃଷକମାନଙ୍କର ବହୁ ଦାବୀ ପୂରଣ କରିବା ପାଇଁ ଏଥିରେ କଂଗ୍ରେସ ପ୍ରତିଶ୍ରୁତି ଦେଲା । ସେଦିନର ଅବସ୍ଥାରେ ଏହା ଥିଲା ଏକ ପ୍ରଗତିଶୀଳ ଇସ୍ତାହାର । ଏହି ଇସ୍ତାହାର ବଳରେ ଲୋକେ ଏକଜୁଟ ହୋଇ କଂଗ୍ରେସକୁ ନିର୍ବାଚନରେ ଜୟଯୁକ୍ତ କଲେ । ପ୍ରାଣନାଥ ପଟ୍ଟନାୟକ ଖୋର୍ଦ୍ଧାରୁ ବିଜୟୀ ହେଲେ । ଭାରତ ବର୍ଷରେ ପ୍ରଥମେ ଓଡ଼ିଶାର ଫଳ ଘୋଷଣା କରାହେଲା କଂଗ୍ରେସ ଜିତିଛି । ଭାରତରେ ଆନନ୍ଦ ଲହରୀ ଖେଳିଗଲା ।

ଏଥର ମନ୍ତ୍ରୀମଣ୍ଡଳ ଗଢ଼ିବା କଂଗ୍ରେସର ପାଳି, କିନ୍ତୁ ଇଂରେଜ ସରକାର ଏମାନଙ୍କୁ ଶାସନ ଚଳେଇବାରେ କେତେକ ସ୍ୱାଧୀନତା ନ ଦେଲେ ଏମାନେ ମନ୍ତ୍ରୀ ମଣ୍ଡଳ ଗଢ଼ିବେ ନାହିଁ ବୋଲି କଂଗ୍ରେସ ଜଣାଇଦେଲା । ଇଂରେଜ ସରକାର କଂଗ୍ରେସକୁ ବାଦ୍ ଦେଇ ପାରଳା ମହାରାଜାଙ୍କ ନେତୃତ୍ୱରେ ଏକ ମନ୍ତ୍ରୀମଣ୍ଡଳ ଗଢ଼ାଇଲେ । କିନ୍ତୁ ଜନଜାଗରଣ ଆଗରେ ମୁଣ୍ଡ ନୁଆଁଇବାକୁ ବାଧ୍ୟହେଲେ । ପାରଳା ମହାରାଜଙ୍କ ମନ୍ତ୍ରୀମଣ୍ଡଳ ଭାଙ୍ଗିଲା ଏବଂ ବିଶ୍ୱନାଥ ଦାସଙ୍କ ନେତୃତ୍ୱରେ ନିତ୍ୟାନନ୍ଦ କାନୁନ୍‌ଗୋ, ବୋଧରାମ ଦୁବେଙ୍କୁ ନେଇ ଓଡ଼ିଶାର ପ୍ରଥମ କଂଗ୍ରେସ ମନ୍ତ୍ରୀ ମଣ୍ଡଳ ଗଠନ କରାଗଲା । ୧୯୩୭ ସେପ୍ଟେମ୍ବରରେ ରେଭେନ୍‌ସା କଲେଜ ହଲ୍‌ରେ ପ୍ରଥମ ବିଧାନସଭା (ଏସେମ୍ବ୍ଲି) ବୈଠକ ବସିଲା । ଗାଁ ଗଣ୍ଡାରୁ ଆସି ହଜାର ହଜାର ଲୋକ ଶୋଭାଯାତ୍ରାରେ କଂଗ୍ରେସ ବିଧାନ ସଭାର ସଭ୍ୟମାନଙ୍କୁ ନେଇ ବୈଠକରେ ପହଞ୍ଚାଇ ଦେଇଥିଲେ । କଟକ ସହରରେ ସେଦିନ କି ଉତ୍ସାହ କି ଉନ୍ମାଦନା, ଇଂରେଜ ସରକାର ପାଦେ ପାଦେ ପଛକୁ ହଟୁଛି, ହାରୁଛି, ଜନସାଧାରଣଙ୍କର ସଂଗ୍ରାମ ପାଦେ ପାଦେ ଆଗକୁ ମାଡ଼ୁଛି, ଜିତୁଛି । ସେତେବେଳେ ମନ୍ତ୍ରୀମାନେ ତୃତୀୟ ଶ୍ରେଣୀର ଡବାରେ ଗସ୍ତ କରୁଥିଲେ, ସାଧାରଣ ଘରେ ରହୁଥିଲେ, ସେମାନଙ୍କ ଅଫିସର ଠାଟ ଆଜିକାଭଳି ନଥିଲା । ଥିଲା ଖୁବ୍ ସାଧାସିଧା । ଭୋଗ-ବିଳାସର ପ୍ରଶ୍ନ ନଥିଲା ।

# କୃଷକ ଆନ୍ଦୋଳନର ନୂଆ ଦିଗ

ନିର୍ବାଚନ ପୂର୍ବରୁ ୧୯୩୭ ରେ ମୋହନଲାଲ ଗୌତମ ଓଡ଼ିଶା ଆସିଲେ । ତାଙ୍କର ସଭାପତିତ୍ୱରେ ଓଡ଼ିଶାରେ ପ୍ରଥମ କୃଷକ ସମ୍ମିଳନୀ ବସିଲା । ପଣ୍ଡିତ ଗୋଦାବରୀଶ ମିଶ୍ର ଅଭ୍ୟର୍ଥନା ସଭାର ସଭାପତି ହୋଇଥିଲେ । ଏହା ପୂର୍ବରୁ ଲକ୍ଷ୍ନୌଠାରେ ନିଖିଳ ଭାରତ କୃଷକ ସମ୍ମିଳନୀ ହୋଇଯାଇଥାଏ । ହରେକୃଷ୍ଣ ମହତାବ କୃଷକ ସଭାର ସଭାପତି ହେଲେ । କଂଗ୍ରେସର ଅଧିକାଂଶ ଯୁବକ ଏହି କୃଷକ ସଭାର ସଭ୍ୟଭାବରେ ଚାଷୀଙ୍କ ଭିତରେ ଦୁର୍ବାର ଆନ୍ଦୋଳନ ସୃଷ୍ଟି କରିଥିଲେ । ସମନ୍ତବାଦର ମୂଳ ସେହିଦିନ, ଏପରି ଦୋହଲି ଗଲା ଯେ ଆଉ ତା'ର ଚେର ଲାଗିଲା ନାହିଁ ।

ଓଡ଼ିଶାରେ କୃଷକ ସଭା ଗଠିତ ହେବାପରେ ପୁରୀ ଜିଲ୍ଲାର ନୂଆହାଟଠାରେ ପୁରୀ ଜିଲ୍ଲାର ପ୍ରଥମ କୃଷକ ସମ୍ମିଳନୀ ହେଲା । ଗତିକୃଷ୍ଣ ସ୍ୱାଇଁ, ଲୋକନାଥ ସାହୁ, ବଳରାମ ପାଇକରା ଏହି ସମ୍ମିଳନୀର ଆୟୋଜନ କରିଥିଲେ । ଘୋର ବରଷା ନବକୃଷ୍ଣ ଚୌଧୁରୀ, ମାଲତୀ ଚୌଧୁରୀ ବର୍ଷାବାଡ଼ି ସତ୍ତ୍ୱେ ତନ୍ତ୍ର ତନ୍ତ ଓଦା ସରସର ହୋଇ ନୂଆହାଟ ଠାରେ ଆସି ପହଞ୍ଚିଲେ । ପାଗ ଖରାପ ସତ୍ତ୍ୱେ ହଜାର ହଜାର ଲୋକ ଏ ସମ୍ମିଳନୀରେ ଆସି ଯୋଗଦେଲେ । ଏହାପରେ ପରେ ପିପିଲି, ଖୋର୍ଦ୍ଧା ଓ କଟକ ଜିଲ୍ଲାର ଅଣଖିଆ ଓ କଟକ ଟାଉନରେ ମଧ୍ୟ କୃଷକ ସମ୍ମିଳନ ହେଲା । ଏହି ସବୁ ସଭାରେ ଅଗଣିତ ଚାଷୀ ପଟୁଆର କରି ସ୍ଲୋଗାନ ଧରି ଓ ସ୍ଲୋଗାନ ସବୁ ଦେଇ ଆସି ଯୋଗ ଦେଉଥାନ୍ତି । ସେ ଉନ୍ମାଦନା ବର୍ଣ୍ଣନା କରିବା ଅସମ୍ଭବ । ଯୁଗଯୁଗର ସାମନ୍ତବାଦୀ ଅତ୍ୟାଚାର ଓ ଶୋଷଣ ବିରୁଦ୍ଧରେ ସେ ଥିଲା ରଣହୁଙ୍କାର । ବୈଦ୍ୟନାଥ ରଥ ପଟିଆର ଲୋକ । ପଟିଆର ଚାଷୀ ଜମିଦାରଙ୍କ ବିରୁଦ୍ଧରେ ମାତିଲେ । ବୈଦ୍ୟନାଥ ରଥଙ୍କ ବାପା ଜମିଦାରଙ୍କର ସବୁ ଚୁଟାଚୁଟି କରୁଥିଲେ । କିନ୍ତୁ ବୈଦ୍ୟନାଥ ରଥ ପଟିଆ ଚାଷୀଙ୍କୁ ମେଳକଲେ ଏବଂ ଆନ୍ଦୋଳନ ଆରମ୍ଭ କରିଦେଲେ । ଏମାନେ ଏକ ବିରାଟ ପଟୁଆରରେ କଟକ ସମ୍ମିଳନୀରେ ଯୋଗଦେଲେ । ଏହାପରେ ଓଡ଼ିଶାର ଚାରିଆଡ଼େ ସଭାସବୁ ହେବାକୁ ଲାଗିଲା ।

ଏହାପରେ ଏକ ଜନଜାଗରଣର ଝଡ଼ଭିତରେ କଂଗ୍ରେସ ମନ୍ତ୍ରୀମଣ୍ଡଳ କାମ କରିବାକୁ ଲାଗିଲେ । ମନ୍ତ୍ରୀମଣ୍ଡଳ ଠାରୁ ପ୍ରାଦେଶିକ କମିଟିର ସଭ୍ୟମାନଙ୍କର କ୍ଷମତା ମନ୍ତ୍ରୀମାନଙ୍କ କ୍ଷମତାଠାରୁ ଥିଲା ଅଧିକ ।

ପ୍ରାଦେଶିକ କଂଗ୍ରେସ କମିଟିର ସଭ୍ୟମାନଙ୍କର କ୍ଷମତା ମନ୍ତ୍ରୀମାନଙ୍କ କ୍ଷମତାଠାରୁ ଥିଲା ଅଧିକ । ମନ୍ତ୍ରୀମାନେ ସବୁବେଳେ ଲୋକଙ୍କର ସମାଲୋଚନାକୁ ଭୟ କରୁଥିଲେ । ପ୍ରାଦେଶିକ କଂଗ୍ରେସ କମିଟିର ନିଷ୍ପତ୍ତିକୁ ମନ୍ତ୍ରୀମାନେ ସରକାରୀ ସ୍ତରରେ କାର୍ଯ୍ୟକାରୀ କରୁଥିଲେ । ମୋର ଏ ସମ୍ପର୍କରେ ଗୋଟିଏ ଘଟଣା ମନେପଡ଼େ । ମୁଁ, ପ୍ରାଣନାଥ ପଟ୍ଟନାୟକ, ଭଗବତୀ ଚରଣ ପାଣିଗ୍ରାହୀ, ନବକୃଷ୍ଣ ଚୌଧୁରୀ, ମୋହନ ଦାସ, ଗୌରବାବୁ ପ୍ରଭୃତି ପ୍ରା.କଂ. କମିଟିର ସଭ୍ୟଥିଲୁ । କଂଗ୍ରେସ ସାମ୍ୟବାଦୀ ଦଳର ସମ୍ପାଦକ ଥାନ୍ତି ଭଗବତୀ ବାବୁ । ଏହିଦଳ କଂଗ୍ରେସ ଭିତରେ କୃଷକ ସଙ୍ଘର ଦାବୀ ଉପରେ ଆଇନ ତିଆରି କରିବା ପାଇଁ ଉଦ୍ୟମ କରୁଥାନ୍ତି । ବାହାରେ କୃଷକ ଆନ୍ଦୋଳନ ଓ କଂଗ୍ରେସ ଭିତରେ ଆମର ଉଦ୍ୟମ ଫଳରେ ଦାଖଲ ଖାରଜ ରେସମ ଉଠିଯିବା, ଋଣ ମକୁବ୍ ଓ ସୁଧ ଶତକଡ଼ା ୬.୨୫ ଆଇନ କରିବାକୁ ପ୍ରା.କ. କମିଟିରେ ପ୍ରସ୍ତାବମାନ ଆସିଲା । ଏହି ପ୍ରସ୍ତାବ ଦଳ ତରଫରୁ ମୁଁ ଆଣିଲି । ଏହି ପ୍ରସ୍ତାବ ବିରୁଦ୍ଧରେ ମୁଖ୍ୟମନ୍ତ୍ରୀ ବିଶ୍ୱନାଥ ଦାସ, ଘରୋଇ ମନ୍ତ୍ରୀ ନିତ୍ୟାନନ୍ଦ କାନୁନ୍‌ଗୋ ପ୍ରଭୃତି କଂଗ୍ରେସ ଭିତରେ ଥିବା ଜମିଦାର ଶ୍ରେଣୀର ସଭ୍ୟମାନେ ଉତ୍ତକ୍ଷିପ୍ତ ହୋଇଉଠିଲେ । ଅନ୍ତ ପ୍ରସ୍ତାବଗୁଡ଼ିକ ଗୃହୀତ ହୋଇଗଲା । ସେଦିନ ମୋ ଉପରେ ଓ ଆମଦଳ ଉପରେ ଆକ୍ରମଣର ଗୋଟାଏ ପ୍ରବଳ ଝଡ଼ ବୋହିଗଲା ।

ପ୍ରାଦେଶିକ କଂଗ୍ରେସ କମିଟିର ନିଷ୍ପତ୍ତି । ତେଣୁ ଏହି ପ୍ରଗତିଶୀଳ ଗୋଷ୍ଠିର ବିରୋଧ ମନ୍ତ୍ରୀ ଦାଖଲ ଖାରଜ ରେସମ ଗୁଡ଼ (ଜମି ବିକ୍ରୀକଲେ ଜମିଦାରଙ୍କୁ ୨୫% ପ୍ରଜା ଦେଉଥିଲା) । ଗଛ, ମାଛ ଉପରେ ପ୍ରଜାର ଅଧିକାର, ଋଣ ସମ୍ପର୍କରେ ଦଖଲ ବନ୍ଧକ ୧୫ ବର୍ଷରେ ମୁକୁଳିବ ଓ ସାଧାରଣ ଋଣର ସୁଧ ୯% ବୋଲି ଆଇନ ହୋଇଗଲା । ସାମନ୍ତବାଦର କ୍ଷମତା ଉପରେ ଏହାହିଁ ହେଲା ପ୍ରଥମ କାର୍ଯ୍ୟକାରୀ ଚୋଟ ।

ବୈଜ୍ଞାନିକ ଯୁଗରେ ଉତ୍ପାଦନ ଯନ୍ତ୍ରର ରୂପ ବଦଳିଗଲା ପରେ ପୃଥିବୀର ଗୋଟିଏ ଅଂଶରେ ଶ୍ରମିକଶ୍ରେଣୀ ଶାସନ ଚଳାଇବାପରେ ସାମନ୍ତବାଦୀ ଉତ୍ପାଦନ ଓ ସମାଜ ବ୍ୟବସ୍ଥା ଲୋକଙ୍କର ଜୀବନ ସହିତ ଆଉ ଖାପ ଖାଉନାହିଁ । ତେଣୁ ଲୋକେ ଏଇ ଯେଉଁ ଚୋଟମାଇଲେ ତାହା ଆଉ ବନ୍ଦ ହେଲନାହିଁ । କ୍ରମାଗତ ଏବଂ ଅଧିକ ଯୋରରେ ଏହି ଚୋଟ ଚାଲିଲା ।

ଓଡ଼ିଶା ଆସେମ୍ବ୍ଲିରେ ଯେତେବେଳେ ମୋହନ ଦାସ, ପ୍ରାଣନାଥ ପଟ୍ଟନାୟକ, ନବକୃଷ୍ଣ ଚୌଧୁରୀ, ଗୋବିନ୍ଦ ପ୍ରଧାନ ମୁଖ୍ୟଭାବରେ ଲୋକଙ୍କର ଦାବୀ ଉପରେ ପ୍ରସ୍ତାବମାନ ଆଣୁଥିଲେ ଏବଂ ଆଲୋଚନା କରୁଥିଲେ । ଜଙ୍ଗଲ ଆଇନ, ଶିକ୍ଷାଆଇନ ପ୍ରଭୃତି କେତୋଟି ଆଇନର ମୌଳିକ ପରିବର୍ତ୍ତନ କରିବା ପାଇଁ ପ୍ରାଣନାଥ ବାବୁ

କଟା ପ୍ରସ୍ତାବ ହୋଇଥିଲେ ଏବଂ ସେଗୁଡ଼ିକ ଆଇନରେ ପରିଣତ ହୋଇଥିଲା । ଦରବରାକାଣ୍ଡ ପ୍ରଥା ରଦ୍ଦ, ଖୋର୍ଦ୍ଧା ଖାସମହାଲ ଆଇନର ପରିବର୍ତ୍ତନ ପାଇଁ ଆଲୋଚନା ହୋଇଥିଲା ।

## ପୁରୁଣା ନୂଆର ସଂଘର୍ଷ

ବାଲିଅନ୍ତା ନିମାପଡ଼ା ଥାନାର ଗୋଟିଏ ବଡ଼ ଗାଁ । ଏହିଠାରେ ପୁରୀ ଜିଲ୍ଲାର କୃଷକ ସମ୍ମିଳନୀ ପୁଣି ବସିଲା । ଏହା ଥିଲା ଅତି ଗୁରୁତ୍ୱପୂର୍ଣ୍ଣ । ପୁରୁଣା ଚିନ୍ତା ଓ ନୂଆ ଚିନ୍ତା ସାମାଜିକ ବ୍ୟବସ୍ଥା ଯାହାଥିଲା ସେଇଆ ରହିବ ଓ ତାହାକୁ ଭାଙ୍ଗି ଆଗେଇ ଯିବ, ଅଚଳ ଓ ସଚଳ ଏହି ଦୁଇଟି ଭିତରେ ଥିଲା ସଂଘର୍ଷ । ପଣ୍ଡିତ ନୀଳକଣ୍ଠ ଦାସଙ୍କ ନେତୃତ୍ୱରେ ଜଗନ୍ନାଥ ରଥ, ସତ୍ୟବାଦୀ ନନ୍ଦ, ଲାଲବିହାରୀ ଦାସ ଦୁଃଖିଶ୍ୟାମ ଦାସ ପ୍ରଭୃତି ପୁରୀ ଜିଲ୍ଲାର ମୁଖ୍ୟ କଂଗ୍ରେସ ନେତାମାନେ ଭୂସମ୍ପର୍କରେ ପରିବର୍ତ୍ତନ ନକରେଇ ଦେବାପାଇଁ ଅଣ୍ଟାଭିଡ଼ିଲେ । ସେମାନେ ଜମିଦାରମାନଙ୍କ ପକ୍ଷ ନେଲେ । ଗଛ, ମାଛ ଉପରେ ପ୍ରଜାର ଅଧିକାର ବିରୁଦ୍ଧରେ ଛିଡାହେଲେ । ମୋହନ ଦାସ, ପ୍ରାଣନାଥ ପଟ୍ଟନାୟକ ଗଉରକୃଷ୍ଣ ସ୍ୱାଇଁ, ମୁଁ ଓ ଗଙ୍ଗାଧର ମିଶ୍ର ପ୍ରଭୃତି କର୍ମୀ, ପ୍ରଜାଙ୍କ ପକ୍ଷରେ ଛିଡ଼ା ହେଲୁ ।

ପଣ୍ଡିତ ନୀଳକଣ୍ଠ ଦାସ ଏହି ସମ୍ମିଳନୀରୁ ମୋହନ ଦାସ ଓ ଆମ ବିରୁଦ୍ଧରେ ଦଳବଳ ଧରି ତାଙ୍କର ମତ ପ୍ରଚାରରେ ବାହାରିଲେ । ପୁରୀଜିଲ୍ଲାର କୃଷକ ସଙ୍ଘକୁ ସଭାପତି ଭାବରେ ଜଗନ୍ନାଥ ରଥ ସେହିଦିନୁ ଅଚଳ କରିଦେଲେ ।

ହରେକୃଷ୍ଣ ମହତାବ, ନବକୃଷ୍ଣ ଚୌଧୁରୀ, ମାଳତୀ ଦେବୀ, ମୋହନଦାସ ଓ ମୁଁ ଓ ଅନ୍ୟମାନେ ଆମର ମତ ପ୍ରଚାର କରିବାକୁ ବାହାରିଲୁ । ଏଥିରେ ଏକ କର୍ମିଷ୍ଠ ଅଭିଯାନ, ନିମାପଡ଼ା, କାକଟପୁର, ବାଲିଅନ୍ତା, ବାଲିପାଟଣା, ଗୋପ ପ୍ରଭୃତି ଅଞ୍ଚଳରେ ବହୁତ କୃଷକ ସଭା ହେଲା । ଖୋର୍ଦ୍ଧା ଚନ୍ଦକା, ଜଟଣୀ ବାଣପୁର ଟାଙ୍ଗି, ବେଗୁନିଆ ଓ ବୋଲଗଡ଼ ଅଞ୍ଚଳରେ ମଧ୍ୟ କୃଷକ ସଭାମାନ ହୋଇଲା । ଆମେ ନୂଆ କରି ପୁଣି ପୁରୀ ଜିଲ୍ଲା କୃଷକ ସଭା ଗଢ଼ିଲୁ । ଗଙ୍ଗାଧର ମିଶ୍ର କୃଷକ ସଭାର ଦାୟିତ୍ୱରେ ରହିଲେ ।

କଂଗ୍ରେସ ସରକାର ଗଢ଼ା ହୋଇଛି । ପ୍ରଜାମାନେ ଜମିଦାରମାନଙ୍କର ନାଗପାଶରୁ ମୁକୁଳିଛନ୍ତି । ସେମାନେ ନିର୍ଭୟରେ ପୁରୁଣା ଜାଲକୁ ଛିଣ୍ଡାଇ ଟିକି ଟିକି କରିଦେବାକୁ ବାହାରିଲେ । ସେମାନେ ବୁଝିଲେ ଯେ, ସଂଗଠନ ହିଁ ପ୍ରକୃତ ବଳ । ସଂଗ୍ରାମ ଓ ସଂଗଠନ ଫଳରେ ସେମାନଙ୍କର ଭାଗ୍ୟ ବଦଳିବ । ସମାଜରେ ପରିବର୍ତ୍ତନ ଆସିବ, ଏ ବିଶ୍ୱାସ ସେମାନଙ୍କର ଖୁବ୍ ବଢ଼ିବାକୁ ଲାଗିଲା ।

# ପରିବର୍ତ୍ତନ

ଦିନ ଚାଖଲ ବଦଳି ଚାଲିଲା । ବିଶ୍ୱନାଥ ଦାସ ମୁଖ୍ୟମନ୍ତ୍ରୀ ହିସାବରେ ପ୍ରଥମ କରି କୋରାପୁଟ ଆସିଲେ । ବିରାଟ ସାଧାରଣ ସଭା, ଭାଷଣ ଦେବେ । ଏହି ସମୟରେ ନୀଳକଣ୍ଠ ଦାସ, ଗୋଦାବରୀଶ ମିଶ୍ର ପ୍ରଭୃତି ଅସନ୍ତୁଷ୍ଟ ଗୋଷ୍ଠୀ ଏହି ମନ୍ତ୍ରୀମଣ୍ଡଳ ବିରୁଦ୍ଧରେ ଷଡ଼ଯନ୍ତ୍ର ଓ ପ୍ରଚାର ଚଳାଇଥାନ୍ତି । ଆମେ ଆଉ ମନ୍ତ୍ରୀ-ମଣ୍ଡଳ ସପକ୍ଷରେ । ସଭା ହେଲା । ଲୋକଙ୍କର ଉତ୍ସାହ ଓ ଆନନ୍ଦ କହିଲେ ନସରେ । ଦୂର ଦୂରାନ୍ତରୁ ଲୋକେ ଆସିଥାନ୍ତି । ସେହି ଗୁନ୍ଦମାରି ପଡ଼ିଆ, ଯେଉଁଠି ଦିନେ ଏସ୍. ଡି. ଓ. ଙ୍କ ବିନାନୁମତିରେ ସଭା କରିବା ବେଆଇନ ଥିଲା । ସେହିଠାରେ ଏସ୍. ଡି. ଓ. ମହାଶୟଙ୍କ ଭଳି ଠିଆ ହୋଇଥାନ୍ତି ଅନୁଗତ ଭୃତ୍ୟଙ୍କ ଭଳି । ସଭା ଚାଲିଲା, ମୁଖ୍ୟମନ୍ତ୍ରୀଙ୍କୁ ସଲାମ ଦବାପାଇଁ ପୁଲିସ ଅଫିସରମାନେ ଅପେକ୍ଷା କରି ଛିଡ଼ା ହୋଇଥାନ୍ତି । ଏ ପରିବର୍ତ୍ତନ, ଏ ଦୃଶ୍ୟ ଲୋକଙ୍କୁ ଯେପରି ଆଶ୍ଚର୍ଯ୍ୟ ଲାଗୁଥାଏ ମନ ଭିତରେ ଅଜ୍ଞାତରେ ନିର୍ଭିକତା ସେପରି ତେଜି ଉଠୁଥାଏ ।

ବକ୍ତାମାନେ ପାଇକବିଦ୍ରୋହର ଇତିହାସ, ସ୍ୱାଧୀନତା ଆନ୍ଦୋଳନର ବିଜୟ ଉପରେ ଗରମ ଗରମ ବକ୍ତୃତା ଦେଲେ । କରତାଳି ଉପରେ କରତାଳି । ମୁଖ୍ୟମନ୍ତ୍ରୀଙ୍କ ବକ୍ତୃତାବେଳେ ଗୋଟିଏ ଛୋଟିଆ ଘଟଣା ଘଟିଲା । ଘଟଣା ଛୋଟିଆ କିନ୍ତୁ ତାର ତାତ୍ପର୍ଯ୍ୟ ଥିଲା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ତା'ଠାରୁ ଅଧିକ ଥିଲା ତାର ପରିସର ଏବଂ ଭବିଷ୍ୟତକୁ ବଦଳିବା ପାଇଁ ଦେଇଗଲା ନିର୍ଦ୍ଦେଶ । ଘଟଣାଟି ବା କ'ଣ ?

ପୋଡ଼ାଗଡ଼ର ଜଗନ୍ନାଥ ସାହୁ ଗୋଟିଏ ବଣିଆ, କୃଷି ବି କରେ । ସେ ଦେଖିଲା ଯେ ମନ୍ତ୍ରୀ ଲୋକଙ୍କ ପାଇଁ କ'ଣ କରିଛନ୍ତି କିଛି କହୁ ନାହାନ୍ତି । କଂଗ୍ରେସ ମନ୍ତ୍ରୀ ଲୋକଙ୍କ ପାଇଁ ଯାହା ସବୁ ହୋଇଛି କହିଲେ ସିନା ଲୋକେ ଖୁସି ହେବେ । ତେଣୁ ତା'ର ଆଉ ଧୈର୍ଯ୍ୟ ରହିଲା ନାହିଁ । ସେ ଛିଡ଼ା ହୋଇ କହିଲା, "କଂଗ୍ରେସ ରାଜୁତି ହେଲାପରେ କ'ଣ କ'ଣ ହୋଇଛି କୁହନ୍ତୁ ।"

ବିଶ୍ୱନାଥ ଦାସ ଭାବିଲେ ଏ ଲୋକଟି ଗୋଦାବରୀଶ ମିଶ୍ରଙ୍କ ଦଳର । ତାଙ୍କୁ ହଟହଟା କରିବା ପାଇଁ ଏପରି ପ୍ରଶ୍ନ ପଚାରୁଛି । ତେଣୁ ରାଗରେ ତାକୁ ଗାଳି ଗୁଲଜ କରିବାକୁ ଲାଗିଲେ । ପୁଲିସକୁ ଧ' କହିଲେ ବାନ୍ଧି ପକାଇବା ଲୋକ । ତେଣୁ ସାଙ୍ଗେ ସାଙ୍ଗେ ପୁଲିସ ଯାଇ ଜଗନ୍ନାଥ ସାହୁ ପାଖରେ ଛିଡ଼ା । ମୋର

ଆଉ କୈଫିୟତ ରହିଲା ନାହିଁ। ସମ୍ପୂର୍ଣ୍ଣ ଗ୍ରାମ ଓ ମୁଁ ତାଙ୍କ ପାଖରେ ଯାଇ ପହଞ୍ଚିଲୁ। ମୁଁ ଠିଆ ହୋଇ ମୁଖ୍ୟମନ୍ତ୍ରୀଙ୍କର ଏ ଭର୍ତ୍ସନାର ପ୍ରତିବାଦ କରି ଉତ୍ତର ଦାବୀ କଲି। ମୋତେ ଉଗ୍ରମୂର୍ତ୍ତି ଭାବରେ ଦେଖି ମୁଖ୍ୟମନ୍ତ୍ରୀ ଥଣ୍ଡା ପଡ଼ିଗଲେ ଏବଂ କୈଫିୟତ ଦେବା ଢଙ୍ଗରେ ପ୍ରଶ୍ନର ଜବାବ ଦେବାକୁ ଲାଗିଲେ। ସଭାରେ ଗୋଟାଏ ଚହଲ ପଡ଼ିଗଲା। ମୁଖ୍ୟମନ୍ତ୍ରୀ ସେ ଲୋକଙ୍କ ପାଖରେ ଜବାବ ଦେଇ ଏବଂ ତାଙ୍କୁ ଲୋକେ କୈଫିୟତ ତଲବ କରି ପାରନ୍ତି ସେକଥା ଲୋକେ ପ୍ରଥମ କରି ଅନୁଭବ କଲେ। କମ୍ କଥା ହେଲା ? ଜଗନ୍ନାଥ ସାହୁ ବଣିଆଟାଏ, ସେ ପୁଣି ଏତେ ବଡ଼ ସଭାରେ ମୁଖ୍ୟମନ୍ତ୍ରୀଙ୍କୁ ପ୍ରଶ୍ନ ପଚାରିଲା, ଲୋକଙ୍କ ଭିତରେ ଏହାର କେତେ ଗୁଡ଼ାଏ ପ୍ରଭାବ ପଡ଼ିଲା। ଲୋକଙ୍କ ମନରୁ ଭୟ ପଳେଇଗଲା, ସାହାସ ବଢ଼ିଲା ମନ୍ତ୍ରୀ, ହାକିମ ଓ ଲୋକଙ୍କ ଭିତରେ ଲୋକେ ବଡ଼, ଏକଥା ସେମାନେ ବୁଝିବାକୁ ଲାଗିଲେ। ଏହିଠାରେ କଥା ଶେଷ ହେଲା ନାହିଁ। ମୁଁ ଏ ବିଷୟରେ ନିଖିଳ ଭାରତ କଂଗ୍ରେସ କମିଟିର ସମ୍ପାଦକ କୃପାଲନୀଙ୍କୁ ଲେଖିଲି। ସେ ଲେଖିଲେ ଯେ ମୁଖ୍ୟମନ୍ତ୍ରୀ ଜଗନ୍ନାଥ ସାହୁଙ୍କୁ ବୁଝାଇ ସୁଝାଇ ଦିଅନ୍ତୁ। ଏହାପରେ ପୋଡ଼ାହାଡ଼ ଅଞ୍ଚଳ ଲଢ଼ୁଆ ଗ୍ରାମରେ ପରିଣତ ହେଲା, ଜଗନ୍ନାଥ ସାହୁ ମରିବା ଯାଏ ଜଣେ ଲଢ଼ୁଆ କର୍ମୀ ଭାବରେ କାମ କଲେ। ତାଙ୍କର ପୁଅମାନେ ଏବେ ବି ଆମ ସହିତ ସକ୍ରିୟ ଭାବରେ ଆନ୍ଦୋଳନ କରନ୍ତି।

ଯେଉଁ ସାଧାରଣ ଲୋକ ଏ ସୃଷ୍ଟିର ସୃଷ୍ଟିକର୍ତ୍ତା, ଯେଉଁମାନେ ଗଢ଼ିଛନ୍ତି ଏ ଦେଶର ନେତା, ସେମାନଙ୍କୁ ଅବମାନନା କରି କୌଣସି ନେତା ବେଶିଦିନ ରହି ପାରିବେ ନାହିଁ। ଯେଉଁମାନେ ଇତିହାସର ଏହି ନିଷ୍ଠୁର ନିର୍ଦ୍ଦେଶକୁ ଭୁଲି ଯାଆନ୍ତି, ଇତିହାସ ସେମାନଙ୍କୁ କ୍ଷମା କରେ ନାହିଁ। ନେତାମାନେ ପଛରେ ପଡ଼ି ଯାଆନ୍ତି, ଅକାମି ହୋଇଯାଆନ୍ତି, ଲୋକେ ଆଗକୁ ମାଡ଼ିଯାଆନ୍ତି।

ବିଶ୍ୱନାଥ ଦାସ ଡାକବଙ୍ଗଳାରେ ଥାଆନ୍ତି। ଦିନେ କୁମାରବସ୍ତ ଗ୍ରାମର ଗୋଲକ ପଟ୍ଟନାୟକ ଓ ଆଠ ଦଶ ଜଣ ଲୋକ ଆସି ବାହାରେ ଠିଆ ହୋଇଥାନ୍ତି। ମୁଁ ବାରନ୍ଦାରେ ମୁଖ୍ୟମନ୍ତ୍ରୀଙ୍କ ସଙ୍ଗେ କଥାବାର୍ତ୍ତା କରୁଥାଏ। ପୁଲିସ ଇନସପେକ୍ଟର ଠିଆ ହୋଇଥାନ୍ତି। ଲୋକେ ପୁଲିସ ଇନସପେକ୍ଟରଙ୍କ ଅତ୍ୟାଚାର ବିରୁଦ୍ଧରେ ଗୁହାରି କଲେ। ବିଶ୍ୱନାଥ ଦାସ ସାଙ୍ଗେ ସାଙ୍ଗେ ପୁଲିସ ଇନସପେକ୍ଟରଙ୍କୁ କହିଲେ "ମୁଁ ଲୋକଙ୍କର ଚାକର, ତମେ ମୋ ଚାକର। ତେଣୁ ଆଉ ଦିନେ ଏପରି ଅଭିଯୋଗ ଯେପରି ତୁମ ବିରୁଦ୍ଧରେ ନ ଶୁଣେ।"

ଲୋକେ ବୁଝିଲେ ଦିନ ଓଲଟି ଯାଇଛି। ଆଉ ସେ ଦିନ ନାହିଁ ଲୋକଙ୍କ ଭିତରେ ଉତ୍ସାହ ଓ ଚେତନା ବଢ଼ି ଚାଲିଲା।

ତାକ୍ତର ସାହର ଗୋଟିଏ ଗାଳରେ ଘରଟିଏ ନେଇ ଖୋର୍ଦ୍ଧାରେ ମୁଁ, ପ୍ରାଣନାଥ ପଟ୍ଟନାୟକ, ଗଙ୍ଗାଧର ମିଶ୍ର, ପର୍ଶୁରାମ ପଦ୍ମ ଫଡ଼କରାଏ, ପୂର୍ଣ୍ଣଚନ୍ଦ୍ର ମହାନ୍ତି, ଦାମୋଦର ମିଶ୍ର ରହୁଥାଉ । ଏହି ଘରଟିରେ ରହୁଛନ୍ତି ନବକୃଷ୍ଣ ଚୌଧୁରୀ, ମାଳତୀ ଚୌଧୁରୀ ଆମର ସାଙ୍ଗରେ । କାମ କରୁଛନ୍ତି କୃଷକମାନଙ୍କ ପାଇଁ । ତେବେ ସେଦିନ ଆଉ ରହିଲା ନାହିଁ ନବବାବୁଙ୍କ ପାଇଁ । ଆମକୁ ଛାଡ଼ି ଚାଲିଗଲେ ତାହାଙ୍କୁ । ଫଳେ ସେ ଦୁହେଁ ପଡ଼ିଗଲେ ସେ ଖାତରେ । ଆଉ ସେ ଉଠି ପାରଲେ ନାହିଁ ।

## ଯୁବକ ସମ୍ମିଳନୀ

ଖୋର୍ଦ୍ଧାରେ ୧୯୩୭ ରେ ଯୁବକ ସମ୍ମିଳନୀ କରିବାପାଇଁ ପ୍ରାଣନାଥ ପଟ୍ଟନାୟକ । ମୁଁ ଓ ପୂର୍ଣ୍ଣଚନ୍ଦ୍ର ମହାନ୍ତି ଠିକ କଲୁ । କାରଣ ଯୁବକମାନଙ୍କ ଭିତରେ ଜାଗରଣ ଆଣିବାକୁ ହେବ । ଯେଉଁ ଦିନଠାରୁ ଖୋର୍ଦ୍ଧାର ପାଇକ ବିଦ୍ରୋହକୁ ଇଂରେଜ ସରକାର ଦମନ କରି ପାରିଥିଲେ ସେହିଦିନରୁ ପାଇକର ଢାଲ, ତରବାରୀ ମାଟିତଳେ ଆଶ୍ରୟ ନେଇଥିଲା । ତାର ଶତ୍ରୁରକ୍ତ ପିପାସୁ ତୀକ୍ଷ୍ଣ ଉଜ୍ଜଳ ଧାରରେ ଲଗିଯାଇଥିଲା କଳଙ୍କ । ତାକୁ ପୁଣି ଉପରକୁ ଟେକି ଧରି ଖୋର୍ଦ୍ଧାର ବୁଢ଼ା ଓ ଭେଣ୍ଡିଆମାନେ ରାସ୍ତାଉପରେ ବିରାଟ ଥାଟରେ ଜୟଯାତ୍ରା କରିବେ ଏହା ହିଁ ଥିଲା ଏହି ସମ୍ମିଳନୀର ଲକ୍ଷ୍ୟ । କାହିଁକି ଥିଲା ଏ ଲକ୍ଷ୍ୟ ? ଯେଉଁ ସାହସ ଓ ବଳ ସେମାନଙ୍କର ଭାଙ୍ଗିଯାଇଥିଲା, ଯେଉଁ ଆଶା ସେମାନେ ହରାଇ ଥିଲେ ସେହି ସାହାସ ଓ ବଳ ଫେରାଇ ଆଣିବା, ସେମାନଙ୍କ ପ୍ରାଣରେ ପୁଣି ନୂତନ ଆଶାର ସଞ୍ଚାର କରିବା ଥିଲା ଉଦ୍ୟୋକ୍ତାମାନଙ୍କର ଉଦ୍ଦେଶ୍ୟ ।

ଗୁରୁଜୀଙ୍କ ପଡ଼ିଆରେ ସମ୍ମିଳନୀର ଆୟୋଜନ ହେଲା ! ସମ୍ମିଳନୀ ଲକ୍ଷ ଲୋକମୁଣ୍ଡିଆ ସଭାମଞ୍ଚ ହେଲା । ପ୍ରାୟ ଛଅ ସାତ ହଜାର ଲୋକ ଖୋର୍ଦ୍ଧା ଦାଣ୍ଡରେ ଧାଡ଼ିବାନ୍ଧି ଚାଲିଲେ । ସାମନାରେ ଆଗକାଳରେ ଯୁଦ୍ଧବାଜା, ତାରି ତାଳେ ୨ ନାଚ ଉଠୁଥାଏ ଶୋଭାଯାତ୍ରାକାରୀଙ୍କର ପାଦ ଆଉ ହାତର ଉଜ୍ଜ୍ୱଳ ଢାଲ, ତରବାରୀ । ବୁଢ଼ାମାନଙ୍କ ମୁଣ୍ଡରେ କେଉଁ କାଳର ଓଡ଼ିଶା ମହାରାଜାମାନଙ୍କର ଦେଇଥିବା ଗୌରବ ମଣ୍ଡିତ ପାଟର ପାଗଭିଡ଼ା ହୋଇଥାଏ । ଉତ୍ତରାଧିକାରୀ ସୂତ୍ରେ ବଡ଼ପୁଅ ତାର ହକ୍ଦାରଭାବେ କେତେ ଯତ୍ନରେ ଗର୍ବର ଏହି ଅମୂଲ୍ୟ ସମ୍ପତ୍ତିକୁ ପୋକ, ଅସରପା ହାତରୁ ରକ୍ଷା ନ କରିଛି ! ଆଜି ସେ ତାକୁ ମୁଣ୍ଡରେ ନ ଭିଡ଼ି ଆସିବ ତ ଆଉ ଆସିବ କେବେ ? ଇଂରେଜ ସରକାର ବିରୁଦ୍ଧରେ ଆଉ ଏକଦଫା ଲଢ଼େଇରେ ସେ ଯେ ଆଜି ବିଜୟୀ । ତାର ବିଜୟର ନିଶାଣ ସେ ଧରି ଚାଲିଛି ଆଗରେ ।

ସାଇକବାଡ଼ୀ, ପାଇକ ଖେଳର ନୂତନ ଦେଖଣୀ ହକ୍କା ପଡ଼ୁଥାଏ । ଇଂରେଜ ସରକାରଙ୍କର ସୈନ୍ୟମାନେ ଏଣେତେଣେ ଯୋଦ୍ଧାଙ୍କୁର ଘାଲଟି ରଇଥିଲେ, ନୈଋତ୍ୟର କୋଣରେ ସୈନ୍ୟମାନେ ଏକାବେଳକେ ସ୍ଥିର ହୋଇ ଯାଇଥିଲେ ସେମାନେ ବଡ଼ ବଡ଼ ଅଣ୍ଟିଲେଣ, ଆଁ ଲଣ ଆବା ଜାବା ହୋଇ ଦୃଶ୍ୟର ଫନ୍ଦରେ ଛନ୍ଦା ହୋଇ ଏହି ବଟୁକ ବଜ୍ରମୁଷ୍ଠ ଥାଟକୁ ଅନାଇ ରହୁଥାନ୍ତି । ସମ୍ମିଳନୀର ସଭାପତି ଥିଲେ ଶଚୀନ୍ଦ୍ର ପଟ୍ଟନାୟକ, ମଧ୍ୟ ଅତିଥି ଭାବରେ ବମ୍ବେରୁ ଆସିଥିଲେ ସୋଲି ବାଟଲିବାଲା । ସମ୍ମିଳନୀ ହେଲା, ବକ୍ତୃତା ହେଲା । ଅନ୍ତରେ ଗୌରବମୟ ଅଧ୍ୟାୟମାନ ଖୋଲି ହେଲା, ନୂତନ ଯୁଗର, ନୂତନ ସଂଗଠନ, ନୂତନ ସଂଗ୍ରାମର ଡାକରା ଦିଆଗଲା, ନୂତନ ଅଧ୍ୟାୟ ଲେଖା ଆରମ୍ଭ ହେଲା । ବୃଦ୍ଧ ଓ ଯୁବକ ସମସ୍ତେ ଅନୁପ୍ରାଣିତ ହେଲେ । ଉନ୍ମାଦନାରେ ବୃଦ୍ଧ ଯୁବକ ସମ୍ମେନ ସମକକ୍ଷ ହୋଇ ଠିଆ ହେଲେ । ନୂତନ ଯୁଗର ଡାକରାରେ ଜବାବ ଦେବାପାଇଁ ଶପଥ ନେଲେ ।

ଅସୀମ ସାହାସୀକତାପୂର୍ଣ୍ଣ ତରବାରୀ ଖେଳ କୌଶଳମାନ ଦେଖାଇଲେ ବୃଦ୍ଧ ଓ ଯୁବକ ମିଶି । ସମସ୍ତ ସ୍ଥାନଟା ଆନନ୍ଦ ମୁଖର ହୋଇ କଟିଗଲା ସଭାସ୍ଥଳରେ ।

ଯେଉଁ ଖୋର୍ଦ୍ଧାରେ ଛଅ ଇଞ୍ଚରୁ ଅଧିକା ଲମ୍ବ ଛୁରୀ ଓ ତିନୋଟି ଉଚ୍ଚ ଢେଙ୍କା ଧରିବା ମନାଥିଲା ସେହି ଖୋର୍ଦ୍ଧାରେ ଶହ ଶହ ତରବାରୀର ଶୋଭାଯାତ୍ରା ! ଲୋକଙ୍କ ପ୍ରାଣରେ ଆସିଲା ନୂତନ ଆଶା, ସାହସ, ଦମ୍ଭ । ଠିଆହେଲେ ଓଡ଼ିଆ ପୁଏ । ଏଥର ବିଜୟର ରଥଯାତ୍ରା ଆଗକୁ ।

ଏହା ପରେ ପରେ ହେଲା ଓଡ଼ିଶାର ଯୁବକ ସମ୍ମିଳନୀ କଟକରେ । ରାମକୃଷ୍ଣ ପତି, ଗଙ୍ଗାଧର ମହାପାତ୍ର, ବୈଦ୍ୟନାଥ ରଥ, ଭଗବତୀ ବାବୁ, ଗୁରୁଚରଣ, ଅନନ୍ତ ପଟ୍ଟନାୟକ ପ୍ରଭୃତି ଥିଲେ ଏହାର ଉଦ୍ୟୋକ୍ତା । ଜୟପ୍ରକାଶ ନାରାୟଣ ଥିଲେ ଏହି ସମ୍ମିଳନୀର ସଭାପତି । ଛାତ୍ର ଓ ଯୁବକ ସାମ୍ରାଜ୍ୟବାଦ ବିରୋଧୀ ସଂଗ୍ରାମରେ ସଂଗଠିତ ହେବେ ଏବଂ ସଂଗ୍ରାମର ସୈନିକ ହେବେ । ଏହାହିଁ ଥିଲା ସେତେବେଳେ ଆବଶ୍ୟକ ।

## ବଣୁଆ ଲୋକେ ଚେଇଁଲେ !

ଚନ୍ଦକା ଗୋଟିଏ ଛୋଟିଆ ଥାନା । ଘୋର ଜଙ୍ଗଲ । ଅଧିକାଂଶ ଲୋକ ଶବର । ସଭ୍ୟତା ଏ ଅଞ୍ଚଳକୁ ଛୁଇଁ ନ ଥିଲା । କାଠକାଟି ସେମାନେ ଚଳନ୍ତି । ବର୍ଷକୁ ସଡ଼କ କରୁଥିବା ୧୦, ୧୫ଟା ମଣିଷ ବାଘ ଖାଏ ଦିନ ଦ୍ୱିପହରେ । ଏମାନଙ୍କୁ ପ୍ରଥମେ ନେଇଥିଲେ ଭୁବନେଶ୍ୱର ଜବାହରଲାଲ ଆସିଲା ଦିନ । ନିର୍ବାଚନ ବେଳେ

ଏମାନଙ୍କ ଗାଁ ଦେଇ ଯାଇ ବନ୍ଧୁକ କଥା କହିଥିଲେ । ନିର୍ବାଚନ ପରେ ପୁଣି ନୂଁ ଓ ଦାମୋଦର ମିଶ୍ର ଏମାନଙ୍କ ଗାଁକୁ ଯାଇଥିଲେ ଥରକୁ ଥର । ଏମାନଙ୍କ ଘରେ ରହି, ଖାଇ, ଆଉ ସେମାନଙ୍କୁ ଅବସ୍ଥାର ପରିବର୍ତ୍ତନ ପାଇଁ ବାଟ ବତାଉ । ରାସ୍ତା, ପାଠଶାଳା, ଡାକ୍ତରଖାନା କିଛି ଏ ଅଞ୍ଚଳରେ ନଥିଲା । ଗାଁରେ ଦଖ୍ମାନ କରୁ । ଏଥର ଏମାନେ ହଜାର ହଜାର ସଂଖ୍ୟାରେ ଠେଙ୍ଗା ସବୁ ଧରି ଖୋର୍ଦ୍ଧା ସଭାକୁ ଆସିଲେ । ମୁହଁରେ ଧ୍ୱନି "ଜଙ୍ଗଲ ଆଇନ ବଦଳାଅ, ସରବରାକାର ପ୍ରଥା ରଦ୍ଦ ହେଉ, କାଠ, ବାଉଁଶ ମିଳୁ ଇତ୍ୟାଦି" ଶବ୍ଦ ଗୁଡ଼ାକ ପୁଣି ଉଠିଲେଣି । ସେମାନେ ପୁଣି ଏଥର ପାହିଚୁଣ୍ଡ କରି ଖୋର୍ଦ୍ଧା ଦାଣ୍ଡରେ ବୁଲିବେ । ସବୁ ଅଘଟଣ ଘଟିଲା । ପୁରୁଣା ସାମନ୍ତବାଦୀମାନଙ୍କର ମନ ଭାଙ୍ଗିଲେଣି । କିନ୍ତୁ ରଥଚକ ଆଗକୁ ଗଡ଼ିଲା । ଏହି ଅଞ୍ଚଳରେ ଚାଷୀଆ କୃଷକ ସଭା, ଯୁବକ ସଂଗଠନମାନ ଗାଁକୁ ଗାଁ ଓ ଥାନାରେ ଗଢ଼ା ହୋଇଗଲା । ଚନ୍ଦକାର ଉପେନ୍ଦ୍ର ଦାସ, ଛତାବରର ଅନନ୍ତ ଚେଙ୍ଗା, ନରଞ୍ଜନ ଗ୍ରାମଣ୍ଡୁବର ବ୍ରଜବନ୍ଧୁ ମହାନ୍ତି, କାଟେଣୀର ଲକ୍ଷ୍ମୀଧର ଷଡଙ୍ଗୀ ପ୍ରଭୃତି ଯୁବକ ଆଗେଇ ଆସିଲେ । ଗୁଣନିଧି ସାମନ୍ତରାୟ ଆଗରୁ କଂଗ୍ରେସ ଆନ୍ଦୋଳନରେ ଜେଲ ଯାଇ ପାଟଣା କେମ୍ପ ଜେଲରେ ଥିଲେ । ସେ ଆସି ଦାରୁଠେଙ୍ଗରେ ଗୋଦାମଟିଏ କରିଥାନ୍ତି । ଆମେ ଗଲେ ସେ ଆମର ଚର୍ଚ୍ଚା କରନ୍ତି ଏବଂ ସଭା ଆଦିର ବ୍ୟବସ୍ଥା କରିଦିଅନ୍ତି ।

## ନୂଆ ଯୁଗର ମୂଳଦୁଆ ପଡ଼ିଲା

୧୯୩୬ରେ ଗୁରୁଚରଣ ପଟ୍ଟନାୟକ ବନାରସ ବିଦ୍ୟାପୀଠରୁ ଫେରି କଲିକତାରେ କିଛିଦିନ ରହିଲେ । ପୂର୍ବ ବ୍ୟବସ୍ଥା ଅନୁଯାୟୀ ସେ ବଙ୍ଗଳା କମ୍ୟୁନିଷ୍ଟ ପାର୍ଟିର ସଭ୍ୟ ହେଲେ । ଏହା ପରେ ପରେ ଅକ୍ଟୋବର ମାସରେ ପ୍ରାଣନାଥ ପଟ୍ଟନାୟକ ମଧ୍ୟ କଲିକତା ଯାଇ ପାର୍ଟିର ସଭ୍ୟ ହେଲେ, ଭଗବତୀ ବାବୁ ତାଙ୍କର ଭଉଜଙ୍କ (ଦିବ୍ୟସିଂହ ପାଣିଗ୍ରାହୀଙ୍କ ସ୍ତ୍ରୀ) ଚିକିତ୍ସାପାଇଁ କଲିକତା ଯାଇଥିଲେ । ସେ ମଧ୍ୟ ସେହିଠାରେ ଡିସେମ୍ବର ମାସରେ ପାର୍ଟି ସଭ୍ୟ ହେଲେ । ଏଥର ଓଡ଼ିଶାରେ କମ୍ୟୁନିଷ୍ଟ ପାର୍ଟି ଗଢ଼ିବାର ବାଟ ଫିଟି ଗଲା । କାରଣ ପାର୍ଟିଟିଏ ଗଢ଼ିବାପାଇଁ ଅନ୍ତତଃ ୩ଜଣ ସଭ୍ୟ ଦରକାର । ୧୯୩୬ ଶେଷ ଆଡ଼କୁ ଓଡ଼ିଶାର ପ୍ରଥମ କମ୍ୟୁନିଷ୍ଟ ପାର୍ଟି ଗଠନ କରାଗଲା । ସେତେବେଳେ ଭାରତ ବର୍ଷରେ କମ୍ୟୁନିଷ୍ଟ ପାର୍ଟି ବେଆଇନ । ନେତାମାନେ ଗୋପନରେ ଥାଇ କାମ କରୁଥାନ୍ତି । ଅନ୍ୟମାନେ ବାହାରେ ରହିଲେ ବି କିଏ କମ୍ୟୁନିଷ୍ଟ ପାର୍ଟିର ସଭ୍ୟ ଜାଣିବା ମୁସ୍କିଲ । କମ୍ୟୁନିଷ୍ଟ ପାର୍ଟି ନାଁରେ ଖୋଲାଖୋଲି କୌଣସି କାମ ହେଉ ନଥିଲା । ଏମାନେ

କୃଷକ, ଶ୍ରମିକ, ଛାତ୍ର ଓ କଂଗ୍ରେସ ସଂଗଠନ ଭିତରେ କାମ କରୁଥିଲେ । କଂଗ୍ରେସ ସାମ୍ୟବାଦୀ ଦଳ ଗଠନ ପରେ ସେହି ଦଳରେ ମଧ୍ୟ ସେମାନେ କାମ କଲେ । ମୋର ଯେତେଦୂର ମନେହୁଏ, ଓଡ଼ିଶାର ଯେଉଁ ପ୍ରଥମ କମ୍ୟୁନିଷ୍ଟ ପାର୍ଟି ଗଠନ କରାହେଲା ସେଥିରେ ଗୁରୁଚରଣ ପଟ୍ଟନାୟକ, ଅନନ୍ତ ପଟ୍ଟନାୟକ, ବୈଦ୍ୟନାଥ ରଥ, ପ୍ରାଣନାଥ ପଟ୍ଟନାୟକ ଓ ଭଗବତୀ ପାଣିଗ୍ରାହୀ ସଭ୍ୟ ଥିଲେ ।

୧୯୩୭ ରେ କଲିକତାରେ ନିଖିଳ ଭାରତ କଂଗ୍ରେସ କମିଟି ବୈଠକ ବସିଲା । ମାନ୍ଦ୍ରାଜର ମୁଖ୍ୟମନ୍ତ୍ରୀ ରାଜଗୋପାଳାଚାରୀ ବାଟଲିବାଲାଙ୍କୁ ବନ୍ଦୀ କରିଥାନ୍ତି । ଏଣେ ସୁବାଷ ଚନ୍ଦ୍ର ବୋଷ ମଧ୍ୟ ବନ୍ଦୀ ହୋଇଥାନ୍ତି । ଏପରି ଏକ ପରିସ୍ଥିତିରେ କଲିକତା ବୈଠକ ଏକ ସରଗରମ ଅବସ୍ଥାରେ ବସିଥାଏ । ମୁଁ ଓ ପ୍ରାଣନାଥ ବାବୁ ଦୁଇଜଣ କଲିକତା ଯାଇଥାଉଁ । ସେହିଠାରେ ନୃପେନ ଚକ୍ରବର୍ତ୍ତୀଙ୍କ ସହିତ ପରିଚୟ ପତ୍ର ଘେନି ଦେଖା କରିବାକୁ ଗଲୁ । ନୃପେନ ଚକ୍ରବର୍ତ୍ତୀ ଯେ ଜଣେ କମ୍ୟୁନିଷ୍ଟ ସେ କଥା ମୁଁ ଜାଣି ନଥାଏ । ସେ ଯାହାହେଉ ତାଙ୍କ ସହିତ ପରିଚୟ ହେଲାପରେ ଓ କଲିକତାରେ ଥିବା ସମୟରେ ଅନ୍ୟମାନଙ୍କ ସହିତ କଥାବାର୍ତ୍ତା ପରେ ମୁଁ କଟକ ଫେରି କମ୍ୟୁନିଷ୍ଟ ପାର୍ଟିର ସଭ୍ୟ ହେଲି ।

ଗଙ୍ଗାଧର ମିଶ୍ର, ପର୍ଶୁରାମ ପଦାଢ଼କରଣ, ଦାମୋଦର ମିଶ୍ର, ପୂର୍ଣ୍ଣଚନ୍ଦ୍ର ମହାନ୍ତି, ପ୍ରାଣନାଥ ପଟ୍ଟନାୟକ ଓ ମୋତେ ନେଇ ୧୯୩୭ ଶେଷ ଆଡ଼କୁ ଓଡ଼ିଶାର ପ୍ରଥମ ବାଧ୍ୟବଦ୍ଧ କମ୍ୟୁନିଷ୍ଟ ପାର୍ଟି ଗଠନ କରାଗଲା ଏବଂ ଏହାର ପ୍ରଥମ ବୈଠକ ଖୋର୍ଦ୍ଧାଠାରେ ବସିଥିଲା ।

ମାର୍କସବାଦର ବୈଜ୍ଞାନିକ ଭିତ୍ତି ଉପରେ ନୂଆ ସମାଜ, ନୂଆ ରାଷ୍ଟ୍ର, ଶ୍ରେଣୀହୀନ ଶୋଷଣହୀନ ଶ୍ରମଜୀବୀ ଜନତାର ସାମ୍ୟବାଦୀ ରାଷ୍ଟ୍ରଗଠନ ପାଇଁ କମ୍ୟୁନିଷ୍ଟ ପାର୍ଟିର ମୂଳଦୁଆ ସେଦିନ ପଡ଼ିଲା । ଓଡ଼ିଶାର ବୀର ଭୂମି ଖୋର୍ଦ୍ଧାରେ । ସେଦିନର ଏହି ଛୋଟିଆ ପାର୍ଟିଟି ସାରା ଓଡ଼ିଶାରେ ତାର ଶାଖା ପ୍ରଶାଖା ମେଲି ଏକ ଦ୍ରୁମରେ ପରିଣତ ହେଲାଣି । ସଚ୍ଚୋଟ, ନିଷ୍ଠାପର, କର୍ତ୍ତବ୍ୟପରାୟଣ, ବହୁ କର୍ମୀ ଯେଉଁମାନଙ୍କର ଶୋଷିତ କୃଷକ, ଶ୍ରମିକଙ୍କ ଉପରେ ବିଶ୍ୱାସ ଅଛି । ସେମାନଙ୍କୁ ଶୋଷଣ ମୁକ୍ତ କରିବା ପାଇଁ ଯେଉଁମାନେ ବଦ୍ଧ ପରିକର ସେମାନେ ସମସ୍ତେ ଏହି କମ୍ୟୁନିଷ୍ଟ ପାର୍ଟି ଭିତରେ ଠୁଳ ହେଲେଣି. କଂଗ୍ରେସ ଥିଲା ବୁର୍ଜୁଆ ଧନିକ ଶ୍ରେଣୀର ସଂଗଠନ-ସାମ୍ରାଜ୍ୟବାଦ ବିରୋଧୀ ମଞ୍ଚ । ଇଂରେଜ ସରକାର ବିରୁଦ୍ଧରେ ଲଢ଼େଇର ଏକ ସର୍ବଦଳୀୟ ମଞ୍ଚ । ଏଥର କିନ୍ତୁ ସର୍ବହରା ଶ୍ରମିକ

ଶ୍ରେଣୀ, କୃଷୀ ମୂଲିଆ ଖଟିଖିଆ ଜନତା ତାର ନିଜର ଲଢ଼ୁଆ ସଂଗଠନ କମ୍ୟୁନିଷ୍ଟ ପାର୍ଟିକୁ ପାଇଲା ଯେ ନା କେବଳ ତାର୍ ଶ୍ରେଣୀ ସ୍ୱାର୍ଥ ପାଇଁ ଲଢ଼ିବ ଅନ୍ୟ କୌଣସି ପାର୍ଟି ବା ଦଳ ନୁହେଁ ।

ସମସ୍ତ ବିଶ୍ୱର ଭବିଷ୍ୟତ ହେଉଛି ଏହି ପାର୍ଟି ।

## ଅନ୍ଧାରି ମୁଲକରେ ପହୁଡ଼ି ଜଳିଲା

ସୁବାଷ ଚନ୍ଦ୍ର ବୋଷ ନିଖିଳ ଭାରତ କଂଗ୍ରେସର ସଭାପତି । ନିର୍ବାଚନ ପରେ ସାରା ଭାରତରେ ଜନଜାଗରଣ ଦେଖା ଦେଇଛି । କୃଷକ ଆନ୍ଦୋଳନର ଜୁଆର ସମସ୍ତ ଓଡ଼ିଶାରେ ମାଡ଼ି ଚାଲିଛି । ଖୁଣ୍ଟାଦ୍ୱାରରେ ପଣ୍ଡାପାଣ୍ଡାଙ୍କ ନେତୃତ୍ୱରେ ଜମିଦାରୀ ଅଞ୍ଚଳର ଜଙ୍ଗଲ କାଟି ବସବାସ କରିବାର ସତ୍ୟାଗ୍ରହ ଆରମ୍ଭ ହେଲା । ପୁରୀ ଜିଲ୍ଲାର, ଗାଁ ଗଣ୍ଡା ମାନଙ୍କରେ ଅସଂଖ୍ୟ ସଭା ସମିତି କରି ଜମିଦାର ଓ ମଠ ମହନ୍ତମାନଙ୍କର ଧର୍ମ ନାମରେ ଶୋଷଣ ଓ ଅତ୍ୟାଚାର ବିରୁଦ୍ଧରେ ପ୍ରଚାର କରିବାକୁ ଲାଗିଲୁ । ସେତେବେଳେ ସଭାଟିଏ କରିବାକୁ ହେଲେ ଆମେ ନିଜେ ନାଗରାଟିଏ ଧରି ଗାଁ ଗାଁ ବୁଲି ପ୍ରଚାର କରୁ । ପୁଣି ସଭାପାଇଁ ସତରଞ୍ଜି କମ୍ବଳ ମସିଣା ନିଜେ ବୋହି ଆଣି ପକାଉ । ଟେବୁଲ ମିଳିଲେ ତାକୁ ବି ନିଜେ ବୋହି ଆଣୁ । ସଭାରେ ନିଜେ ବକ୍ତୃତା ଦେଉ । ମୋଡ଼ା ସିଲେଇଠାରୁ ଚଣ୍ଡିପାଠ ପର୍ଯ୍ୟନ୍ତ ସବୁ କାମ କରିବାକୁ ପଡ଼େ ଆମକୁ । ଆଜିକାଲି ତ ପ୍ରଚାର କହିଲେ ମଟର, ମାଇକ । ମୂଲିଆ ଲଗେଇ ସବୁ କାମ ହେବ ସଭାର । ବକ୍ତାଙ୍କ ପାଇଁ ଫୁଲମାଳ । ଏବେ ସବୁ କଥାରେ ଟଙ୍କା ହେଲାଣି ମୂଳ । ଛାଡ଼ ଏ ସବୁ କଥା ।

କେନାପୁରରେ ବିରାଟ କୃଷକ ସମ୍ମିଳନୀ ହେଲା । ପନ୍ଦର ହଜାରରୁ ବେଶୀ ଲୋକ ଆସିଲେ । ଢେଙ୍କାନାଳରୁ ମଧ୍ୟ ଜଙ୍ଗଲ ବାଟେ ବହୁ ଲୋକ ଆସିଲେ ସଭାକୁ । ଏଠେତ ବଡ଼ କୃଷକ ଆନ୍ଦୋଳନର ଢେଉ ନେଇ କ'ଣ ଗଡ଼ଜାତ ଅନ୍ଧାରି ମୁଲକର ପ୍ରତିନିଧିମାନେ । ସେ ଢେଉ ମାଡ଼ିଗଲା ଢେଙ୍କାନାଳ ଭିତରକୁ ।

ମୋଗଲବନ୍ଦୀ ଓଡ଼ିଶାରେ ଲୋକ ଭୋଟ ଦେଲେ, କଂଗ୍ରେସ ମନ୍ତ୍ରୀମଣ୍ଡଳ ଗଢ଼ିଲା, ଲୋକେ ଚେଇଁ ଉଠିଲେ । ପଡ଼ୋଶୀ ଗଡ଼ଜାତ ରଣପୁର, ନୟାଗଡ଼, ଦଶପଲ୍ଲା ପ୍ରଭୃତି ଗଡ଼ଜାତ ଅଞ୍ଚଳ । ସେଠାକାର ଲୋକଙ୍କ ମନ ଚଞ୍ଚଳ ହୋଇ ଉଠିଲା । ସେମାନେ ଭାବିଲେ ତାଙ୍କ ଅଞ୍ଚଳରେ ଗୋଟାଏ ରଜା କାହିଁକି ମନମୁଖୀ ଶାସନ କରିବ । ଏହି ସମୟରେ ଓଡ଼ିଶାରେ ଗଡ଼ଜାତି ଶାସନ ଉପରେ ଏକ

ବେସରକାରୀ ତଦନ୍ତ କମିଟି ବସିଲା Orissa state people's Enquiry Committee. ଏଥିରେ ସଭ୍ୟ ଥିଲେ ହରେକୃଷ୍ଣ ମହ୍ତାବ, ଲିଙ୍ଗରାଜ ମିଶ୍ର, ମୋହନ ପଟ୍ଟନାୟକ ଓ ବଳବନ୍ତ ରାଓ ମେହେତା । ଏମାନେ ଗଡ଼ଜାତ ବିଷୟରେ ବହୁ ଖବର ସଂଗ୍ରହକରି ଏକ ରିପୋର୍ଟ ପ୍ରକାଶ କଲେ ଏଥିରେ ଗଡ଼ଜାତ ଶାସନର ବହୁ ଅଜଣା ପଟାରେ ପଡ଼ିଲା । ଗଡଜାତର ପ୍ରଜାମାନେ ରାଜଶାସନର ଅତ୍ୟାଚାର ଶୋଷଣରେ ସଢ଼ୁଥିଲେ, ସେମାନଙ୍କ ଭିତରେ ଅସନ୍ତୋଷ ଓ ବିଦ୍ରୋହର ନିଆଁ କୁହୁଳୁ ଥାଏ । ଖାଲି ବାଟ ଖୋଜୁଥାଏ ଜଳିଉଠିବା ପାଇଁ ।

ଏହି ଘଟଣା ଲେଖିଲାବେଳେ ଭୟଙ୍କର ଘଟଣା ମନେପଡ଼େ । ମୁଁ ଗଙ୍ଗାଧର ମିଶ୍ର ଖୋର୍ଦ୍ଧା ମୁକ୍ତିଆର ଖାନାରେ ବସିଥାଉ । ମିଶ୍ରେ ରଣପୁରର ଲୋକ, ପଢିଲେଇ ଆସି ଖୋର୍ଦ୍ଧାରେ ରହୁଥାନ୍ତି । ରଣପୁରର କେତେ ଲୋକ ଆସି ମିଶ୍ରଙ୍କ ସାଙ୍ଗରେ କଥା ହେଲେ । ରଣପୁରରେ ଆନ୍ଦୋଳନ କରିବା ପାଇଁ ସେମାନେ ମିଶ୍ରଙ୍କୁ ଅନୁରୋଧ କଲେ । ଆନ୍ଦୋଳନ କାର୍ଯ୍ୟ ଯୁକ୍ତ ହେଲେ ମିଶ୍ରଙ୍କୁ ରଜା କରିବାକୁ ଜବାବ ଦେବାକୁ ମଧ୍ୟ କୁଣ୍ଠିତ ହେଲେ ନାହିଁ । ମିଶ୍ରେ ଖଣ୍ଟି ରହସ୍ୟ ଲୋକ ହେ, ରହସ୍ୟରେ ଅନେକ କଥା ତାଙ୍କ ସାଙ୍ଗରେ ହେଉଥାନ୍ତି । ଶେଷରେ କୃଷକ ସଭାର ଶତେ ସଭ୍ୟ କରିଆସିଲେ ସେ ରାଜା ହେବା କଥା ବିଚାର ହେବ ବୋଲି କହି ଟେକ ବଢ଼ାଇଦେଲେ ।

ଏମାନେ ଏହିଠାରୁ ଫେର ପ୍ରକୃତରେ କାମରେ ଲାଗିଲେ । ଲୁଚି ଚୋରି ଅନେକ ବୈଠକ କଲେ ଏବଂ କୃଷକ ସଭାର ସଭ୍ୟ ମଧ୍ୟ କଲେ । ଭିତରେ ଭିତରେ ରଣପୁରରେ ଆନ୍ଦୋଳନର ଶୁଭ ଘଟିଲା । ରଘୁନାଥ ସେ ପୂର୍ବରୁ ଗଙ୍ଗାଧର ମିଶ୍ରଙ୍କ ପାଖରେ ରହି ଖବର କାଗଜ ବାଣ୍ଟୁଥିଲେ । ସେ ରଣପୁରରେ ପ୍ରକାଶ୍ୟରେ ଆନ୍ଦୋଳନ ସଙ୍ଗଠନ କରିବାକୁ ଓ ସଭ୍ୟ କରିବାକୁ ଲାଗିଲେ ।

ଓଡ଼ିଶାରେ କୃଷକ ସଭା ତରଫରୁ ମାଳତୀ ଚୌଧୁରୀ ନବକୃଷ୍ଣ କରଙ୍କ ସହାୟତାରେ 'କୃଷକ' କାଗଜ ବାହାରୁ ଥାଏ । 'ମାତୃଭୂମି' ଅଫିସ ସାମନାରେ ଗୋଟିଏ ଭଙ୍ଗା ଦରଦରା ଘ୍ରେଟିଆ କୋଠାଘରେ ଏହି କାଗଜ ପ୍ରକାଶ ପାଇଁ ଭଗବତୀ ବାବୁ, ଗୁରୁ ଚରଣ ପଟ୍ଟନାୟକ, ବୈଦ୍ୟନାଥ ରଥ, ଅନନ୍ତ ପଟ୍ଟନାୟକ କାମ କରନ୍ତି । ଏହି କାଗଜ ଓଡ଼ିଶାରେ ନୂତନ ଜାଗରଣ ଓ ସଂଗଠନ ଗଢ଼ିବାରେ ଏକ ତାଜା ଓ ଭୟଙ୍କର ଧାରୁଆ ଅସ୍ତ୍ର ହୋଇ ଛିଡା ହୋଇଥାଏ । ଭଗବତୀ ବାବୁ ପ୍ରଭୃତି ଏହି କାଗଜକୁ ବାହାର କରିବାପାଇଁ ଲେଖିବା, କାଗଜ ଭାଙ୍ଗିବା, ଠିକଣା ଲେଖିବା ଓ ଟିକେଟ ମାରି ଡାକଘରେ ପକାଇବା ଯାଏ ସବୁକାମ କରନ୍ତି । ଏମାନେ

ଯେ ଦରପୋଡ଼ା ଲୋକଥିଲେ ତା' ନୁହେଁ । ସେମାନେ ବିଶ୍ୱବିଦ୍ୟାଳୟର ଉଚ୍ଚ ଡ଼ିଗ୍ରୀ ଧାରିଥିଲେ । ଆଜିକାଲିକାର ଶିକ୍ଷିତ ଲୋକେ ଏମାନଙ୍କୁ ସମାଜ ବିରୋଧୀ ବୋଲି ଭାବନ୍ତି । କିନ୍ତୁ ସେମାନେ ଏହା କରୁଥିଲେ ନୂତନ ବୈପ୍ଳବିକ ମୂଲ୍ୟର ମୂଳଦୁଆ ପକାଇବା ପାଇଁ ଦେଶରୁ ଓ ସମାଜରୁ ଶୋଷଣ ଓ ଅତ୍ୟାଚାରର ଲୋପ କରିବା ପାଇଁ ।

ସେତେବେଳେ ଏମାନେ କୁହନ୍ତି, ବିଆଳି ଗୃହଅଣାର ଜଣି କାଗଜରେ ଏକାକ୍ତି କ୍ଲାର୍କ ଅଫିସରେ ଖାଉଥାନ୍ତି ଓ କାମ କରୁଥାନ୍ତି । ପାଞ୍ଚଲା ହୋଇ ଜଣେ ଯୁବକ ସନ୍ଧ୍ୟା ଘରେ ଆସିଲେ । ଭଗବତି ବାବୁ ତାଙ୍କୁ ଡାକି ତାଙ୍କ ସଙ୍ଗେ ଗୋପନରେ କେତେ ସମସ୍ୟା କଥାବାର୍ତ୍ତା ହେଲେ । ଏ ଯୁବକଟି ହରେକୃଷ୍ଣ ବୈଷ୍ଣବ ପଟ୍ଟନାୟକ । ପ୍ରବାସ ବୋର୍ଡ କଂଗ୍ରେସ ସଭାପତି ହେବାରୁ ସେ ତାଙ୍କୁ ଅଭିନନ୍ଦନ ବାର୍ତ୍ତା ପଠାଇ ଥିଲେ, ଏହା ଖବର କାଗଜରେ ପ୍ରକାଶ ପାଇଥିଲା । ଢେଙ୍କାନାଳର ରାଜା ଏହା ଦେଖି ତାଙ୍କୁ ତଡ଼ାଇଲେ । ତେଣୁ ଅତ୍ୟାଚାରର ଭୟରେ ସେ ଆସିଥିଲେ ଭଗବତି ବାବୁଙ୍କ ପାଖକୁ ପରାମର୍ଶ ପାଇଁ । ଏଇଠାରେ ଭଗବତି ବାବୁ ପ୍ରଭୃତିଙ୍କ ସଙ୍ଗେ ଢେଙ୍କାନାଳରେ ଆନ୍ଦୋଳନ କରିବାର ବିଭିନ୍ନ ପ୍ରକାର ତରିକା ବିଷୟରେ ସଫୁଧା ହେଲା ଏବଂ ସେ ଫେରିଗଲେ । ମହେଶ୍ୱର, ସୁବାହୁ ସିଂ, ହରମୋହନ ପଟ୍ଟନାୟକ, ନରୋତ୍ତମ ପ୍ରଭୃତି ଏକାଠି ମିଶିଲେ ।

ଗୋପନରେ ଚାଲିଲା କାମ ଏବଂ ସଙ୍ଗଠନ ଗଢ଼ା । ଶେଷରେ ସେଠି ଗୋଟିଏ ଯୋଗରେ ବହୁ ମୁଖିଆ ଲୋକ ଓ ସାଧାରଣ ଲୋକେ ମଧ୍ୟ ଏକତ୍ରିତ ହେଲେ ଏବଂ ଗଡ଼ (ଢେଙ୍କାନାଳ ସହର) ଆକ୍ରମଣ କରିବାର ଦିନ ସ୍ଥିର ହେଲା । ରାଜା ଏହାର ସୁରାଗ ଆଦୌ ପାଇଲେ ନାହିଁ ।

## ଅତ୍ୟାଚାରର ଦୁର୍ଗ ଉପରେ ମଣିଷୀ ମାଡ଼

ନିର୍ଦ୍ଦିଷ୍ଟ ଦିନର ପୂର୍ବ ରାତିରୁ ଲୋକେ ପ୍ରତ୍ୟେକ ଗ୍ରାମରୁ ଟେଣ୍ଟା, କୁରାଢ଼ି, ବର୍ଚ୍ଛା, ଶର, ଧନୁ, ଭାଲି, ଖଣ୍ଡା, ଫାର୍ଶା, ଠେଙ୍ଗା ଯେ ଯାହା ପାଇଲେ ଖଣ୍ଡେଖଣ୍ଡେ ହାତରେ ଧରି ଢେଙ୍କାନାଳ ଗଡ଼ ଆଡ଼କୁ ଦଳ ଦଳ ହୋଇ ମାଡ଼ି ଚାଲିଲେ । ବାଟରେ ଯେତେ ଥାନା, ସରକାରୀ ଅଫିସ ପାଇଲେ ସବୁ ଦଖଲ କରିନେଲେ ।

କର୍ମଚାରୀ ମାନଙ୍କୁ ବନ୍ଦୀ କଲେ । କେତେକ କର୍ମଚାରୀ ଇସ୍ତଫା ପତ୍ର ଲେଖିଦେଇ ପଳାଇଲେ । କେତେକ ଯେଉଁଠାରେ ପୋଲ ସବୁ ଭାଙ୍ଗି ଦେଲେ ଥାନା ପୋଡ଼ି-ଦେଲେ । ଭୁବନ ମଠି, କାମାଖ୍ୟା ନଗର ପ୍ରଭୃତି କେନ୍ଦ୍ର, ଗୁରୁତ୍ୱପୂର୍ଣ୍ଣ ଅଞ୍ଚଳ ମାନଙ୍କୁ ଅକ୍ତିଆର କରିନେଲେ ।

ସକାଳ ହେଲା ବେଳକୁ ଜନ ସମୁଦ୍ରର ନିଦ୍ରା ଭାଙ୍ଗିଲା ଢେଙ୍କାନାଳ ସହରରେ । ରାଜା ଉନ୍ମତ୍ତ । ତାଙ୍କର ଜାନକୁନ୍ଦା ପରାମର୍ଶ ଦାତା ନନ୍ଦ ପେଷ୍କାରଙ୍କ ପରାମର୍ଶରେ ରାଜା ଅତ୍ୟାଚାର ଓ ଆକ୍ରମଣ କରିବା ପାଇଁ ହାତୀଆଳ, ଘୋଡ଼ା ସୱାର, ପୁଲିସବାହିନୀ ଓ ପାଇକମାନଙ୍କୁ ନିର୍ଦ୍ଦେଶ ଦେଲେ । ଘୋଡ଼ା ଓ ହାତୀ ମାନେ ଲୋକଙ୍କ ଉପରେ ଚଢ଼ିଯିବା ପାଇଁ ଧାଇଁଲେ । ଲୋକେ ଶର, ଧନୁ, ଟାଙ୍ଗି, ଭାଲ ଆଦିରେ ପ୍ରତି ଆକ୍ରମଣ ଚଳେଇଲେ । ନିହତ ସାମନାରେ ଦେହ ଚୂନା ଧାଇଆ ଓ ପୋସ୍ତା ପଡ଼ିଗଲା ସେଠାରେ ଗୁଳିଲା ଲାଗେଇ । ପ୍ରାସାଦର ଘେର ପାଚେରି ଲୋକେ ଭାଙ୍ଗି ଦେବାକୁ ଆରମ୍ଭ କଲେ । ଜେଲ ଫାଟକ ଖୋଲି ବନ୍ଦୀମାନଙ୍କୁ ମୁକ୍ତକରି ଦେଲେ । ସେମାନଙ୍କର ନେତା ମାନଙ୍କୁ ମୁକ୍ତକରାଇ ଆଣିଲେ ଲାଗେଇ ସାମ୍ପାଦନ ଚଳିଲା । ଶେଷରେ ଲୋକେ ରାଜାଙ୍କୁ ଆତ୍ମସମର୍ପଣ କରିବା ପାଇଁ ନିର୍ଦ୍ଦେଶ ପଠାଇଲେ

ଏହି ରକ୍ତ ପ୍ରଭାତରେ ସାରା ଭାରତର ମୁଟ୍ୟୁଗର ସାମନ୍ତସାହୀ ଏକଛତ୍ରବାଦ ରାଜା ରାଜୁଡ଼ାଙ୍କର ମନମୁଖୀ ଶାସନର ଚିତାଗ୍ନି ଓଡ଼ିଶା ଭୂଇଁରେ ପ୍ରଥମ କରି ଜଳିଲା । ଏହି ଦିନର ବୈପ୍ଳବିକ ତାତ୍ପର୍ଯ୍ୟ ଓ ଗୁରୁତ୍ୱକୁ ଯେଉଁମାନେ ହିଣୋକରି ଦେଖିଛନ୍ତି ଇତିହାସ ସେମାନଙ୍କୁ କ୍ଷମା ଦେଇନାହିଁ, ନେଇଛି ତା'ର ଚରମ ପ୍ରତି-ଶୋଧ । ଯେଉଁମାନେ ଭବିଷ୍ୟତରେ ଏହିପରି ମାରାତ୍ମକ ଭୁଲ କରିବେ ଇତିହାସ ସେମାନଙ୍କୁ ମଧ୍ୟ ଛାଡ଼ିଦେବ ନାହିଁ ।

ସାମନ୍ତବାଦୀ ରାଜତନ୍ତ୍ର ଶାସନକୁ ଜାଳିପୋଡ଼ି ଦେବାପାଇଁ ସେହି ସମୟରେ ସାରା ଭାରତ ବର୍ଷରେ ନିଆଁ ଜଳି ରହିଲା ।

ବ୍ରିଟିଶ ସାମ୍ରାଜ୍ୟବାଦ ଭାରତରେ ତାର ଶୋଷଣ ଓ ଶାସନ ଚଳାଇବା-ପାଇଁ ଯେଉଁସବୁ ସ୍ତମ୍ଭମାନଙ୍କ ଉପରେ ଆଶ୍ରୟ କରିଥିଲା, ସେ ସବୁ ସ୍ତମ୍ଭ ବିପ୍ଳବର ଧକ୍କାରେ ଦୃହୁଁ ଦୃହୁଁ ଭାଙ୍ଗିରୁଜି କୁଡ଼ କୁଡ଼ ହୋଇ ଜମା ହେବ କୁ ଲାଗିଲା ।

ଏହି ଘଟଣା ଘଟିବାର ପରଦିନ ମୁଁ ... ସହ ... ଯାଇଥିଲି ଢେଙ୍କାନାଳ ଗଡ଼କୁ । ସାଙ୍ଗରେ ନେଇଥିଲି ପରବର୍ତ୍ତୀ କାର୍ଯ୍ୟ ପନ୍ଥାର ନିର୍ଦ୍ଦେଶ । ଗୁଳି ଭୂଇଁରେ ଛିନ୍ନଛିନ୍ନ ହୋଇ ପଡ଼ିଥିବା ଅସ୍ତ୍ର, ଶଙ୍ଖ, ଲୁଗାପଟା, ରକ୍ତର ଦାଗ ...

ଖୋଲା ହୋଇଯାଇଥିବା ସେଗା ସବୁ ଦେଖିଲୁ । ଜେଲ ଫାଟକ ଖୋଲା ପଡ଼ିଥିଲା. ତା' ଭିତରକୁ ଚାଲି ବୁଲି ଦେଖିଲୁ ।

ଦିନେ ଦି ଦିନ ପରେ କଲିକତାର ଫୋର୍ଟ ଉଇଲିୟମରୁ ଆସିଲେ ଅମଳ ଗୋରା ପଲଟନ ଲିଙ୍କ୍ସ ରାଇଫଲ । ପ୍ରଥମେ ଏମାନେ ଗଡ଼ ପୁନର୍ଦଖଲ ପାଇଁ ଧୀରେ ଧୀରେ ଅଗେଇଲେ । ତା'ପରେ ବାହାରିଲେ ଗାଁ ସବୁ ପୁନର୍ଦଖଲ କରିବା ପାଇଁ । ତାଙ୍କ ସଙ୍ଗେ ଅତ୍ୟାଚାର ଓ ଜୁଲମ ଚଳେଇବା ପାଇଁ ଦେଶୀ ବୋଲକରା ଲୋକେ ଓ ପୁଲିସ ଦଳ ପଠାହେଲା । ଅତ୍ୟାଚାର ଆରମ୍ଭ ହେଲା । ଲୋକଙ୍କ ଅନ୍ତୁ ଆରମ୍ଭ ହେଲା ଚରିଲା ଲୁଚି ।

ମୁଁ ଓ ରବି ଘୋଷ ଦୁହେଁ ଖାଁଟି ବାଟେ କଲିକତା ଓ ସଫାଗଲୁ ଓ କୋର୍ଟ ଜାରି ରହିଲୁ । ସେପଟର କାମର ଦାୟିତ୍ୱ ରହିଲା ଆମ ଉପରେ ।

ଅତ୍ୟାଚାର ହେଲାରୁ ଲୋକେ ନିଜ ଛୁଆ କୁକୁର, ବିଲେଇ, କୁକୁଡ଼ା, ନିଜର ଜିନିଷପତ୍ର ଧରି ଘରକରି, ଶଗଡ଼ କରି ଏପଟକୁ ଢେଙ୍କାନାଳରୁ ପଳେଇ ଆସିବାକୁ ଲାଗିଲେ । ଏମାନଙ୍କର ଥଇଥାନ କରିବାକୁ ହେବ । ସେଥିପାଇଁ ନାଟକରରେ ଓ ବିଭିନ୍ନ ଗାଁରେ ଧାଡ଼ି ଧାଡ଼ି ଚାଳିଆ ସବୁ କରିବାକୁ ପଡ଼ିଲା ଏବଂ ଚୂଡ଼ା, ଚାଉଳ ପ୍ରଭୃତି ଚାନ୍ଦାକରି ଆଣି ସେମାନଙ୍କୁ ରାନ୍ଧି ଖୁଆଇବାକୁ ପଡ଼ୁଥାଏ । ତେଣେ ପୁଣି ଗରିଲା ଆକ୍ରମଣ ଚଳାଇବା ପାଇଁ କୌଶଳ ବଢ଼େଇବାକୁ ପଡ଼ୁଥାଏ । ଅକ୍ଟୋବର ମାସ, ଘୋର ବର୍ଷା । ସ୍ଥାନୀୟ ଲୋକେ ଓ କର୍ମୀମାନେ ଅକ୍ଲାନ୍ତ ପରିଶ୍ରମ କରୁଥାନ୍ତି, ରାତି କାଳିଲେ ନିଦ୍ରାଦେବୀ ଭୟରେ ଆମ ପାଖ ମାଡ଼ୁ ନଥାନ୍ତି ।

ଅତ୍ୟାଚାର ଚାଲିଥାଏ । ଠିକ୍ ହେଲା ଢେଙ୍କାନାଳରେ ସତ୍ୟାଗ୍ରହ ହେବ ଅତ୍ୟାଚାର ବିରୁଦ୍ଧରେ । କାରଣ ଯେଉଁ ସବୁ ଗାଁ ସୈନ୍ୟଙ୍କ ହାତରେ ପଡ଼ିଯାଉଥାଏ ସେ ଗାଁରେ ଲୋକଙ୍କ ଘର ଲୁଟ କରିବା, ସ୍ତ୍ରୀ ଲୋକଙ୍କ ଉପରେ ଅତ୍ୟାଚାର କରିବା, ଘର ଭାଙ୍ଗି ମାଟିରେ ମିଶେଇ ଦେବା ଏବଂ ସ୍ତ୍ରୀ, ପୁରୁଷ, ପିଲା ନିର୍ବିଶେଷରେ ସମସ୍ତଙ୍କ ଜଙ୍ଘରେ ଓ ପିଠିରେ 'ରାଜଭକ୍ତ' ଦାଗିଦେବା ଭଳି ନୃଶଂସ କାଣ୍ଡମାନ ଚାଲିଥାଏ ।

ସତ୍ୟାଗ୍ରହ ଆରମ୍ଭ ହେଲା । ନବକୃଷ୍ଣ ଚୌଧୁରୀ, ଭାଗବତି ଚରଣ ପ୍ରଥମେ ବନ୍ଦୀ ହେଲେ । ଗୌରାଙ୍ଗ ଚରଣ ଦାସ (ହାତଝଣ୍ଟି ଗୌରାଙ୍ଗ ବାବୁ) ଦଳେ ସତ୍ୟାଗ୍ରହୀଙ୍କୁ ନେଇ ଢେଙ୍କାନାଳରେ ପଶିବା ପରେ ପୁଲିସ ତାଙ୍କୁ ଚୂଡ଼ା କୁଟିଲା ଭଳି କୁଟିଦେଲେ । ସେ ମରିଗଲେ ବୋଲି ଖବର ଚାରିଆଡ଼କୁ ଚାଲିଗଲା । ହୃଷ୍ଟ

ନଷ୍ଟାରୁ ବଢ଼ିଲେ ସତ୍ୟାଗ୍ରହୀଙ୍କୁ ନେଇ ସଫା ବାଟେ ମୁଁ ଢେଙ୍କାନାଳ ଭିତରକୁ ତା'ଆର ଦିନ ପଶିଲି । ଆଜେ ଢେଙ୍କାନାଳ ଭିତରେ ଗାଁ ଗାଁ ବୁଲି ସମସ୍ତଙ୍କ ଅତ୍ୟାଚାର ବିରୁଦ୍ଧରେ ବକ୍ତୃତା ଦେଇ ସ୍ଲୋଗାନ ଦେଇ ବୁଲିଥାଉଁ । ଲୋକେ ଖୁବ୍ ଡର ଯାଉଥିଲେ ମଧ୍ୟ ଆମକୁ ଦେଖି ଆମ ପାଖକୁ ଆସୁଥାନ୍ତି ଏବଂ ଅବସ୍ଥା ବର୍ଣ୍ଣନା କରୁଥାନ୍ତି । ସନ୍ଧ୍ୟା ହୋଇ ଆସିଲାଣି, ଆମକୁ ରାତିରେ ମଠରେ ଗୋଟିଏ ଲୋକ ପ୍ରଥମେ ଆସି ଡାକିଲା, ତା'ପରେ ଆଉ ଦୁଇଜଣ ଆସିଲେ । ସେମାନେ ରାଜା ଘରର ଚାକିରିଆ ହେବେ । ଆମେ ତାଙ୍କ କଥା ନମାନି ଆଗେଇଲୁ । ପୁଲିସ ଆମକୁ ଖୋଜି ବାହାରିଥାନ୍ତି । ଆମେ ଯାଇ ଗୋଟାଏ ବଡ଼ ଗାଁ ପାଖ ହୋଇ ଆସିଲୁ ଏବଂ ରାତିରେ ସେହିଠାରେ ରହିବୁ ବୋଲି ସ୍ଥିର କରିନେଲୁ । ଠିକ୍ ସେହି ସମୟରେ ବନ୍ଧୁକଧାରୀ ଦଳେ ପୁଲିସ ଆସି ଆମକୁ ଗିରଫ କରି ଥାନାକୁ ନେଇଗଲେ । ମୋର ଯେତେଦୂର ମନେହୁଏ, ଏ ହେଉଛି ଗନ୍ଧିଆ ଥାନା ।

ରାତିରେ ଦେଖିଲୁ ଥାନାରେ ଆଉ କେହି ରହିଲେ ନାହିଁ । କେବଳ ଜଣେ ଦଫାଦାର ଓ ଜଣେ ଚୌକିଦାର ରହି ଆମକୁ ଦୁଇଜଣଙ୍କର ଲୋକ ଜାଣି ଆମ ସହିତ ଗପ ଜୋଡ଼ି ଦେଲେ । ଥାନାକୁ କିପରି ଲୋକେ ଦଖଲ କରିଥିଲେ ସେହି କଥା ବର୍ଣ୍ଣନା କରିବାକୁ ଲାଗିଲେ ଏବଂ ଯେଉଁ ଅତ୍ୟାଚାର ଚାଲିଛି ସେଥିରୁ ମଧ୍ୟ ଅଧ୍ୟାୟ ଅଧ୍ୟାୟ କହିଲେ ।

ରାତି ଅନେକ ହୋଇ ଆସିଲାଣି । ଖାଇବା କଥା ନାହିଁ, ପୁରା ଉପାସ । ନିଦ ହେଉନାହିଁ କେଉଁଠି ? ଚୌକିଦାର ଦେଖିଲି ଦଫାଦାର ପିଣ୍ଡାରେ ଶୋଇଛି । ଆମକୁ ଚୁନି ଚୁନି କହିଲା, "ଲୋକେ କୁହାକୁହି ହେଉଛନ୍ତି ସତ୍ୟାଗ୍ରହୀ ଗୌରାଙ୍ଗ ଦାସକୁ ପୁଲିସ ପିଟି ପିଟି ମାରି ଦେଇଛି ।" ରାତିରେ ଦେଖିଲୁ ମଠରରେ ଉପର ପାହୁଆ ଲୋକେ ପେଟ୍ରୋମାକ୍ସ ଦେଇ ଧାଁ ଧପଡ଼ କରୁଛନ୍ତି । ମଝିରେ ଟିକିଏ ଆମକୁ ନିଦ ହୋଇଗଲା ।

ଆମେ ଉପାସ ରହିଥିବା ଖବର ଲୋକେ ନେଇଗଲେଣି । ଆମ ଉପରେ କ'ଣ ଦକ୍ଷିଣା ହେଉଛି ସେ ଖବର ନବାପାଇଁ ମଧ୍ୟ ମଝିରେ ମଝିରେ ଜଣେ ଦି'ଜଣ ଆସି ଉଣ୍ଟି ଦେଇ ଯାଉଥାନ୍ତି ।

ସକାଳ ହେଲା । ଆମେ ପଛପଟ ଜଙ୍ଗଲକୁ ଝାଡ଼ା ଫେରିବାକୁ ଗଲୁ । ସାଙ୍ଗରେ ଗୋଟାଏ ଚଉକିଆ, ଦେଖିଲୁ ଆଉ ଜଣେ ଲୋକ ଚଙ୍ଗ ଚଙ୍ଗ ହୋଇ ଜଙ୍ଗଲ ଭିତରକୁ ଏଣେ ତେଣେ ଚାହୁଁଛି । ଆମ ଆଡ଼କୁ ଆସ୍ତେ ଆସ୍ତେ ଆସିଲା । ଗୋଟାଏ ଯୋଗାରେ ବେଶ୍ ଗଦାଏ ଚୂଡ଼ା ଚକଟି ଦେଇ ଜଙ୍ଗଲ ଭିତରେ

ନିଦ୍ଭେଇ ଗଲା । ୨୪ ଘଣ୍ଟା ଖାଦ୍ୟାଖାଦ୍ୟ ଉପାସ ପରେ ସେତକ ଆମେ ଟକ୍
କରିଦେଲୁ । ନିଦ୍ରା ଭାଙ୍ଗିଲା ପରେ ଦେଖିଲୁ କରପଟେ ମାଠିଆଏ ପାଣି ରହିଛି ।
ସେଠାରୁ ନେଇ ନେଇ ଥାନାକୁ ଫେରିଲୁ । ଚଉକିଆ ଏସବୁ କାମରେ ଲୋକଟି
ମାଙ୍କଡ଼ଟେ ସଲଖିକି କଟିନେଲୁ ।

ତା'ପରେ ଆସିଲେ ଗୋରା ଫୌଜ । ଜଣ ଜଣ କରି ଆମକୁ ଡ଼କାଗଲା ।
ନାନାପ୍ରକାର ଜେରା କଲେ ପୁଲିସ ଅଫିସର । ଧମକ ମଧ୍ୟ କମ ଦିଆଗଲା ନାହିଁ ।
ଆମର ଜବାବରେ ସେମାନେ ଦେଖିଲେ ଯେ ସେମାନଙ୍କର କୌଶଳ କାମ ଦେଉ
ନାହିଁ । ଚହୁଁ ସୈନ୍ୟମାନଙ୍କର ମୁଖିଆ କହିଲେ "ଆମେ ସୈନ୍ୟ, ହୁକୁମ
ମାନିବାରେ ଲଢ଼ିବା ଆମର କାମ, ଗୁଳିକ୍ଷ ।" ସେଠାରୁ ସେମାନେ ଆମକୁ ଗଡ଼ଗଡ଼
ଆଣିଲେ । ସିଧା ସଲଖ ଦେବାର ହୁକୁମ ଆମକୁ ନଅହେଲା । ସେଠାରେ ଜମା-
ହୋଇଥାଏ ଶୂଳା ବାଉଁଶ । ଅଧମ କାଳର ଦଣ୍ଡଦେବା ବାଧି । ସ୍ୱୟଂ ରଜାସାହେବ
ଆମକୁ ଦେଖି ରାଗରେ ଫୁଲିଗଲେ । ଲମ୍ବା ଲମ୍ବା ପାହୁଣ୍ଡ ପକାଇ ପାଟିରେ ଯାହା
କୁହାଯା ଆସିଲା ଗାଳି ନାଗଲେ । ତା'ପରେ ଦେଖାଇଲେ ବାଉଁଶକଳା । ମୁଁ ତାଙ୍କୁ
ଅତି ଡାଳିଆ ଓ ରହସିଆ କଥାରେ ଜବାବ ଦେଲି "ଏଗୁଡ଼ାକ ରଜାରାଜୁଡ଼ାଙ୍କ
ଅତ୍ୟାଚାର ଯୁଗର କାରବାର । ସଭ୍ୟ ଜଗତରେ ଏସବୁ ଚଳେନାହିଁ । ଆପଣ
କ'ଣ ସେହି ଅସଭ୍ୟ ବର୍ବର ଯୁଗରେ ଏବେବି ଅଛନ୍ତି ? ଆପଣ କେଉଁଠି ବିଲାତ
ଯାଇଛନ୍ତି ? ଏତେ ବଡ଼ ସଭ୍ୟ ଦେଶ ବୁଲି ଆସିଲା ପରେ ବି ଆପଣଙ୍କର ଭାଷା ଓ
ବ୍ୟବହାରରେ କିଛି ପରିବର୍ତ୍ତନ ହୋଇନାହିଁ ଦେଖୁଚି । ଆମେ ମୋଗଲ ବନ୍ଧର
ଲୋକେ ଶୁଣୁଥିଲୁ ଯେ ଦେଶୀ ରାଜ୍ୟମାନଙ୍କରେ ରଜା ବଣ ଉପାଡ଼ୁଛି, ପିଂଜୁରେ(ଗଣ୍ଡିରେ)
କଳା ଭର୍ତ୍ତି କରୁଛି ସ୍ତ୍ରୀ ଲୋକମାନଙ୍କୁ ଧରିଆଣି ନିଜ ସାମନାରେ ଏକାଧିକ ପୁରୁଷଙ୍କ
ଦ୍ୱାରା ନାରୀଧର୍ଷଣ କରନ୍ତି । ଏସବୁ ଆମେ ବିଶ୍ୱାସ କରୁ ନଥିଲୁ; କିନ୍ତୁ ଆପଣ
ଯେତେବେଳେ ଆମ ପିଂଜୁରେ (ଗଣ୍ଡିରେ) କଳା ଭର୍ତ୍ତି କରିବାକୁ କହିଲେଣି
ସେତେବେଳେ ନିଜ ପ୍ରଜାଙ୍କ ଉପରେ ବାସ୍ତବିକ କ'ଣ କରୁ ନଥିବେ ? ମୋ କଥା
ଗୁଡ଼ାକ ତାଙ୍କ ଦେହରେ ବୁଲେଟ ବାଜିଲାଭଳି ହେଲା । ସାଙ୍ଗେ ସାଙ୍ଗେ ହୁକୁମ
ହେଲା ଆମକୁ ସେଠାରୁ ନେଇ ଯିବାକୁ । ଆମକୁ ଆଣି ପୁଲିସ ସାହେବଙ୍କ ପାଖରେ
ହାଜର କରାହେଲା ଏହାଙ୍କ ନାମ ବର୍ମ୍ମନ । ଏ ଜଣେ ବଙ୍ଗଳାର ଅବସର ପ୍ରାପ୍ତ ପୁଲିସ
ସାହେବ । ସେ ଆମକୁ ଦେଖିଲା ମାତ୍ରେ ଗୀତାରୁ ବହୁ ଉପଦେଶ ଦେବାକୁ
ଲାଗିଲେ, ଢେଙ୍କାନାଳରେ ଗଣତନ୍ତ୍ର ଶାସନ ପାଇଁ ଯେଉଁ ସବୁ ବ୍ୟବସ୍ଥା ହେଲାଣି ସେ
ସବୁ ବୁଝାଇବାକୁ ଲାଗିଲେ । ସବୁ ଶୁଣି ଶୁଣି ମୁଁ କହିଲି "ଗଣତନ୍ତ୍ର ଶାସନରେ
ଯେଉଁମାନଙ୍କୁ ବନ୍ଦୀ କରାଯାଏ ସେମାନଙ୍କୁ ଦିନ ଦିନ ଉପବାସ ରଖାଯାଏ । ଏହାହିଁ
ମୁଁ ନିଜର ଅନୁଭୂତିରୁ ବୁଝୁଛି । କାରଣ ଆମକୁ କାଲିଠାରୁ ଏପର୍ଯ୍ୟନ୍ତ ଖାଇବାକୁ

ଦିଆଯାଇ ନାହିଁ ।" ସେ ସେମିତି ହଠାତ୍ କହି ଜଲଦି ସଙ୍ଗେ ଲେଖା ଧରିଲେ । ଯାଙ୍କେ ସାଙ୍ଗେ ଖାଇବାକୁ ଆଣିବା ପାଇଁ ହୁକୁମ ଦିଆଗଲା । କିନ୍ତୁ ଖାଇବା ଜିନିଷ ଆମ ଆଖି ଦେଖିଲା ନାହିଁ କି ପାଟି ଖାଇଲା ନାହିଁ । ଶେଷରେ ଆମକୁ ସେଠାରୁ ଅଣାଯାଇ ଗୋଟିଏ ଗ୍ରେନିଆ ଭିତରେ ବସାଇ ଦିଆଗଲା । ଆମକୁ କେଉଁଠାକୁ ନିଆଯାଉଛି ପଚାରିବାରୁ କୌଣସି ଉତ୍ତର ପାଇଲୁ ନାହିଁ । ଅନେକ ବାଟ ଆସିଲା ପରେ ହଠାତ୍ ବସ୍‌ଟା ଅଟକି ଗଲା । ସମସ୍ତ ପୁଲିସମାନେ ଆମକୁ ତଳକୁ ଓହ୍ଲାଇବାକୁ କହିଲେ । ବସ୍ ଖରାପ ହୋଇଗଲା ଠେଲିବାକୁ ପଡ଼ିବ ଜଣାଇଲେ । ଆମେ ଜଙ୍ଗଲ ଭିତରେ ଓହ୍ଲାଇଲୁ । କିଛି ସମୟ ପରେ ବସ୍‌ଟି ଫେରି ପ୍ରବଳ ବେଗରେ ଯେଉଁଆଡ଼ୁ ଆସିଥିଲୁ ସେହି ଆଡ଼କୁ ଚାଲିଗଲା । ଆମକୁ କେବଳ ଶୁଭୁଥାଏ 'ପଳାଅ, ପଳାଅ' ।

ଆଖ ପାଖରେ କୌଣସି ଗାଁ ଗଣ୍ଡା ନାହିଁ । ଏବେ ବେଳେ ଚାଲୁ ଚାଲୁ ଗୋଟିଏ ଚଲା ରାସ୍ତା ଜଙ୍ଗଲ ଭିତରେ ଦେଖିବାକୁ ପାଇଲୁ । ତାଙ୍କ ବାଟ ଆମେ ସେହି ଚଲା ବାଟରେ କଟକ ଆଡ଼କୁ ମୁହାଁଇଲୁ । କିଛିବାଟ ପରେ ଗୋଟିଏ ଗାଁ ଦେଖି ସେଠାକୁ ଗଲୁ । ଗାଁର ଲୋକଙ୍କୁ ପଚାରି ବୁଝିଲୁ ଯେ ସେଟା ଆଠଗଡ଼ର ଗୋଟିଏ ଗାଁ । ସେମାନେ ଆମକୁ ଚଉଡ଼ା ଘାଟକୁ ଯିବାପାଇଁ ବାଟ ବତାଇ ଦେଲେ । ଆମେ ପଚାରି ପଚାରି ଚଉଡ଼ା ଘାଟରେ ଆସି ପହଞ୍ଚିଲୁ । ସେତେବେଳକୁ ସୂର୍ଯ୍ୟ ଅସ୍ତଯିବା ଉପରେ । ଆମେ ଡଙ୍ଗାରେ ମହାନଦୀ ପାରି ହୋଇ କଟକ ଆସିଲୁ ।

## ରଣପୁରରେ ରଣଭେରୀ

ରଣପୁର, ନୟାଗଡ଼, ଖଣ୍ଡପଡ଼ା ଓ ଦଶପଲ୍ଲାରେ ମଧ୍ୟ ପ୍ରଜାଆନ୍ଦୋଳନ ଖୁବ୍ ଜୋରସୋରରେ ଚାଲିଥାଏ । ଗାଁକୁ ଗାଁ ସଂଗଠିତ ହୋଇ ସଭାସମିତି ପ୍ରଚାର କରି ଚାଲିଥାନ୍ତି । ରାଜତନ୍ତ୍ର ଲୋପହେଉ, ଅତ୍ୟାଚାର ଶାସନ ଲୋପ ହେଉ, ଗଣତନ୍ତ୍ର ଶାସନ ପ୍ରତିଷ୍ଠା ହେଉ, ଧ୍ୱନିମାନ ଦେଉଥାନ୍ତି । ଅତ୍ୟାଚାର ବିରୁଦ୍ଧରେ ବିଦ୍ରୋହ ଫାଟିପଡ଼ୁଥାଏ । ଯେତେ ଯାହା ଅତ୍ୟାଚାର ଓ ଦମନ କଲେ ସୁଦ୍ଧା ସବୁ ବିଫଳ ହେଉଥାଏ ।

ପଲ୍‌ଟିକେଲ ଏଜେଣ୍ଟ ଥିଲେ ବ୍ରୁକଲଗେଟ୍ ଇଂରେଜ ସରକାରଙ୍କର ପ୍ରତିନିଧି ହିସାବରେ ସେ ଥିଲେ ସାରା ଓଡ଼ିଶାର ଗଡ଼ଜାତ ରାଜାମାନଙ୍କ ଉପରେ ମାଲିକ । ସବୁ ରାଜାଙ୍କୁ ପୋଷାକୁକୁର ଭଳି ବାନ୍ଧି ରଖିଥାନ୍ତି । ସେମାନେ ଥିଲେ ଇଂରେଜ ସରକାରଙ୍କର ବଶମ୍ବଦ ପ୍ରହରୀ । ଯେତେବେଳେ ଏ ପ୍ରହରୀମାନେ ବିପନ୍ନ ହୋଇ ପଡ଼ିଲେ ସେତେବେଳେ ଇଂରେଜ ସରକାରଙ୍କର ଖୁଣ୍ଟି ହଲିବାକୁ ଲାଗିଲା । ଏଥିରେ ବ୍ରୁକଲଗେଟ୍ ଚୁପ୍ ହୋଇ ରହିବେ କିପରି ? ଲୋକଙ୍କର ଆନ୍ଦୋଳନକୁ ଦମନକରି ଲୋକଙ୍କର କ୍ରୋଧାଗ୍ନିରୁ ରାଜାମାନଙ୍କୁ ରକ୍ଷାକରିବାପାଇଁ ସେ ଗଡ଼ଜାତ ମାନଙ୍କୁ ବାଘଙ୍କଭଳି ବୁଲୁଥାନ୍ତି । ଆନ୍ଦୋଳନକୁ ଦବାଇବାପାଇଁ ବାଟ ବତାଉଥାନ୍ତି, ଫୌଜ ପଠାଉଥାନ୍ତି । ତାଙ୍କୁ ହତ୍ୟା କରିବାପାଇଁ ଢେଙ୍କାନାଳର ଲୋକେ କେତେଥର ଚେଷ୍ଟା କରିଛନ୍ତି । କିନ୍ତୁ ଅଳ୍ପକେ ସେ ବନ୍ଧୁକର ଚୋଟରୁ ରକ୍ଷାପାଇ ଯାଇଛନ୍ତି ।

୧୯୩୯ ଜାନୁଆରି ତା୫ ରିଖ, ପୌଷ ପୂର୍ଣ୍ଣିମୀ । ରଣପୁର ରାଜନଅର ସାମନାର ପଡ଼ିଆ ଯେଉଁଠାରେ ସାଧାରଣ ସଭା ହେବ । ଜଙ୍ଗଲ ଭାଙ୍ଗିଲାଭଳି ଗାଁ ଗଣ୍ଡା ଖାଲିକରି ଲୋକେ ସଭାକୁ ଆସୁଥାନ୍ତି । ସେଦିନ ଭୁଣି ଖାରରତର ବାଜଲ୍‌ଟ ଓଡ଼ିଶା ଦେଇ ମାନ୍ଦ୍ରାଜ ଆଡ଼କୁ ଯାଉଥାନ୍ତି । ଏହି ସମୟରେ ତାଳଚେର ପ୍ରଜା ଆନ୍ଦୋଳନ ମଧ୍ୟ ଚରମ ଅବସ୍ଥାରେ ପହଞ୍ଚିଥାଏ । ରାଜାର ଅତ୍ୟାଚାରରୁ ରକ୍ଷା ପାଇବାପାଇଁ ହଜାର ହଜାର ଲୋକ ପିଲାଛୁଆ ଧରି ଅନୁଗୁଳକୁ ପଳେଇ ଆସିଥାନ୍ତି । ସେମାନଙ୍କୁ କେମ୍ପମାନଙ୍କରେ ରଖି ଖାଇବାକୁ ଦିଆଯାଉଥାଏ ।

ଗାନ୍ଧୀ ଓ ଜହରଲାଲଙ୍କୁ ଏ ସବୁ ଖବର ପଠାଯାଉଥାଏ । ନାଗପୁରରେ ବ୍ରିଟିଶ୍‌ବାଦ ଚାଲିଥିବା ମହିଳା ସଂଘ ପାଇ ପ୍ରକୃତ କଥା ଜାଣିବାକୁ ସେମାନଙ୍କର ସଙ୍ଘର ଜଣେ ସଭ୍ୟାଙ୍କୁ ଓଡ଼ିଶାପଠାଇଥିଲେ । ସେ ନାଗପୁରରେ ବନ୍ଧୁ ଫଟୋ ଓ ଡାକ୍ତରୀ ରିପୋର୍ଟ ପାଇଥାନ୍ତି ଓ ପ୍ରୀତିଲୋକଙ୍କର ଜମାନବନ୍ଦୀ ନେଇଥାନ୍ତି ।

ଏ ସବୁ ଘଟଣାରେ ଗାନ୍ଧୀ ଦୋହଲିଯାଇ ଓଡ଼ିଶାର ଗଡ଼ଜାତ ଆନ୍ଦୋଳନର ନେତାମାନଙ୍କୁ ନିର୍ଦ୍ଦେଶ ଦେଲେ ଯେ ସେମାନେ ତାଳଚେରର ଲୋକଙ୍କୁ ବାଜଲ୍‌ଟଙ୍କ ଟ୍ରେନଆଗରେ ଛିଡ଼ା କରାଇ ଦିଅନ୍ତୁ ଏବଂ ତାଙ୍କୁ ଏସବୁ କଥା କହନ୍ତୁ; କିନ୍ତୁ ସେତେବେଳର ଓଡ଼ିଶାର ଘରୋଇମନ୍ତ୍ରୀ ନିତ୍ୟାନନ୍ଦ କାନୁନ୍‌ଗୋ ଏହା କରେଇଦେଲେ ନାହିଁ । ସେ ଥିଲେ ଅତି ପ୍ରତିକ୍ରିୟାଶୀଳ । ନବକୃଷ୍ଣ ଚୌଧୁରୀଙ୍କ ଉପରେ ତାଙ୍କର ପ୍ରଭାବ ଥିଲା । ତେଣୁ ନବବାବୁଙ୍କୁ ନେଇ ଏହା ଭଣ୍ଡୁର କରିଦେଲେ ।

କିନ୍ତୁ ଏଣେ ରଣପୁରରେ ନିଆଁ ଲାଗିଗଲା । ବୃଜଲଗେଟ ନୟାଗଡ଼ରୁ ରଣପୁର ଆସିଲେ । ଗଛକାଟି, ଶଗଡ଼ସବୁ ଛନ୍ଦାଛନ୍ଦି କରି ବାଟଉପରେ ଫୋପାଡ଼ି ପକାଇଦେଇ ରାସ୍ତାସବୁ ଅବରୋଧ କରିଦେଇଥିଲେ । ସେପରିକି ପଲ୍‌ଟନ ଓ ବୃଜଲଗେଟ କେହି ସଭାକୁ ଆସିପାରିଲେ ନାହିଁ । ବୃଜଲଗେଟ ରାସ୍ତା ଅବରୋଧ ହେବାର ଦେଖି ରାଗରେ ଝୁନ ହୋଇଗଲେ । ଗାଁ ଗଣ୍ଡାରେ ତ ଲୋକ କେହି ନଥିଲେ । କେବଳ ୨ଜଣ ବୁଢ଼ା ଜଗୁଆଳି ରହିଯାଇ ଥିଲେ । ବୃଜଲଗେଟଙ୍କ ଶରୀରରକ୍ଷୀ ଦଳେ ସଶସ୍ତ୍ର ପୁଲିସ ଗାଁ ଭିତରେ ପଶି ୨ଜଣ ଲୋକଙ୍କୁ ଡାକିଲେ ରାସ୍ତା ସଫା କରିବାକୁ କିନ୍ତୁ ସେମାନେ ମିଳିଲେ ନାହିଁ । ବୃଜଲଗେଟ ସାଙ୍ଗେ ସାଙ୍ଗେ ନିଜେ ପିସ୍ତଲରୁ ୨ଟି ଗୁଳିକରି ୨ଜଣଙ୍କୁ ଆହତ କଲେ । କୌଣସିମତେ ରାସ୍ତା ସଫାକରି ବୃଜଲଗେଟ ଗଡ଼ରେ ଆସି ପହଞ୍ଚିଲେ । ସେତେବେଳକୁ ସଭା ଆରମ୍ଭ ହୋଇଯାଇଥାଏ । ବୃଜଲଗେଟ ଗୁଳିରେ ୨ଜଣଙ୍କୁ ମାରି ଦେଇଛନ୍ତି ଖବର ପାଇ ଆଖପାଖର ଯେଉଁମାନେ ଥିଲେ ସେମାନେ ସେ ଦୁଇଜଣଙ୍କୁ ଶଗଡ଼ରେ ପକାଇ ରଣପୁର ଗଡ଼ବାଟେ ପୁଣ୍ଡଜଳି ଟାଙ୍ଗି ଥାନା, (ମୋଟାଳ ବନ୍ଧୀର) ଡାକ୍ତର ଖାନାକୁ ନେଇଚାଲିଲେ ।

ବୃଜଲଗେଟ ରଣପୁରଗଡ଼ରେ ପହଞ୍ଚିଲାବେଳେ ସଭାଭିତରେ ହୁରି ହୋଇଗଲା ଯେ ସାହେବ ଦୁଇଜଣ ଲୋକଙ୍କୁ ବାଟରେ ଗୁଳିକରି ମାରିଦେଇଛନ୍ତି । ସଭାରୁ ଉଠି ଲୋକେ ଶଗଡ଼ ଚାରିପଟେ ଭିଡ଼ କଲେ ଲୋକ ୨ଜଣଙ୍କୁ ଦେଖିବାପାଇଁ ।

ସେତେବେଳକୁ ସଞ୍ଜ । ବୃଜଲଗେଟ ଶଗଡ଼ଗାଡ଼ିକୁ ଟାଙ୍ଗି ଗ୍ଲାଡ଼ନଦବା ପାଇଁ ନିଜେ ଅଟକାଇବାକୁ ଦଳ ବଳ ଧରି ଆଗେଇଗଲେ । ଶଗଡ଼ ସେତେବେଳକୁ ଭଣ୍ଡାର ଘର ଭିତରକୁ ପଶିଗଲାଣି । ଭିତରେ ନାମ୍ ହୋଇଗଲାଣି ଗଳି ରାସ୍ତା । ବୃଜଲଗେଟ ଅବସ୍ଥା ଅସମ୍ଭାଳ ଦେଖି ବାହାରେ ଆସିବାକୁ ଚେଷ୍ଟା କଲେ । ସେତେବେଳକୁ ଲୋକେ ପାଟି କରୁଥାନ୍ତି । "ସାହେବ ଲୋକ ଦୁଇଟାକୁ ମାରି ପକାଇଲା ।" ବୃଜଲଗେଟ ଭାବିଲେ ପିସ୍ତଲରୁ ଗୁଳି କଲେ ସାମନାରୁ ଲୋକେ ପଳାଇବେ ଏବଂ ସେ ଭିଡ଼ ବାହାରକୁ ଚାଲିଯିବେ । ସେ ପିସ୍ତଲରୁ ଗୁଳି କଲେ । ତାଙ୍କ ସାମନା ଲୋକ ବାହୁରେ ଯେମିତି ଗୁଳି ବାଜିଛି ସେ ପାଣ ବାଳକଟିର ବୃଜଲଗେଟଙ୍କ ହାତ ମୋଡ଼ି ପିସ୍ତଲଟି ଛଡ଼ାଇନେଲା ଏବଂ ଲୋକେ ଚାଳରୁ ରୁଅବାଉଁଶ ଟାଣି ଆଣି ସାହେବକୁ ପିଟି ପକାଇଲେ । ସେ ପ୍ରାଣ ବିକଳରେ ଗୋଟାଏ ଘରେ ପଶିବାକୁ ବାହାରିଲା ବେଳକୁ ଦାଣ୍ଡଦୁଆରେ ଠିଆ ହୋଇଥିବା ୨ ଲୋକେ ଦୁଆର ବନ୍ଦ କରିଦେଲେ । ସାହେବର ହାତଚାପ ହୋଇଗଲା । ସେ

ଧାନ୍ଦାର ଉପରେ ପଡ଼ିଗଲେ । ଲୋକଙ୍କ ମାଡ଼ରେ ସେ ସେହିଠାରେ ପ୍ରାଣ ହରାଇଲେ । ତାଙ୍କ ଦଳର ହାବିଲଦାର ସିପାହୀ ମଧ୍ୟ ଆହତ ହୋଇଲେ ଏବଂ ଅନ୍ୟମାନେ କିଏ କେଉଁଆଡ଼େ ଖସିଯାଇ ପ୍ରାଣ ରକ୍ଷା କଲେ ।

# ଦସ୍ୟୁ ପର୍ବ

ବୁକାନନଙ୍କ ହତ୍ୟା ପରେ ପରେ ରଣପୁରର ଲୋକେ ଅତ୍ୟାଚାରର ଭୟରେ ରାତାରାତି ଘରଦ୍ୱାର ଛାଡ଼ି ପିଲାକବିଲାଙ୍କୁ ଧରି ପାଖ ମୋଗଲବନ୍ଦି ଗାଁ ସବୁକୁ ପଳେଇଲେ । ସେମାନେ ଜାଣିଥିଲେ ଯେ ଏହାପରେ ରଣପୁରରେ ଏକ ସାମରିକ ରାଜୁତି ଓ ବର୍ବର ଅତ୍ୟାଚାର ଚାଲିବ । ସେମାନଙ୍କର ଏ ଆଶଙ୍କା ସତ୍ୟଥିଲା । କାରଣ ମୁଁ ଓ ଗୁରୁଚରଣ ପଟ୍ଟନାୟକ ଯେତେବେଳେ ଟାଙ୍ଗିବାଟେ ରଣପୁର ଅଞ୍ଚଳ ଭିତରକୁ ଗଲୁ ସେତେବେଳକୁ ସୈନ୍ୟ ଓ ପୁଲିସ ବାହିନୀ ଆସି ପହଞ୍ଚି ଗଲେଣି । ଗାଁ ସବୁ ଜନମାନବ ଶୂନ୍ୟ । କେବଳ ପୁଲିସ ଓ ସୈନ୍ୟମାନେ ଗାଁରେ । ଲୋକଙ୍କର ଦୁଆର ଭାଙ୍ଗି ଯେ ଯାହା ପାରିଲେ ବୋହିବାରେ ଲାଗିଛନ୍ତି । ଅସହାୟ ଅବସ୍ଥାରେ ଗାଈ ଗୋରୁ ବିଲରେ ବୁଲୁଛନ୍ତି ।

ସିକୋ, ଗଡ଼ମାଣିତ୍ରି, ସାନପଦର ପ୍ରଭୃତି ଗାଁରେ ରଣପୁରର ପଳାତକମାନଙ୍କର ଭିଡ଼ ହୋଇଗଲାଣି । ଆଖ ପାଖ ଯେତେ ଗାଁ ଥିଲା ସେଠାକାର ଲୋକେ ନିଜ ନିଜ ଘରେ ଆଶ୍ରୟ ପ୍ରାର୍ଥୀଙ୍କୁ ସ୍ଥାନଦେଇ ସେମାନଙ୍କ ପଛରେ ଛିଡ଼ା ହୋଇଗଲେ । କି ବୈପ୍ଳବିକ ଉନ୍ମାଦନା ! ଗରିବ ଘରର ସ୍ତ୍ରୀଲୋକେ ମଧ୍ୟ ସେମାନଙ୍କ ଘରେ ଥିବା ମୁଠାଏ ଚାଉଳକୁ ବାଣ୍ଟେଇ କରି ସେମାନଙ୍କୁ ଖାଇବାକୁ ଦେବାକୁ କୁଣ୍ଠା ବୋଧ କଲେ ନାହିଁ. କି ପୁରୁଷ କି ସ୍ତ୍ରୀ ସମସ୍ତେ ଏମାନଙ୍କର ଖାଇବା ଓ ରହିବା ବ୍ୟବସ୍ଥାରେ ଲାଗିଲେ । ଯେଉଁମାନେ ରଣପୁର ଭିତରେ ରହି ଯାଇଥିଲେ ସେମାନଙ୍କୁ ବୋହି ଆଣିଲେ । ପ୍ରାଣନାଥ ପଟ୍ଟନାୟକ ଗଙ୍ଗାଧର ପାଇକରାୟ, ଗଙ୍ଗାଧର ମିଶ୍ର, ପର୍ଶୁରାମ ପଦାତିକରାଏ ପ୍ରଭୃତି ଲୋକଙ୍କ ମନରେ ସାହାସ ଫେରାଇ ଆଣିବାକୁ ଓ ସେମାନଙ୍କୁ ଦମ୍ଭ ଦେବାପାଇଁ ରଣପୁର ଭିତରକୁ ପଶିଲେ । ରଘୁ, ଦିବାକର ପ୍ରଭୃତି ବହୁଲୋକ ଗିରଫ ହେଲେ ଏବଂ ସେମାନଙ୍କ ବିରୁଦ୍ଧରେ ମକଦ୍ଦମା ଚାଲିଲା । ଲୋକଙ୍କ ପକ୍ଷରୁ ଏହି ମକଦ୍ଦମା ଲଢ଼ିବା ପାଇଁ ପ୍ରାଣନାଥ ପଟ୍ଟନାୟକ ଓ ଗଙ୍ଗାଧର ପାଇକରାୟ ଡିଫେନ୍ସ କମିଟି ଗଢ଼ି ଟଙ୍କା ପଇସା ଆଦାୟ କରିବାକୁ ଲାଗିଲେ ଓ ଓକିଲ ନିଯୁକ୍ତ କରି ମକଦ୍ଦମା ଲଢ଼ିବାର ବ୍ୟବସ୍ଥା କଲେ ।

ଦିବାକର ଗିରଫ ହେବା ପୂର୍ବରୁ ଗୃହଅଗ୍ନି ମୋ ପାଖରେ ଥିଲା । ତାକୁ ଖୁବ ସତର୍କତାର ସହିତ ରଖିଥିଲି । ଆମେ ଦିବାକରଙ୍କୁ ଦୂରକୁ କେଉଁ ଗୋପନୀୟ ସ୍ଥାନରେ ପଠାଇଦେବା ବ୍ୟବସ୍ଥାରେ ବ୍ୟସ୍ତଥିଲୁ । ଏହି ସମୟରେ ଆମେ ନଥିଲାବେଳେ ଦିବାକର ଖୋର୍ଦ୍ଧା କୋର୍ଟରେ ଯାଇ ଆତ୍ମସମର୍ପଣ କଲା । ମୁଁ ଓ ମୋର ବନ୍ଧୁ ଦାମୋଦର ମିଶ୍ର ଏ ଖବର ପାଇ ଆମ ଅଫିସକୁ ଧାଇଁ ଆସିଲୁ । ଦେଖିଲୁ ବାସ୍ତବିକ ଦିବାକର ନାହିଁ । ସେଠାରୁ ହାଜତକୁ ଧାଇଁଲୁ, ଦେଖିଲୁ ସେଠାରେ ସେ କଡ଼ା ପହରା ଭିତରେ ବନ୍ଦୀ । ଆମ ସହିତ ତା'ର ଭେଟ କରାଇ ଦିଆହେଲା ନାହିଁ । ସଞ୍ଜ ବେଳକୁ ଆମର ଆଖି ଆଗରେ ତାକୁ ଖୋର୍ଦ୍ଧା ଜେଲକୁ ନିଆଗଲା । ମୁଁ ଓ ଦାମ ମିଶ୍ର ଘୋର ଦୁଃଖରେ ଫେରିଲୁ । ଏ ସବୁ କେବଳ ସ୍ୱପ୍ନ ଭଳି ଲାଗୁଛି । ଅତୀତର କେଉଁ ଅଜଣା ରାଜ୍ୟରେ ଏ ସବୁ ଛପି ଯାଉଛି ।

ଠିକ୍ ଏହା ପୂର୍ବରୁ ରଘୁ ଧରା ପଡ଼ିଥିଲା ସିକୋରୁ । ସେ ସିକୋରେ ଆତ୍ମଗୋପନ କରି ରହିଥିଲେ । ଗୋଇନ୍ଦା ପୁଲିସ ସେ ଗାଁରେ ମଧ୍ୟ ରଣପୁର ଲୋକଙ୍କର ଖବର ନେଉଥିଲେ । ରଘୁକୁ ଧରିବା ପାଇଁ ଯେତେବେଳେ ଉଦ୍ୟମ କଲେ ସେତେବେଳେ ସେ ଗୋଟିଏ ଛଣଗଦା ଭିତରେ ଲୁଚି ଯାଇଥିଲେ, କିନ୍ତୁ ପୁଲିସ ଓରଗିଣ୍ଡି ସେଠାରୁ ତାକୁ ଗିରଫ କରିନେଲେ ।

ଏହି ମକଦ୍ଦମାରେ ଆମେ ଦୀନବନ୍ଧୁ ସାହୁଙ୍କୁ ନିଯୁକ୍ତ କରିଥିଲୁ ଏବଂ ଲକ୍ଷ୍ମୀଧର ମହାନ୍ତି ସରକାରଙ୍କ ପକ୍ଷରୁ ରହିଲେ । ରଣପୁରରେ ବନ୍ଦୀମାନଙ୍କୁ ରକ୍ଷା କରିବା ପାଇଁ ଆମର ସମସ୍ତ ଚେଷ୍ଟା ସତ୍ତ୍ୱେ ଅନେକେ ଦୀର୍ଘ ଦିନ ପାଇଁ ବନ୍ଦୀ ହେଲେ ଏବଂ ଶେଷରେ ରଘୁ, ଦିବାକରଙ୍କୁ ଫାଶି ହେଲା । ରଘୁ ବାସ୍ତବିକରେ ସେଦିନ ସଭାରେ ଉପସ୍ଥିତ ନଥିଲା । ସେମାନଙ୍କର ଅପରାଧ ସେମାନେ ଥିଲେ ଆନ୍ଦୋଳନର ନେତା । ବ୍ରିଟିଶ ସାମ୍ରାଜ୍ୟବାଦର ନ୍ୟାୟ ଓ ଧର୍ମର ବିଚାରାଳୟକୁ ପରିହାସ କରି ସେଦିନ ସେମାନେ ଫାଶି ଦଉଡ଼ିରେ ଯେଉଁ ପ୍ରାଣବଳୀ ଦେଲେ ଏ ଦେଶର ମୁକ୍ତିପାଇଁ ବ୍ରିଟିଶ ସାମ୍ରାଜ୍ୟବାଦର ପତନ ପାଇଁ ତାହା ବ୍ୟର୍ଥ ହୋଇନାହିଁ । ସେମାନଙ୍କର ପ୍ରାଣଦଣ୍ଡର ମାତ୍ର ଆଠବର୍ଷ ପରେ ବ୍ରିଟିଶ ସାମ୍ରାଜ୍ୟବାଦକୁ ଏ ଦେଶରୁ ବିଦାୟ ନେବାକୁ ପଡ଼ିଲା ।

ବିପ୍ଳବର ଏହି ଗୌରବମୟ ବିଜୟକୁ ଶକ୍ତିଶାଳୀ କରି ଆଗେଇ ନେବା ପରିବର୍ତ୍ତେ କଂଗ୍ରେସର ନେତାମାନେ ଶାଗୁଣା ପଲପରି ନିଜ ନିଜର ନୀଚ ସ୍ୱାର୍ଥପାଇଁ ଭାରତବର୍ଷଟାକୁ ବିଦାରି ଖାଇଯିବାକୁ ଲାଗିବା ଫଳରେ ଆଜି ଓଡ଼ିଶାର ଗଗନରେ ପୁଣି ଯେଉଁ ରାଜତନ୍ତ୍ରର ରାହୁ ଥରକୁ ଥର ଶାସକ ଭାବରେ ଦେଖାଦେଉଛି । ଏହାହିଁ

ଜୀବନର ଉଦ୍ଦେଶ୍ୟ । କିନ୍ତୁ ଏ କଥା ସୁନିଶ୍ଚିତ ଯେ ଯେଉଁ ରକ୍ତ ଶହୀଦମାନେ ଦାନ କରିଯାଇଛନ୍ତି ତାହା କଦାପି ବ୍ୟର୍ଥ ହେବ ନାହିଁ । ଇତିହାସର ଅଗ୍ରଗତି କିଛି ସମୟ ପାଇଁ ଅମିମାଂସାରେ କାନ୍ତ ହୋଇ ପଛକୁ କେବେ ପାଦ ପକାଇବ ନାହିଁ । ଅଗ୍ରଗତି ହିଁ ତାର ଚରିତ୍ର । ଯେଉଁ ପ୍ରତିକ୍ରିୟାଶୀଳ ଶକ୍ତି ଅନ୍ଧପରି ଇତିହାସର ଇଙ୍ଗିତକୁ ଦେଖିପାରୁ ନାହାନ୍ତି ତାଙ୍କର ଭାଗ୍ୟରେ ବିପର୍ଯ୍ୟୟ ସୁନିଶ୍ଚିତ । ଶହୀଦଙ୍କ ରକ୍ତଦାନ କେବେହେଲେ ବ୍ୟର୍ଥ ହୁଏ ନାହିଁ ।

# ଡିଷ୍ଟ୍ରିକ୍ଟ ବୋର୍ଡ ନିର୍ବାଚନ

୧୯୩୮ ରେ ଗଡ଼ଜାତ ଆନ୍ଦୋଳନ ଚାଲିଥିଲାବେଳେ ମୁଁ ଢେଙ୍କାନାଳରେ ସତ୍ୟାଗ୍ରହ କରିବାକୁ ଗଲି । ସେତିକିବେଳେ ପୁରୀଜିଲ୍ଲା ବୋର୍ଡ଼ ନିର୍ବାଚନ ହେବାର ଥାଏ । ଖୋର୍ଦ୍ଧାରୁ ପ୍ରାର୍ଥୀ ହେବାପାଇଁ ଜିଲ୍ଲା କଂଗ୍ରେସ କମିଟିରେ ଦରଖାସ୍ତ କରି ସତ୍ୟାଗ୍ରହପାଇଁ ଢେଙ୍କାନାଳ ଚାଲିଗଲି । ପୁରୀଜିଲ୍ଲା କଂଗ୍ରେସ କମିଟିରେ ସେତେବେଳେ ଦକ୍ଷିଣପନ୍ଥୀ ଓ ବାମପନ୍ଥୀ ଦୁଇଟିଦଳ କାର୍ଯ୍ୟ କରୁଥାଏ । ମୁଁ ଥାଏ ବାମପନ୍ଥୀ ଦଳରେ । ତେଣୁ ମୋର ଦରଖାସ୍ତ ଜିଲ୍ଲା କମିଟିରେ ନାମଞ୍ଜୁର ହୋଇଗଲା । ମୋ ପରିବର୍ତ୍ତେ ଓଳଙ୍ଗିର ହଜାର ହଜାର ଏକର ଜମିର ମାଲିକ ଦାଶରଥି ପଟ୍ଟନାୟକଙ୍କୁ ବଚ୍ଛାଗଲା । ଜିଲ୍ଲାକମିଟିର ନେତୃତ୍ୱରେ ଥାନ୍ତି ଜଗନ୍ନାଥ ରଥ, ଲାଲ ବିହାରୀ ଦାସ, ସତ୍ୟବାଦୀ ନନ୍ଦ ପ୍ରଭୃତି । ଗୋପବନ୍ଧୁ ଚୌଧୁରୀ ଥାନ୍ତି ଉତ୍କଳ ପ୍ରାଦେଶିକ କଂଗ୍ରେସ କମିଟିର ସଭାପତି । ପ୍ରାଦେଶିକ କମିଟି ଜିଲ୍ଲା କମିଟିର ନିଷ୍ପତ୍ତିକୁ ରଦ୍ଦ କରି ମୋତେ ପ୍ରାର୍ଥୀରୂପେ ବାଛିଲେ । ତେଣୁ ମୋତେ ପ୍ରାର୍ଥୀରୂପେ ଛିଡ଼ା ହେବାକୁ ପଡ଼ିଲା । ମୋର କିନ୍ତୁ ସେତେବେଳେ ଏଥିରେ ଆଉ ଆଗ୍ରହ ନଥିଲା । କାରଣ ଗଡ଼ଜାତ ଆନ୍ଦୋଳନ ସେତେବେଳେ ଘୋରଘୋରରେ ଲାଗିଥାଏ । ମୋତେ ସେଥିପାଇଁ ଅବିଶ୍ରାନ୍ତ କାମ କରିବାକୁ ପଡ଼ୁଥାଏ । ଯାହାହେଉ ମୋ ବିରୁଦ୍ଧରେ କେହି ପ୍ରାର୍ଥୀ ଛିଡ଼ା ନ ହେବାରୁ ମୁଁ ନିର୍ଦ୍ଦ୍ୱନ୍ଦରେ ନିର୍ବାଚିତ ହେଲି ।

ପଣ୍ଡିତ ଗୋଦାବରୀଶ ମିଶ୍ର ଓ ଚନ୍ଦ୍ରମଣି ମିଶ୍ର ଆମ ବିରୁଦ୍ଧରେ ପ୍ରଚାରଆଦି ପ୍ରଚାର କରୁଥାନ୍ତି । କଂଗ୍ରେସ ଭିତରେ ଏହି ଗୋଷ୍ଠିର ନେତାମାନେ ସବୁବେଳେ ଗରିବ ଚାଷୀ ମୂଲିଆଙ୍କ ଅସ୍ୱାର୍ଥ ବିରୁଦ୍ଧରେ କଂଗ୍ରେସକୁ ବ୍ୟବହାର କରିବାକୁ ପ୍ରାଣପଣେ ଚେଷ୍ଟା କରୁଥିଲେ । ମୋର ଅପରାଧ ଥିଲା ସେମାନଙ୍କର ଜନବିରୋଧ କାର୍ଯ୍ୟକୁ ମୁଁ ସକ୍ରିୟ ଭାବରେ ବିରୋଧ କରୁଥିଲି । ପଣ୍ଡିତ ଗୋଦାବରୀଶ ମିଶ୍ରଙ୍କ

ବିରୁଦ୍ଧରେ ଏହି ସମୟରେ ମୁଁ ଥରେ ପ୍ରାଦେଶିକ କଂଗ୍ରେସ କମିଟୀକୁ ବାଣପୁରରୁ ପ୍ରାର୍ଥୀ ହେଲି । ସେ ମୋର ପ୍ରସ୍ତାବକର ଜାଲ ଦସ୍ତଖତ କରାଇ ନିଜର ପ୍ରସ୍ତାବକ ଭାବରେ ଦରଖାସ୍ତ କଲେ । ନନ୍ଦକିଶୋର ଦାସ ପ୍ରବର୍ତ୍ତନ ବାଚସ୍ପତି ଦରଖାସ୍ତ ସବୁର ବିଚାରକ ଥାଆନ୍ତି । ମୋର ପ୍ରସ୍ତାବକଙ୍କୁ ବାଣପୁରରୁ ଅଣାଇ ସାକ୍ଷୀଗୋପାଳ ଷଣ୍ଢାକେନ୍ଦ୍ରର କାଦୁଆ ଆଶ୍ରମରେ ତାଙ୍କ ପାଖରେ ହାଜର କରାଇବାକୁ ନିର୍ଦ୍ଦେଶ ଦେଲେ । କାରଣ ସେ ଆସିଲେ କେଉଁଟା ତା'ର ପ୍ରକୃତ ଦସ୍ତଖତ ସେ କହିବ । ଅଣ୍ଟାରେ ପଇସା ନଥାଏ । ସାଇକେଲରେ ସାକ୍ଷୀଗୋପାଳରୁ ଖୋର୍ଦ୍ଧାବାଟେ ବାଣପୁର ପର୍ଯ୍ୟନ୍ତ ୬୬ ମାଇଲ୍ ଏକ ନିଶ୍ୱାସରେ ପଳେଇଲି । ମୁଁ ପହଞ୍ଚିଲା ବେଳକୁ ଗୋଦାବରୀଶ ମିଶ୍ରଙ୍କ ମଟର ଆଗରୁ ପହଞ୍ଚି ମୋର ପ୍ରସ୍ତାବକଙ୍କୁ ହରଣଚାଳ କରି ନେଇ ଗଲେଣି । ମୁଁ ନିରୁପାୟ ହୋଇ ସନ୍ଧ୍ୟାପରେ ବାଲୁଗାଁ ଫେରିଲି । ମୁଁ ସ୍ୱପ୍ନରେ ଭାବି ପାରିନାହିଁ ଯେ ଗୋଦାବରୀଶ ମିଶ୍ରଙ୍କ ଲୋକେ ମୋତେ ଫେରିଲା-ବେଳକୁ ବାଡ଼େଇବା ପାଇଁ ଠେଙ୍ଗା ଧରି ବାଟରେ ଜଗିଛନ୍ତି । ମୁଁ କିଛିବାଟ ଗଲା ପରେ ମୋ ପଛପଟୁ ଠେଙ୍ଗା ପାହାର ମୋ ଉପରେ ବସିଲା, ମୁଁ ସାଇକେଲରୁ ପଡ଼ିଗଲି । କିନ୍ତୁ ସୌଭାଗ୍ୟକୁ ୩୦, ୪୦, ହାତ ଦୂରରେ ଶଗଡ଼ିଆମାନେ ରୋଷେଇ କରୁଥିଲେ । ମୋର ପାଟି ଶୁଣି ସେମାନେ ଚୋର ଭାବି ଧାଇଁ ଆସିଲେ । ଏମାନଙ୍କ ପାଇଁ ମୁଁ ରକ୍ଷା ପାଇଗଲି । ନଚେତ୍ ସେଦିନ ମୋ ଅବସ୍ଥା କ'ଣ ହୋଇଥାନ୍ତା କେଜାଣି ?

## ତେଲଙ୍ଗରେ ଗାନ୍ଧିଜୀ

ତେଲଙ୍ଗରେ ପଣ୍ଡିତ କୃପାସିନ୍ଧୁ ହୋତା ଗୋଟିଏ ଆଶ୍ରମ କରିଥାନ୍ତି । ଖୋର୍ଦ୍ଧାରୁ ପୁରୀ ସାଇକେଲରେ ଗଲା ଆସିଲାବେଳେ ଆମେ ଏହିଠାରେ ପ୍ରାୟ ରହୁଥିଲୁ ।

ଏହିଠାରେ ନିଖିଳ ଭାରତ ଗାନ୍ଧି ସେବାସଂଘର ସମ୍ମିଳନୀ ବସିବାର ଠିକ ହେଲା । ପ୍ରତିନିଧିମାନଙ୍କର ରହିବାପାଇଁ ଅସ୍ଥାୟୀ ଘରସବୁ ନଡ଼ିଆଗୁଣ୍ଡିରେ ତିଆରି ହେଲା । ସାଧାରଣ ସଭାସ୍ଥାନ, ଦେଖଣାହାରି ଲୋକଙ୍କ ପାଇଁ ହୋଟେଲ, ପ୍ରଦର୍ଶନୀ, ବୈଠକଘର ଆଦି ସବୁ ତିଆରି ହେଲା । ସେତେବେଳେ ଅନେକ ପ୍ରଦେଶରେ କଂଗ୍ରେସ ସରକାର । ଓଡ଼ିଶାରେ ବିଶ୍ୱନାଥ ଦାସ ମୁଖ୍ୟମନ୍ତ୍ରୀ ଥାଆନ୍ତି । ପଣ୍ଡିତ ନୀଳକଣ୍ଠ ଦାସ, ପଣ୍ଡିତ ଗୋଦାବରୀଶ ମିଶ୍ର, ଗଙ୍ଗାଧର ଦିବାକର ପଟ୍ଟନାୟକ, ଯଦୁମଣି ମଙ୍ଗରାଜ, ଚନ୍ଦ୍ରମଣି ମିଶ୍ର ପ୍ରଭୃତି ଏହି ମନ୍ତ୍ରୀମଣ୍ଡଳ ବିରୁଦ୍ଧରେ

ଦୁର୍ନୀତିର ନାନା ଅଭିଯୋଗ କରିଥାନ୍ତି । ଏହି ବୈଠକକୁ ସର୍ଦ୍ଦାର ବଲ୍ଲଭ ଭାଇ ପଟେଲ, ଆବୁଲ କଲମ ଆଜାଦ, ଜୟପ୍ରକାଶ ନାରାୟଣ ପ୍ରଭୃତି ବଡ଼ନେତା ଆସିଥିଲେ ।

ଆମେମାନେ କଂଗ୍ରେସ ସାମ୍ୟବାଦୀ ଦଳରେ ଥାଉ । ଆମର ଗୋଟିଏ କେମ୍ପ ପାଇଁ ସେ ପରୀ ଚୌଧୁରୀଙ୍କୁ ଅନୁରୋଧ କଲୁ । କିନ୍ତୁ ଆମକୁ ସେଠାରେ କେମ୍ପ କରିବା ପାଇଁ ଅନୁମତି ମିଳିଲା ନାହିଁ । ସେଠାରୁ ଦେଢ଼ମାଇଲ ଦୂରରେ ଦୁର୍ଗାଚରଣ ମହାନ୍ତିଙ୍କ ଘରେ ଆମେ କେମ୍ପ କରି ରହିଲୁ ।

ଗାନ୍ଧି ଆସିଗଲା ପରେ ଲୋକଗହଳି ଖୁବ୍ ହେଲା । ଆମେ ଖରାବେଳେ ଏହି ଲୋକଙ୍କୁ ଧରି ବହୁ ସାଧାରଣ ସଭାରେ ସାମ୍ୟବାଦ, କୃଷକ ଆନ୍ଦୋଳନ କଥା ବୁଝାଇବାକୁ ଲାଗିଲୁ ଏବଂ ପ୍ରଚାରପତ୍ର ସବୁ ବାଣ୍ଟିଲୁ । ଗୋପବନ୍ଧୁ ଚୌଧୁରୀ, ଆଚାର୍ଯ୍ୟ ହରିହର ଦାସ, କୃପାସିନ୍ଧୁ ହୋତା ପ୍ରଭୃତି ସାମ୍ୟବାଦୀ ଓ କୃଷକ ସଭାର ଆନ୍ଦୋଳନକୁ ବିରୋଧ କରୁଥାନ୍ତି । ଗାନ୍ଧିଙ୍କର ମତଥାଏ ଜମିଦାରମାନେ ମାରଫତ୍‌ଦାର ହିସାବରେ ରହିବେ । ଜମିଦାରୀପ୍ରଥା ଉଚ୍ଛେଦକୁ ଏମାନେ ବିରୋଧ କରୁଥାନ୍ତି । ଏ ସବୁ ଆନ୍ଦୋଳନ ଗାନ୍ଧିଜୀଙ୍କ ନୀତିରେ ମୁହାଉ ନଥିଲା । ତେଣୁ ଗୋପବନ୍ଧୁ ଚୌଧୁରୀ ଡେଙ୍ଗୁରାଦ୍ୱାରା ଜଣାଇଦେଲେ ଯେ ସେ ଅଞ୍ଚଳରେ ତାଙ୍କର ସଭାଛଡ଼ା ଆଉ କୌଣସିପ୍ରକାର ସଭା ହେବନାହିଁ । ତଥାପି ଆମେ ଆମ ବାଟରେ ସଭାକରି ଚାଲିଲୁ । ଏତେ ଲୋକ, ଆମେ ଚାହୁଁ ତାଙ୍କ କଥା ନ କହି ଛାଡ଼ିଦେବୁ ? ଗାନ୍ଧିଜୀ ସବୁଦିନ ପ୍ରାର୍ଥନା ସଭା କରନ୍ତି ଏବଂ ତାଙ୍କର କଥା କହନ୍ତି । ମଜାର କଥା ଯେ ଲୋକେ ସବୁ ଶୁଣନ୍ତି କିନ୍ତୁ ବୁଝନ୍ତି ଯେ ସେ ଜମିଦାର, ମହାଜନଙ୍କ ବିରୁଦ୍ଧରେ ଅତ୍ୟାଚାର ବିରୁଦ୍ଧରେ କହୁଛନ୍ତି । ତେଣୁ ଗାଁ ଗହଳକୁ କଥାଯାଏ ଜମିଦାରଙ୍କ ବିରୁଦ୍ଧରେ ।

ଗୋଟିଏ ଦିନ ସବୁମତବାଦର ଲୋକଙ୍କୁ ଗାନ୍ଧିଜୀ ଗୋଟିଏ ବୈଠକକୁ ଡାକିଲେ । ଗାନ୍ଧିଙ୍କ ପାଖରେ ବଲ୍ଲଭଭାଇ ପଟେଲ ବସିଥାନ୍ତି ମଞ୍ଚ ଉପରେ । ଗାନ୍ଧିଜୀ କାହାର କ'ଣ ପ୍ରଶ୍ନ ଅଛି ଲେଖିକରି ଦବାକୁ କହିଲେ । ମୋହନ ଦାସ ମୋତେ ଅଡ଼େଇକରି କହିଲେ, "ଦେ ପ୍ରଶ୍ନ ଲେଖିକରି ଦେଉନୁ ।" ମୁଁ ଦୁଇଟି ପ୍ରଶ୍ନ ଲେଖିକରି ଦେଲି—ଜମିଦାରମାନେ କାହିଁକି ଲୋକଙ୍କର ମାରଫତ୍‌ଦାର ହୋଇ ରହିବେ ? ଲୋକେତ ନିଜକୁ ସାବାଳକ ବୋଲି ବିଚାରୁଛନ୍ତି । ଆଉ ଜମିଦାରମାନେ ଅତ୍ୟାଚାରୀ ତେଣୁ ଲୋକେ ସେମାନଙ୍କର ସମ୍ପତ୍ତିରେ ଅଧିକାରୀ ହେବାରେ ଆପତ୍ତି କ'ଣ ? ପ୍ରଶ୍ନ କାଗଜସବୁ ବଲ୍ଲଭଭାଇ ପଟେଲ ହାତରେ ଦେଉଥାନ୍ତି । ଗାନ୍ଧିଜୀ ସେହିସବୁ

ଯଥାର୍ଥ ଉତ୍ତର ଦେଇଥାନ୍ତି । ମୋ ପ୍ରଶ୍ନ ଚବିଶ ଘଣ୍ଟାରେ ଗାନ୍ଧିଜୀ ପଢ଼ି ଶୁଣାଇଦେଲେ । କିନ୍ତୁ ଗାନ୍ଧିଜୀ ଏହାର ଉତ୍ତର ଦେଲେନାହିଁ । ପରେ ଅନେକ କାଗଜ-ଘଣ୍ଟିକ ଧରି ଲେଖିଲେ ଯେ ଏ ପ୍ରଶ୍ନ କାମର ଦେଖନ୍ତୁ ଲଜ୍ଜା ହୁଅନ୍ତି । ମୁଁ ଛଡ଼ା-ବେଳରୁ ଅତି ଗମ୍ଭୀରଭାବରେ କହୁଥିଲେ 'ଗାନ୍ଧିଜୀ କ'ଣ ଉତ୍ତର ଦେବେ ?' ମୋ ସଙ୍ଗେ ସାଥୀମାନେ ଦେଖାକରିବା ମୁଁ ବୁଝାଇଦେବି । ସେ ସାଥୀ ବୁଝାଇଲେ ମୁଁ ଜାଣିଥିଲି । ତେଣୁ ତାଙ୍କ ପାଖକୁ ଯିବା ଦରକାର ଭାବିଲି ନାହିଁ । ତାଙ୍କର ଓ ଗାନ୍ଧିଜୀଙ୍କ ମତାମତ ମୁଁ ଆଗରୁ ଜାଣିଥିଲି । ତେବେ ସାଧାରଣ କର୍ମୀ ଓ ଲୋକେ ଗାନ୍ଧିଜୀଙ୍କ ମୁହଁରୁ ମୋ ପ୍ରଶ୍ନର ଉତ୍ତର ଶୁଣନ୍ତୁ ଏହା ଥିଲା ମୋ ଅଭିପ୍ରାୟ । କାରଣ ଏହି ପ୍ରଶ୍ନ ଥିଲା ଗାନ୍ଧିବାଦୀ ଓ ଆମ ଭିତରେ ବିବାଦର ପ୍ରଧାନ ପ୍ରଶ୍ନ । ଆମେ ଜମିଦାରୀ ଉଚ୍ଛେଦ ଓ ଅତ୍ୟାଚାର ବିରୁଦ୍ଧରେ ସମୂଳ ଆନ୍ଦୋଳନ କରୁଥାଉଁ । ଆଉ ଗାନ୍ଧିବାଦୀମାନେ ଏହାର ବିରୋଧ କରୁଥାନ୍ତି ।

ଆମର ଆନ୍ଦୋଳନ ବ୍ୟର୍ଥ ହୋଇନାହିଁ । ଜମିଦାରୀପ୍ରଥା ଉଠିଛି । ଆମର ଆନ୍ଦୋଳନ ଥିଲା ସମୟୋପଯୋଗୀ । ଜମିଦାରୀପ୍ରଥା ସମାଜରେ ଓ ଆର୍ଥିକ କ୍ଷେତ୍ରରେ ସମସ୍ୟା ସୃଷ୍ଟି କରୁଥିଲା ଓ ଅଗ୍ରଗତି ପାଇଁ ବାଧା ଦେଉଥିଲା । ତେଣୁ ତାର ଉଚ୍ଛେଦ ଥିଲା ସମାଜ ଓ ଦେଶ ପକ୍ଷରେ ଅତ୍ୟନ୍ତ ଆବଶ୍ୟକ । ଆମର ଏଥିରେ ଥିଲା ଦୃଢ଼-ବିଶ୍ୱାସ ଓ ବାସ୍ତବ ଦୃଷ୍ଟିକୋଣ । ସେଥିପାଇଁ ଏ ଆନ୍ଦୋଳନ ମଧ୍ୟ ସଫଳ ହୋଇଛି ।

## ବାଉଁଆଙ୍କ ଭିତରେ ମତଭେଦର ସୂତ୍ରପାତ

ଆମେ ସମସ୍ତେ କଂଗ୍ରେସ ଓ କଂଗ୍ରେସର ସାମ୍ୟବାଦୀ ଦଳରେ ଥାଉ । କଂଗ୍ରେସ ସାମ୍ୟବାଦୀ ଦଳର ମୁଖପତ୍ର 'ସାରଥୀ' ପ୍ରକାଶ ପାଉଥାଏ । ଏହି ସାପ୍ତାହିକ ପତ୍ରିକାଟି ହେଉଛି ଓଡ଼ିଶାର ପ୍ରଥମ ଖୋଲାଖୋଲି ପ୍ରକାଶିତ ସାମ୍ୟବାଦୀ ପତ୍ରିକା । କିଛିଦିନ ଏହା ପ୍ରକାଶ ପାଇବା ପରେ ସାପ୍ତାହିକ 'କୃଷକ' ପ୍ରକାଶ ପାଇଲା । 'କୃଷକ' କାଗଜ ହିଁ ଓଡ଼ିଶାର କେବଳ କୃଷକ ଆନ୍ଦୋଳନର ସଙ୍ଗଠକ ଓ ସଂଗ୍ରାମ ହତିଆର ନଥିଲା, ଏହା ଓଡ଼ିଆ ଗଡ଼ଜାତ ଆନ୍ଦୋଳନର ସଙ୍ଗଠକ, ପରିଚାଳକ, ପ୍ରଚାରକ ଥିଲା । ଏହା ଆନ୍ଦୋଳନକୁ ଯୋଗାଉଥିଲା ସାହସ, ବଳ ଓ ସୃଷ୍ଟି କରୁଥିଲା ଉତ୍ତେଜନା ।

ଏହି ଗଡ଼ଜାତ ଆନ୍ଦୋଳନକୁ ବାସ୍ତବରେ ପରିଚାଳନା କରୁଥିଲା କଂଗ୍ରେସ ସୋସିଏଲିଷ୍ଟ ପାର୍ଟି । କଂଗ୍ରେସ ସୋସିଏଲିଷ୍ଟ ପାର୍ଟି ଭିତରେ କମ୍ୟୁନିଷ୍ଟମାନେ ଥିଲେ । ଏହି କମ୍ୟୁନିଷ୍ଟମାନେ ଆନ୍ଦୋଳନକୁ ଉଚ୍ଚସ୍ତରକୁ ଅଧିକ ସଂଗ୍ରାମୀ ସ୍ତରକୁ ନେଇଯିବାକୁ ବରାବର ଚେଷ୍ଟା କରୁଥିଲେ । ମାତ୍ର ଅବସ୍ଥାରେ ଏହାକୁ ଗ୍ରହଣ କରିବାକୁ ପ୍ରସ୍ତୁତ ନଥିଲେ । ଆଉ ଏମାନେ ଥିଲେ ବାସ୍ତବରେ ଆନ୍ଦୋଳନ ପରିଚାଳନାରେ, ତଥା ଫିଲ୍ଡ କାମରେ ଅଗ୍ରଣୀ । ଭଗବତୀ ଚରଣ ପାଣିଗ୍ରାହୀ ଗୁରୁଚରଣ-ପଟ୍ଟନାୟକ, ବୈଦ୍ୟନାଥ ରଥ, ଅନନ୍ତ ପଟ୍ଟନାୟକ, ପ୍ରାଣନାଥ ପଟ୍ଟନାୟକ, ମୁଁ, ଗଙ୍ଗାଧର ମିଶ୍ର, ବୈଷ୍ଣବ ପଟ୍ଟନାୟକ ପ୍ରଭୃତି ସକ୍ରିୟ ଭାବରେ କାମକରୁଥାଉ ନେତୃତ୍ୱ ପରିଚାଳନାରେ । ଅନନ୍ତ ପଟ୍ଟନାୟକ ଓ ଶଚୀରାଉତରାୟଙ୍କ ଗଡ଼ଜାତ ରଜାଙ୍କ ବିରୁଦ୍ଧରେ କବିତା ସବୁ ପ୍ରକାଶ ପାଉଥାଏ । ଢେଙ୍କାନାଳ ଓ ଅନ୍ୟ ଗଡ଼ଜାତରେ ଲୋକଙ୍କ ପାଖରେ ଏହା ଏତେ ପ୍ରିୟ ହୋଇ ଉଠିଥାଏ ଯେ ରାସ୍ତା ଘାଟରେ, ପୋଖରୀ କୂଳରେ ମଇପେ ପିଲାଏ ପର୍ଯ୍ୟନ୍ତ ଗାଇବାରେ ଲାଗିଲେ ଏବଂ ଲଢ଼େଇ କରୁଥିବା ପ୍ରଜାମଣ୍ଡଳର କର୍ମୀମାନେ ବାଟରେ ଗାଁ ଗାଁରେ ଏସବୁ ଗାଇବୁଲି ଲୋକଙ୍କ ମନରେ ଉନ୍ମାଦନା ସୃଷ୍ଟି କରନ୍ତି । କଣ୍ଟାହନ୍ଦ୍ରର ଛଦ୍ମ ନାଁରେ ସାରଙ୍ଗଧର ଦାସ ଗଡ଼ଜାତରେ କାହାଣୀ ଲେଖୁଥାନ୍ତି । ଏସବୁ ଲାଗି ଲୋକପ୍ରିୟ ହେଉଥାଏ ।

ଏହି ସମୟରେ ନିଖିଳ ଭାରତ କଂଗ୍ରେସ ସୋସିଏଲିଷ୍ଟ ପାର୍ଟିରେ ଜଣେକ ସମ୍ପାଦକ ଥିଲେ ଏମ୍. ଆର. ମସାନି । ସେ ଖଣ୍ଡିଏ ପୁସ୍ତିକା ପ୍ରକାଶ କରି ନବକୃଷ୍ଣଙ୍କ ପାଖକୁ ପଠାଇଲେ । ବମ୍ବେ ପ୍ରଦେଶରେ କମ୍ୟୁନିଷ୍ଟ ପାର୍ଟିର ଗୁପ୍ତ ରିପୋର୍ଟ ସେଥିରେ ପ୍ରକାଶ କଲେ । ସେଥିରେ ଯାହା ଲେଖାଥିଲା ତା'ର ସାରମର୍ମ ହେଉଛି ଭଗବତୀଚରଣ ପାଣିଗ୍ରାହୀ ହେଉଛନ୍ତି ଓଡ଼ିଶା କମ୍ୟୁନିଷ୍ଟପାର୍ଟିର ସମ୍ପାଦକ । ସେ ଓଡ଼ିଶା କଂଗ୍ରେସ ସାମ୍ୟବାଦୀ ଦଳର ସମ୍ପାଦକ ଥାଇ ନିଜର ପ୍ରଭାବ ବିସ୍ତାର କରୁଛନ୍ତି ଏବଂ ନବକୃଷ୍ଣ ଚୌଧୁରୀ ଗଡ଼ଜାତ ଆନ୍ଦୋଳନକୁ ମାନ୍ଦାମାଢ ଧରି ପଛେଇ ଦବା ବାଟ ଧରୁଛନ୍ତି ଇତ୍ୟାଦି । ଓଡ଼ିଶା କମ୍ୟୁନିଷ୍ଟପାର୍ଟିକୁ ଏ ରିପୋର୍ଟ ଯାଇଥିଲା କି ନାହିଁ ମୋର ସନ୍ଦେହ । କାରଣ ଭଗବତୀ ବାବୁ ସମସ୍ତଙ୍କୁ ଧରି ଗଡ଼ଜାତ ଆନ୍ଦୋଳନର ସଫଳତା ପାଇଁ ଯେପରି କୌଶଳରେ ଓ ବୁଦ୍ଧିର ସହିତ କାର୍ଯ୍ୟ କରୁଥିଲେ ସେଥିରେ ସେ ଏପରି ବିଭେଦ ସୃଷ୍ଟି କଲାଭଳି ରିପୋର୍ଟ ଦବା ମୋର ବିଶ୍ୱାସ ହୁଏନାହିଁ ।

ଯାହାହେଉ ଏହା କଂଗ୍ରେସ ସୋସିଏଲିଷ୍ଟ ପାର୍ଟି ଭିତରେ ସେହିଦିନରୁ ବିଭେଦସୃଷ୍ଟି ପାଇଁ ଏକ ହତିଆର ଭାବରେ କାମକଲା । ଏହି ପୁସ୍ତିକା ପ୍ରକାଶ

ପାଇବା ପରେ ଆମ ଭିତରେ ମନଫଟାଫଟି ହୋଇଗଲା । ନବକୃଷ୍ଣ ଚୌଧୁରୀ, ମାଲତୀ ଚୌଧୁରୀ. ସୁରେନ୍ଦ୍ରନାଥ ଦ୍ୱିବେଦୀ, ଗୌରାଙ୍ଗ ଚରଣ ଦାସ (ବାଗଲପୁର). ଗୌରଚରଣ ଦାସ (ବାଲେଶ୍ୱର) ପ୍ରଭୃତ ଗୋଟିଏ ପଟେ ଓ ଆମେ ପୁରୀ ଜିଲ୍ଲାର ସମସ୍ତେ, ବାଲେଶ୍ୱରର ବନମାଳୀ ଦାସ, ପ୍ରଭୃତ ଗୋଟିଏ ପଟ ହୋଇଗଲୁ । ଗଡ଼ଜାତ ଆନ୍ଦୋଳନ ମଧ୍ୟ ଅନେକଟା ଏହି କାରଣରୁ ଧିମେଇ ଗଲା ।

ନିଖିଳ ଭାରତ କଂଗ୍ରେସ ସାମ୍ୟବାଦୀ ଦଳର ନେତା ଜୟପ୍ରକାଶ ନାରାୟଣ ଓଡ଼ିଶାକୁ ଆସିଲେ । ନବକୃଷ୍ଣ ଚୌଧୁରୀଙ୍କ ଘରେ ମିଟିଂ ହେଲା । ଫନପାଳା କୃଷକସଭା ତରଫରୁ ଯେଉଁ ଆନ୍ଦୋଳନ ସୁରୁଦ୍ଧାରେ ଚଳାଉଥିଲେ ତାକୁ କଡ଼ା ସମାଲୋଚନା କଲେ । ମାଲତୀ ଚୌଧୁରୀ, ନବଚୌଧୁରୀ ଦଳଟି ଏହି ଆନ୍ଦୋଳନର ବିରୋଧ ମଧ୍ୟ କରୁଥିଲେ । ଏହି ଆଲୋଚନା ବଡ଼ ସରଗରମ ଅବସ୍ଥା ସୃଷ୍ଟି କଲା । ଜୟପ୍ରକାଶ ଖୋଲାଖୋଲି ଭାବରେ ନବକୃଷ୍ଣ ଚୌଧୁରୀଙ୍କ ଉପରେ ଓଡ଼ିଶାର କଂଗ୍ରେସ ସାମ୍ୟବାଦୀ ଦଳର ଭାର ଦେଇ ଚାଲିଗଲେ । ୧୯୩୯ରେ ଯୁଦ୍ଧ ଆରମ୍ଭ ହେବାର କିଛିଦିନ ପରେ ମିନୁମସାନି ଓଡ଼ିଶା ଆସିଲେ । ସେ ଗୁଡ଼ିଏ ଛପାଫର୍ମ ଆଣିଥିଲେ । ମୋର ଯେତେଦୂର ମନେହୁଏ ଗୌରୀଶଙ୍କର ପାର୍କ ପାଖ ତେଜ-ହୋଟେଲ କରକୁ ଯେଉଁ ଧର୍ମଶାଳା ସେହିଠାରେ କଂଗ୍ରେସ ସାମ୍ୟବାଦୀ ଦଳର ବୈଠକ ବସିଲା । ସେଥିରେ ମସାନି ବୁଝାଇଦେଲେ ଯେ କଂଗ୍ରେସ ସାମ୍ୟବାଦୀ ଦଳର ସଭ୍ୟମାନେ ସେହି ଫର୍ମରେ ଦସ୍ତଖତ କରି ସରକାରଙ୍କୁ ପଠାଇଦେଇ ଜଣାଇଦେବେ ଯେ ସେମାନେ ଯୁଦ୍ଧକୁ ବିରୋଧ କରୁଛନ୍ତି । ଯୁଦ୍ଧ ବିରୁଦ୍ଧରେ କୌଣସି ଆନ୍ଦୋଳନର କାର୍ଯ୍ୟକ୍ରମ ରହିଲା ନାହିଁ । ଜୟପ୍ରକାଶ ଆଗରୁ ନବକୃଷ୍ଣ ଚୌଧୁରୀଙ୍କ ହାତରେ ସବୁକ୍ଷମତା ଦେଇ ଦେଇଥିଲେ । ତେଣୁ କଂଗ୍ରେସ ସାମ୍ୟବାଦୀ ଦଳର ପୂର୍ଣ୍ଣଚ୍ଛେଦ ଏହିଠାରେ ଘଟିଲା । ଏହାପରେ ଆଉ ବୈଠକ ହୋଇନାହିଁ ।

କଂଗ୍ରେସ ସାମ୍ୟବାଦୀ ଦଳର ଉଦାର ପନ୍ଥୀଗଣ ଏବଂ ବିଭେଦର ସୂତ୍ରପାତ ନିଖିଳ ଭାରତ ସ୍ତରରେ ୧୯୩୬ରୁ ଦଳର ଲାହୋର (କଂଗ୍ରେସ) ସମ୍ମିଳନୀରୁ ଆରମ୍ଭ ହୋଇଛି ।

୧୯୩୬ ଲାହୋରଠାରେ କଂଗ୍ରେସ ସୋସିଏଲିଷ୍ଟ ପାର୍ଟିର ନିଖିଳ ଭାରତ ସମ୍ମିଳନୀ ବସିଲା । ମୁଁ ଓ ଭଗବତୀ ବାବୁ ସେଠାକୁ ପ୍ରତିନିଧି ନିର୍ବାଚିତ ହେଲୁ । ମୁଁ ପ୍ରଥମେ ଲାହୋରରେ ପହଞ୍ଚିଲି । ଭଗବତୀବାବୁ ମୋ ପରେ ଯାଇ ପହଞ୍ଚିଲେ । ଆଚାର୍ଯ୍ୟ ନରେନ୍ଦ୍ର ଦେବ ଅନ୍ୟ ଯେଉଁରେ ରହୁଥାନ୍ତି । ମୁଁ ତାଙ୍କ ସଙ୍ଗେ ଦେଖାକରିବାକୁ ଚାହିଁବାରୁ ଜୟପ୍ରକାଶ ନାରାୟଣ ମୋତେ ସାଙ୍ଗରେ ନେଇଗଲେ ।

ଗୋଟିଏ ସାଧାରଣ ସଭା ହୋଇନ ଥିଲା । ବାହରେ ସଭାରେ ଯୋଗଦେଲି । ଜୟପ୍ରକାଶ ନାରାୟଣ ସଭାପତି ହୋଇଥିଲେ । ଆଚାର୍ଯ୍ୟ ନରେନ୍ଦ୍ର ଦେବ, ଜୟପ୍ରକାଶ-ନାରାୟଣ, ସୋଲିବାଟଲିଓ୍ୱାଲା ପ୍ରଭୃତି ମିଅାଁ ଇଫ୍ତିଖାଁ ଉଦ୍ଦିନଙ୍କ ଘରେ ରହିଥାନ୍ତି । ବିରାଟ ଅଟ୍ଟାଳିକା । ସେ ମୋଗଲ ସମ୍ରାଟ ପରିବାରର ଲୋକ ବୋଲି ଶୁଣିଲି । ଏହିଠାରେ ନରେନ୍ଦ୍ର ଦେବଙ୍କ ପାଖରେ ସମ୍ମିଳନୀର ଶେଷଯାଏ ରହିଲି ।

ବାଟ୍‌ଲିଓ୍ୱାଲାଙ୍କ ସାଙ୍ଗରେ ମୋର ତ ବୋମ୍ବାଠାରୁ ପରିଚୟ ହୋଇଥାଏ । ତାଙ୍କ ସଙ୍ଗେ ସମ୍ମିଳନୀର ରିପୋର୍ଟ ଓ ପ୍ରସ୍ତାବ ଆଦି ସମ୍ପର୍କରେ ଆଲୋଚନା କଲି । ଏବଂ ଆଚାର୍ଯ୍ୟ ନରେନ୍ଦ୍ର ଦେବଙ୍କ ସଙ୍ଗେ ମଧ୍ୟ ଆଲୋଚନା କଲି ।

ଭାରତର ରାଜନୈତିକ ପରିସ୍ଥିତି ବିଶ୍ଲେଷଣ ଯେନ ଦୁଇଟି ଭିନ୍ନ ଭିନ୍ନ ଦଲିଲ ଓ ତାହାକୁ ଭିତ୍ତିକରି ଦୁଇଟି ଭିନ୍ନଭିନ୍ନ ପ୍ରସ୍ତାବ ଆସୁଥିବାର ଦେଖିଲି । ଗୋଟିଏ ଦଲିଲ ଓ ପ୍ରସ୍ତାବ ମସାନି, କମଳାଚଟ୍ଟୋପାଧ୍ୟାୟ, ଆଚାର୍ଯ୍ୟ ନରେନ୍ଦ୍ର ଦେବଙ୍କର । ଅନ୍ୟଟି କମ୍ୟୁନିଷ୍ଟମାନଙ୍କର । ପ୍ରଥମ ରିପୋର୍ଟରେ ରାଜନୈତିକ ପରିସ୍ଥିତିର ବ୍ୟାଖ୍ୟା ମୋତେ ସଠିକ ବୋଲି ମନେ ହେଉଥାଏ ଏବଂ ପ୍ରସ୍ତାବଟି ମାତ୍ରା ଏବଂ ସାଂଗଠନିକ କ୍ଷେତ୍ରରେ କମ୍ୟୁନିଷ୍ଟ ସଭ୍ୟମାନଙ୍କୁ କଂଗ୍ରେସ ସମାଜବାଦୀ ଦଳରୁ ବାହାର କରିଦେବାକୁ ଥାଏ । ଅନେକ ପ୍ରତିନିଧି କମ୍ୟୁନିଷ୍ଟପାର୍ଟିର ଥାନ୍ତି । ପି· ସୁନ୍ଦରାୟା ଏମାନଙ୍କର ମୁଖ୍ୟଥାନ୍ତି । ଭଗବତୀବାବୁ ସମ୍ମିଳନୀର ଠିକ ପୂର୍ବରୁ ଆସି ପହଞ୍ଚିଲେ । କମ୍ୟୁନିଷ୍ଟ ପ୍ରତିନିଧିମାନଙ୍କର ଗୁପ୍ତବୈଠକ ସଜ୍ଜାଦ ଜାହିରଙ୍କ ଘରେ ରାତିରେ ବସୁଥାଏ । ଡକ୍ଟର କେଡ଼୍ ଏ. ଅହମ୍ମଦଙ୍କ ଏହି ବୈଠକରେ ପ୍ରଥମେ ଯୋଗ ଦେଇଥିଲି । ସମ୍ମିଳନୀରେ ଫଟାଫଟି ହୋଇଯିବାକୁ ଆମେ ଚାହୁଁ ନଥିଲୁ । କିନ୍ତୁ ଏକାବେଳକେ ମାନ୍ଧାଅବସ୍ଥାରେ ପ୍ରସ୍ତାବ ଓ ଦଲିଲକୁ ଛାଡ଼ିଦେବାକୁ ଚାହୁଁ ନଥିଲୁ । ଗୋଟାଏ ଯୋଜନାମାରେ ପହଞ୍ଚିବାକୁ ଆମ ତରଫରୁ ଉଦ୍ୟମ ହେଉଥାଏ ଏବଂ ଜୟପ୍ରକାଶ ନାରାୟଣଙ୍କ ଜରିଆରେ ଏହା କରାଇବାକୁ ପାରୁପର୍ଯ୍ୟନ୍ତ ଚେଷ୍ଟା କରୁଥାଉ । ଏହି ସମ୍ମିଳନୀ କୌଣସି ଦଲିଲ ଓ ପ୍ରସ୍ତାବ ଗ୍ରହଣ ନକରି କେବଳ ଏତିକି ସ୍ଥିର କଲେ ଯେ ସର୍ବସମ୍ମତ ହେଲଭଳି ଦଲିଲ ଓ ପ୍ରସ୍ତାବ ତିଆରି କରିବାର ଭାର ଜୟପ୍ରକାଶ ନାରାୟଣଙ୍କ ଉପରେ ରହିଲା ।

କିନ୍ତୁ ତା'ପରେ ଯୁଦ୍ଧପୂର୍ବରୁ ଆଉ କେବେ ସମ୍ମିଳନୀ ବସିଲା ନାହିଁ । କଂଗ୍ରେସ ସାମ୍ୟବାଦୀ ଦଳକୁ ମସାନି, ଜୟପ୍ରକାଶ, ଅଶୋକ ମେହେଟ୍ଟା, ରାମ-ମନୋହର ଲୋହିଆ ମିଶି କାର୍ଯ୍ୟତଃ ଭାଙ୍ଗିଦେଇ କଂଗ୍ରେସ ସଙ୍ଗେ ପୁରାପୁରି ମିଶିଗଲେ । ଜୟପ୍ରକାଶ ତ ଗାନ୍ଧିଜୀଙ୍କର ପୂରାଭକ୍ତ ପାଲଟିଗଲେ ଏବଂ ଗାନ୍ଧିବାଦୀ ସାମ୍ୟବାଦ କଥା ଆରମ୍ଭ କଲେ ।

ଭାରତୀୟ କମ୍ୟୁନିଷ୍ଟ ପାର୍ଟି ଦେଖାଇଚନ ଥାଏ । ତାର ମୁଖପତ୍ର ନେସନାଲ ଫ୍ରଣ୍ଟ ସାପ୍ତାହିକ ପ୍ରକାଶ ପାଉଥାଏ । ପି.ସି. ଯୋଶି ଏହାର ସମ୍ପାଦକ ଥାଆନ୍ତି । ସେ ଗୋଟିଏ ବ୍ୟଙ୍ଗ ଚିତ୍ର ଏଥିରେ ପ୍ରକାଶ କଲେ । ଚିତ୍ରଟି ହେଉଛି ଗୋଟିଏ କଙ୍ଗାରୁ ପେଟରେ ଲୁଚିଅଛି ଏ । ଗାନ୍ଧିଜୀଙ୍କ ମୁହଁ ସହିତ କଙ୍ଗାରୁର ମୁହଁ ଓ ଜୟପ୍ରକାଶ ନାରାୟଣଙ୍କ ମୁହଁ ସହିତ ଲୁଚିଅଛିର ମୁହଁର ମେଳଥାଏ । ତଳେ ଲେଖାଥାଏ "ମା ପେଟକୁ ଲୁଆ ପଳାଇଲା" ।

କମ୍ୟୁନିଷ୍ଟ ପାର୍ଟିର ଦୂରଦୃଷ୍ଟି ଯେ ଠିକ୍ ତାହା ପରବର୍ତ୍ତୀ ଘଟଣାରୁ ହୋଇଗଲା । ଜୟପ୍ରକାଶ ପ୍ରଚୁର ଗର୍ଜନବାଦୀ ହେଲେ, ଅଶୋକ ମେହେଟା, ମୋରାରଜୀ ଭଳି ପ୍ରତିକ୍ରିୟାଶୀଳ କଂଗ୍ରେସ ଗୋଷ୍ଠୀରେ ରହି ଆମେରିକାର ସ୍ତୁତିଗାନ କରିବାକୁ ଲାଗିଲେ, ମିନୁମସାନୀ ଏବଂ ଟାଟା ପୁଞ୍ଜିପତି ପାଖରେ ନୌକରି କରି ତାର ଦଲାଲି କରିବାରେ ଲାଗିଲେ ଏବଂ ସ୍ୱତନ୍ତ୍ର ଦଳର ନେତା ହେଲେ । ଏସବୁତ ଲୁଚିଛପା କଥା ନୁହେଁ କି କପୋଳକଳ୍ପିତ ନୁହେଁ । ଏସବୁତ ଦେଶବ୍ୟାପୀ ଘଟଣା । ❀

## ଦ୍ୱିତୀୟ ମହାଯୁଦ୍ଧ

ପୃଥିବୀରୁ ସାମ୍ୟବାଦକୁ ଲୋପ କରିବ, କମ୍ୟୁନିଷ୍ଟ ପାର୍ଟିର ଓ ସୋଭିଏଟ ରୁଷିଆ ସର୍ବହରା ଶ୍ରେଣୀର ରାଷ୍ଟ୍ରର କବର ଦେବ ଏବଂ ପୃଥିବୀକୁ ଦଖଲ କରିବେ ଜର୍ମାନ ପୁଞ୍ଜିପତିମାନେ । ଏହି ଉଦ୍ଦେଶ୍ୟରେ ହିଟଲରର ଫାସିଷ୍ଟ ସରକାର ବହୁ ଦିନରୁ ଯୋଜନା କରି ରଖିଥିଲା । ଶେଷରେ ୧୯୩୯ ସେପ୍ଟେମ୍ବର ପହିଲାରେ ସେ ଯୁଦ୍ଧଘୋଷଣା କଲା । ଭାରତ ତ ଇଂରେଜ ସରକାର ଅଧୀନରେ । ତେଣୁ ଇଂରେଜ ସରକାର ଭାରତ ତରଫରୁ ସେପ୍ଟେମ୍ବର ୩ ରେ ଯୁଦ୍ଧ ଘୋଷଣା କଲା ହିଟଲର ବିରୁଦ୍ଧରେ ।

ସେଦିନ ସେପ୍ଟେମ୍ବର ପହିଲା ସାରାଭାରତରେ 'କୃଷକ ଦିବସ' ରୂପେ ପାଳନ କରାଯାଉଥାଏ । ପୁରୀଜିଲ୍ଲା ପିପିଲିଠାରେ ଏହି ଦିବସ ଆମେ ପାଳନ କରୁଥାଉ । ସାଧୁଚରଣ ମହାନ୍ତି ଥିଲେ ଓଡ଼ିଶା କୃଷକ ସଙ୍ଘର ନେତା । ସେ ଓ ଆମେ ପୁରୀଜିଲାର ଅନେକ କର୍ମୀ ଏହି ଦିବସ ପାଳନ କରିବା ପାଇଁ ହଜାର ହଜାର ଲୋକଙ୍କୁ ଠୁଳ କରିବାପାଇଁ ଲାଗିଲୁ । ସେଦିନ ପ୍ରାୟ ୧୫ହଜାର ଲୋକ ଆସି ପିପିଲି ଚର୍ଚ୍ଚପାଖ ପଡ଼ିଆରେ ଜମାହେଲେ । ସମ୍ମିଳନୀ ଆରମ୍ଭ ହେଲା । ମୁଖ୍ୟମନ୍ତ୍ରୀ ବିଶ୍ୱନାଥ ଦାସ ସଭାରେ ଭାଷଣ ଦେଉଛନ୍ତି ।

ହଠାତ୍ ଏକ ସ୍ୱତନ୍ତ୍ର ସରକାରୀ ବାର୍ତ୍ତାବହ ଆସି ତାଙ୍କୁ ଚିଠି ଦେଲେ ଏବଂ ସେ ଚିଠିପାଇବା ମାତ୍ରେ ସଭାରୁ କଟକ ଚାଲିଗଲେ । ସେତେବେଳେ କଟକରେ ରାଜଧାନୀ ଥାଏ । ଗଲାବେଳେ କେତେକ ପାଖଲୋକଙ୍କୁ କହିଦେଇଗଲେ ଯେ ଯୁଦ୍ଧ ଆରମ୍ଭ ହୋଇଗଲା ।

ଏହି ସମ୍ବାଦ ସାଙ୍ଗକୁ ଆଉ ଏକ ସମ୍ବାଦ ଆସି ପହଞ୍ଚିଲା ନନ୍ଦବାଡ଼ି ମାଡ଼ି ଆସୁଛି । ଯାହାହେତୁ ସବୁକାମ ଶେଷହେଲା । ଅନେକ ଛତିଛିନ୍ନ ହୋଇ ନିଜ ନିଜ ଗାଁକୁ ଚାଲିଗଲେ । ଅନେକ ମଧ୍ୟ ରାତ୍ରରେ ରହି ସକାଳୁ ଗଲେ । ମୁଁ ଓ ଖୋର୍ଦ୍ଧାର ସାଥୀମାନେ ସକାଳେ ବସି କିଛି ସମସ୍ତ ଆଲୋଚନା କରି ଏକ କାମର ନୂଆ ଯୋଜନା ନେଇ ଖୋର୍ଦ୍ଧା ଫେରିଲୁ ।

୧୯୩୯ ଦ୍ୱିତୀୟ ମହାଯୁଦ୍ଧ ଆରମ୍ଭ ହେବା ସଙ୍ଗେ ସଙ୍ଗେ ଆମର କାମ ବହୁତ ବଢ଼ିଗଲା । ମୁଁ ଉତ୍କଳ ପ୍ରାଦେଶିକ କଂଗ୍ରେସ କମିଟିର ସଭ୍ୟହାଙ୍କୁ ପୁରୀଜିଲାର କମ୍ୟୁନିଷ୍ଟ ପାର୍ଟିର ଓ କଂଗ୍ରେସ ସାମ୍ୟବାଦୀ ଦଳର ସମ୍ପାଦକ ଥାଏ । ତେଣୁ ମୋ ଉପରେ ବୋଝଟା ବେଶୀ ଲଦା ହୋଇଗଲା ।

ଖୋର୍ଦ୍ଧାରେ ଆମର ବୈଠକ ସାଙ୍ଗେ ସଙ୍ଗେ ବସିଲା ଏବଂ ଠିକ୍ ହେଲା ଯେ ଯେତେ ଚଞ୍ଚଳ ସମ୍ଭବ ସାରା ଖୋର୍ଦ୍ଧା ସବ୍‌ଡିଭିଜନଟା ବୁଲି ସଭାସମିତି କରି ଲୋକଙ୍କୁ ଯୁଦ୍ଧ ବିରୁଦ୍ଧରେ ଇଂରେଜ ସରକାରକୁ ସାହାଯ୍ୟ ନ କରିବା ପାଇଁ ବୁଝାଇବାକୁ ହେବ । କାରଣ ଆମେ ଜାଣି ନେଇଥିଲୁ ଯେ ଆମକୁ ସରକାର ବେଶୀଦିନ ବାହାରେ ରଖିଦେବ ନାହିଁ ।

ମୁଁ, ପ୍ରାଣନାଥ ବାବୁ, ସାଧୁବାବୁ ଓ ପୃଥ୍ୱୀ ମହାନ୍ତି ଚାରିଜଣ ଏକ ଅଭିଯାନରେ ବାହାରିଲୁ । ପ୍ରତିଦିନ ୩।୪ଟା କରି ସାଧାରଣ ସଭା କରିବାକୁ ଲାଗିଲୁ ଏବଂ ଯୁଦ୍ଧ ସମ୍ପର୍କରେ ବୁଝାଇବାକୁ ଲାଗିଲୁ । ଶହେ ଖଣ୍ଡେ ସଭା କଲୁ ଏବଂ ସମସ୍ତ ଖୋର୍ଦ୍ଧା ସବ୍‌ଡିଭିଜନଟାରେ ପ୍ରଚୁର ପ୍ରସ୍ତୁତ କରିଦେଲୁ ।

ନଭେମ୍ବର ୧୧ ତାରିଖ ଶୀତ ପଡ଼ିଥାଏ । ଆମେ ସେତେବେଳେ ଖୋର୍ଦ୍ଧା ବରୁଣାଇ ପାହାଡ଼ର ମାତାମା' ବସାରେ ଖଣ୍ଡେ ଚାଳିଆ ଘରେ ରହୁଥାଉ । ଖୁବ୍ ଭୋରରୁ ଖଣ୍ଡେ ଚାଦର ପକାଇ ବୁଲିବାହାରିଛୁ । ଦୟାବଲ୍ଲୀ ଆମ ବସା । ତା' ପୂର୍ବଦିନ ଚାଲିଯାଇଥାଏ । ବାଟରେ ଶଚୀ ରାଉତରାୟଙ୍କ ସଙ୍ଗେ ଦେଖା ହେଲା । ଦୁହେଁ ସେତେବେଳେ ଖୁବ୍ ସାଙ୍ଗ । ଦୁହେଁ ଗପକରି ଯାଉଛୁ ।

ଏସ୍. ଡି. ଓ.ଙ୍କ ଘରୁ ପୁଲିସ ସବ୍ ଇନସ୍ପେକ୍ଟର ବାହାରି ଆସୁଥିଲେ । ଆମକୁ ଦେଖି ହଠାତ୍ ସାଇକେଲରୁ ଓହ୍ଲାଇପଡ଼ି ମୋତେ ଟିକିଏ ଥାନାକୁ ଯିବାକୁ କହିଲେ । କାଲାଠାର କାଳିମା' ଜାଣେ ମୁଁ ବୁଝିନେଲି ଯେ ସମନ ଆସିଗଲା । ମୁଁ ଥାନା ପାଖ ହୋଇଗଲା ମାତ୍ରେ ସାଙ୍ଗେ ପୁଲିସ ଏସ୍. ଆଇ. ମୋ ହାତଧରି ମୋତେ ଗିରଫ କରାଗଲା ବୋଲି ଜଣାଇ ଦେଲେ ।

ମୁଁ ହସି ହସି କହିଲି "ଏତ ଜଣାଶୁଣା କଥା । ଅନେକ ଆଗରୁ ପରୱାନାଟା ଆସିବାର କଥା । କାହିଁକି ଡେରି ହେଉଛି ଭାବୁଥିଲି, ତେବେ ମୋ ସଙ୍ଗେ ଆସନ୍ତୁ, ମୋର ଲୁଗାପଟା, ବିଛଣାପତ୍ର ଆମ ଅଫିସରୁ ନେଇ ଆସିବା ।" କିନ୍ତୁ ସେ ମୋତେ ଆଉ ଛାଡ଼ିଦେଲେ ନାହିଁ । ମୋର ସାଥୀ ଦାମୋଦର ମିଶ୍ରଙ୍କୁ ଡକାଇ ମୋର ଲୁଗା ବିଛଣା ମଗାଇ ଆଣିଲେ ।

ମୋତେ ପୁଲିସ ଗିରଫ କରିବା ମାତ୍ରକେ ଶଚୀ ରାଉତରାୟ ମୋ ପାଖରୁ ଖସି ଚାଲିଗଲେ ଏବଂ ସେଦିନ ସେ ଯାଇଛନ୍ତି ଚୁଙ୍କୁଣୀ ରଥ ଅଣ ଲେଉଟା ଭଳି, ଆଉ ସେ ଫେରିନାହାନ୍ତି ଆମ ପାଖକୁ, ମୋର ଗିରଫ ହେବାଖବର ଅଳ୍ପ ସମୟ ଭିତରେ ସହରଯାକେ ବ୍ୟାପିଗଲା । ମୋ ସଙ୍ଗେ ବହୁତ ବନ୍ଧୁ ଦେଖାକରିବାକୁ ଆସିଲେ । ପୁଲିସ ଜଗୁଆଲି ଭିତରେ ଦେଖାସାକ୍ଷାତ ହେଉଥାଏ । ଖବର ପାଇଲି ଯେ ପ୍ରାଣନାଥବାବୁ, ପୂର୍ଣ୍ଣମହାନ୍ତି ଓ ସାଧୁବାବୁଙ୍କୁ ଗିରଫ କରିବା ପାଇଁ ପୁଲିସ ଖୋଜୁଛି । ମୋତେ ଯେଉଁସବୁ ଦଫାରେ ଗିରଫ କରାଗଲା ତାହା ଜଣାଇ ଦିଆଗଲା । ସେଥିରୁ ମୁଁ ବୁଝିନେଲି ଯେ ପ୍ରାଣଦଣ୍ଡ ଆଦେଶ ପାଇଁ ମଞ୍ଚ ବ ଠ ରଖା ଯାଇଛି । କାରଣ ସେଥିରେ ଥିଲା ମୁଁ ଇଂରେଜ ସରକାରକୁ ଯୁଦ୍ଧରେ ପରାସ୍ତ କରିବା ପାଇଁ ଜର୍ମାନକୁ ସାହାଯ୍ୟ କରୁଛି । ଭାରତ ସରକାରର ପତନପାଇଁ କାମ କରୁଛି ।

ଖୋର୍ଦ୍ଧା ଜେଲରେ ସ୍ତ୍ରୀଲୋକଙ୍କ ପାଇଁ ଗୋଟିଏ ଅଲଗା ଜାଗା ଅଛି । ସେହିଠାରେ ମୋତେ ଏକୁଟିଆ କଡ଼ା ପହରା ରେ ରଖାଗଲା । ୨, ୩ ଦିନପରେ ପ୍ରାଣନାଥବାବୁ, ସାଧୁବାବୁ ଓ ପୂର୍ଣ୍ଣମହାନ୍ତି ଆସି ମୋ ସହିତ ଏକାଠି ହେଲେ ।

———

# ବିଗ୍ଭର

ଖୋର୍ଦ୍ଧା ଏସ୍. ଡ଼ି. ଓ.ଙ୍କ କୋର୍ଟରେ ଆମର ବିଗ୍ଭର ଆରମ୍ଭ ହେଲା । କଠୋର ଦଣ୍ଡର ଆଶଙ୍କାରେ ମକଦ୍ଦମାକୁ ଗ୍ଭଡ଼ିଦେଇ ଲଢ଼ିବା ପାଇଁ ଆମର ବନ୍ଧୁମାନେ ସ୍ଥିରକଲେ । ହରେକୃଷ୍ଣମହତାବ, ଭଗବତିବାବୁ, ଗୁରୁଚରଣ ପଟ୍ଟନାୟକ, ଗଙ୍ଗାଧର ମିଶ୍ର, ଦାମୋଦର ମିଶ୍ର, ପଶୁରାମ ପଦାତିକ ବ୍ୟୁହ, ଗଙ୍ଗାଧର ପାଇକରାୟ ପ୍ରଭୃତି ଖୋର୍ଦ୍ଧା ଆସି ଏକ ଡିଫେନ୍‌ସ କମିଟି ଗଢ଼ିଲେ । ଅବସରପ୍ରାପ୍ତ ଜଜ୍ ରାଜକିଶୋର ଦାସ ସେତେବେଳେ ଓକିଲାତି କରୁଥିଲେ । ସେ ମୁଖ୍ୟ ଭାବରେ ଆମର ଏ ମକଦ୍ଦମା ଲଢ଼ିବା ପାଇଁ ଏକପ୍ରକାର ସବୁ ଦାୟିତ୍ୱ ନେଲେ । ତାଙ୍କର ନିସ୍ୱାର୍ଥପର, ନିଷ୍ଠାପର ଉଦ୍ୟମ ମୁଁ ଭୁଲିପାରିବି ନାହିଁ । କାରଣ ତାଙ୍କଛଡ଼ା ମୁଁ ଏ ପର୍ଯ୍ୟନ୍ତ କୌଣସି ଓକିଲଙ୍କୁ ଏପରି ଭାବରେ କାମ କରିବାର ଦେଖିନାହିଁ । ନିଜ ହାତରୁ ପଇସା ଖର୍ଚ୍ଚକରି ନକଲ ସବୁ ଆଣିବା, କଟକରୁ ଖୋର୍ଦ୍ଧା ପୁଣି ବାରମ୍ବାର ଦଉଡ଼ିବା ଆନ୍ତରିକତା ନଥିଲେ କେହି କରନ୍ତେ ନାହିଁ । ଏହି ମକଦ୍ଦମାରେ ଓଡ଼ିଶାର ଭୂତପୂର୍ବ ରାଜସ୍ୱମନ୍ତ୍ରୀ ଗୋପବନ୍ଧୁ ପଟ୍ଟନାୟକ, ନିରଞ୍ଜନ ପଟ୍ଟନାୟକ ମଧ୍ୟ ଖୋର୍ଦ୍ଧା-ଆସି ଆମକୁ ବହୁତ ସାହାଯ୍ୟ କରିଥିଲେ । ଏହି ମକଦ୍ଦମା ଲଢ଼ିବା ପାଇଁ ସ୍ୱର୍ଗତ ବୁଲାଭାଇ ଦେଶାଇ ବମ୍ବେରୁ ଖୋର୍ଦ୍ଧା ଆସିବାକୁ ଜଣାଇଥିଲେ । ଆମେ ତାଙ୍କର ଯିବା ଆସିବା ଖର୍ଚ୍ଚ ତୁଲାଇବାକୁ ଅସମର୍ଥ ଦେଖି ତାଙ୍କୁ ଆଉ କିଛି ଜଣାଇଲୁ ନାହିଁ କିନ୍ତୁ ସେ ଏହା ପରେ ଜାଣିପାରି ଦୁଃଖିତ ହେଲେ । କାରଣ ସେ ନିଜ ଖର୍ଚ୍ଚରୁ ଆସିବାକୁ ପ୍ରସ୍ତୁତ ଥିଲେ । ଯାହାହେଉ ଆମର ବନ୍ଧୁମାନେ ସାହାକିଛି ଅର୍ଥ ଚାନ୍ଦା ଆକାରରେ ସଂଗ୍ରହ କଲେ ସେଥିରେ ଅତି କଷ୍ଟରେ ମକଦ୍ଦମା ଲଢ଼ୁଥାଉ ।

ଆମର ଶହ ଶହ ପୃଷ୍ଠା ବ୍ୟାପି ବକ୍ତୃତା ଉପରେ ବିଗ୍ଭର ହେଉଥାଏ । ସରକାରୀ ଓକିଲ ଥିଲେ ପୁରୀର ରାଏବାହାଦୁର ଲୋକନାଥ ମିଶ୍ର । ସେ ଥାନ୍ତି ଡାକବଙ୍ଗଳାରେ । ସେଇଠାରେ ସେ ଗୋଏନ୍ଦା ବିଭାଗର ସର୍ଟହେଣ୍ଡ ରିପୋର୍ଟରଙ୍କୁ ବକ୍ତୃତା ଡାକୁଥାନ୍ତି । ସେଗୁଡ଼ିକ ଆମ ନାରେ ଦରଜ ହେଉଥାଏ । ସେ ଏପରି ଭାବରେ ବକ୍ତୃତା ଗୁଡ଼ିକ ଆମ ନାରେ ଡାକୁଥାନ୍ତି ଯେପରି ଆମ ବିରୁଦ୍ଧରେ ମକଦ୍ଦମା ପ୍ରମାଣ ହେବ ଏବଂ ସେଇଠାରେ ଆମେ ବକ୍ତୃତା ଦେଇଥିବା ତାରିଖ ସବୁ ବସାଇ ଦେଇ ସଭାରେ ଉପସ୍ଥିତ ଥିବା ମାଜିଷ୍ଟ୍ରେଟ୍ ଓ ସରବରାକାର ଆଦି ସାକ୍ଷୀମାନଙ୍କ ଦସ୍ତଖତ ମଧ୍ୟ କରାଇ ନିଆ ହେଉଥାଏ । ଏସବୁ ମୁଁ ଜାମିନରେ ଆସିବା ପରେ

ଆଖିରେ ଦେଖିବା କଥା । ଏକ୍ରପର ଭାରତରେ ଆଇନ ଓ ନ୍ୟାୟର କାରଗାରମାନଙ୍କରେ ଆମର ବାସ୍ତବ ଗ୍ଳଥାଏ । ଯାହାମାନଙ୍କର ମକଦ୍ଦମା ବନ୍ଦ ହୋଇ ଗ୍ଳକଲା । ଦିନ ୧୦ଟାରୁ ରାତି ୧୨ଟା ଯାଏ କୋର୍ଟ ବସିଥାଏ । ଏସ୍ ଡି. ଓ. ଆମକୁ ବିଶ୍ୱାସ କରି ବାହାରକୁ ବୁଲିବାକୁ ମଧ୍ୟ ଗ୍ଳାଡ଼ିଦେଉଥିଲେ ।

ମୋତେ ଓ ପ୍ରାଣନାଥ ପଟ୍ଟନାୟକଙ୍କୁ 'ବର୍ଣ୍ଣ' କରି. ମାଧବୀ ବାବୁଙ୍କୁ ଦେଢ଼ବର୍ଷ ଓ ପୂର୍ଣ୍ଣ ମହାନ୍ତିଙ୍କୁ ଦଶମାସ ସଶ୍ରମ କାରାଦଣ୍ଡ ଆଦେଶ ହେଲା । ଏହି ରାଏ ବିରୁଦ୍ଧରେ ହାଇକୋର୍ଟରେ ଅପିଲ ଦାଏର ହେଲା । ଆମେ ଜାମିନରେ ଖଲାସ ହେଲୁ ।

ଆମେ ଖୋର୍ଦ୍ଧା ଚଳୁଣି ଉପରେ ସାହୁ ମାଉଁସା' ଦ୍ୱାରେ ଥାଉ । ହଠାତ୍ ଦିନେ ଖର୍ପିବେଳେ ପୁଲିସ ଆମ ଅଫିସ ଘେରାଉ କଲେ । 'ଆଗେଗ୍ଳ' ବୋଲି ଖଣ୍ଡେ ଗୀତବନ୍ଧ ବାହାରିଥାଏ । ସେଥିରେ ଅନନ୍ତ ପଟ୍ଟନାୟକ ଓ ଶଚୀ ରାଉତରାୟଙ୍କ ଗୀତ ସବୁ ବାହାରିଥିଲା ।

"ଗ୍ଳଲରେ ଗ୍ଳଲରେ ଗ୍ଳଲ
ମୂଲକ ଯାକର ମୂଲିଆ ଗ୍ଳଷୀ
ମଜୁରିଆ କୁଲି ହେ ଉପବାସୀ
ତୋଳିଧର ତୋର ପତାକା ଆସି
ତୋହରି ରକତେ ଲାଲ ।"

× × ×

"ତୋ ମୁଖ ଓଟାରି ତୋହରି ଗ୍ରାସ
କରିଲା ତୋର ଯେ ସକଳ ନାଶ
ସେହି ସରକାର ଶାସନ ଫାଶ
କରିଦିଅ ଗ୍ଳରଖାର

ଇତ୍ୟାଦି ଗୀତସବୁ ନିହିଥିରେ ଥିଲା । ଗଙ୍ଗାଧର ମିଶ୍ର ସେତେବେଳେ ବସାରେ ଥାଆନ୍ତି । ସେ'ତ ଭାରି ରହସିଆ ଲୋକ । ସେ ପୁଲିସ ଅଫିସର-ମାନଙ୍କୁ ରହସ୍ୟରେ ମଜେଇ ତାରି ଭିତରେ ବହିସବୁକୁ ଦେଖିଲା କାମ କରିଦେଲେ । ଉପରି ଓ କେଉଁଠାରେ ଯେ ଯେ ବହିସବୁ ଉଧାର କରିଦେଲେ । ମୁଁ ବି କିଛି ବୁଝିପାରିଲି ନାହିଁ । ପୁଲିସ ଗ୍ଳରିଆଡ଼ ଏପରିକି ଭିତହାଣ୍ଡି, ଚୁଲି ଭିତର ପର୍ଯ୍ୟନ୍ତ ସବୁ ଅଣ୍ଡାଳି ଦେଇଗଲେ । କିନ୍ତୁ ଶେଷରେ କିଛି ନପାଇ ଖାଲି ହାତରେ ଫେରିଲେ ।

ହାଇକୋର୍ଟ ଆମର ବିଚାରାଧୀନ ସମୟରେ ଆମେ ଯେତେଦିନ ଜେଲରେ ଥିଲୁ ତାକୁ ମିଶାଇଦେଇ ମୋତେ ଓ ପ୍ରାଣନାଥବାବୁଙ୍କୁ ୨ବର୍ଷକରି ଓ ଅନ୍ୟମାନଙ୍କୁ ସେହିପରି ୧ବର୍ଷ ଦଶ ମାସ କରି ରଖିଲେ ।

ଆମେ ବିପଦଜନକ ଲୋକ । ତେଣୁ ପୃଥ୍ୱୀ ମହାନ୍ତିଙ୍କ ଗୃହ କେବଳ ଧାନ୍ୟ ବାହାର ଅନୁଗୁଳ ଜେଲରେ ଏକ ସ୍ୱତନ୍ତ୍ର ଖୁଆଡ଼ ଭିତରେ କଡ଼ାପହରାରେ ଗୋଟେ ସୁପରିଣ୍ଟେଣ୍ଡେଣ୍ଟଙ୍କ ତତ୍ତ୍ୱାବଧାନରେ ରଖାଗଲା । ଏହିଠାରେ ସମ୍ବଲପୁରର କଂଗ୍ରେସ ନେତା ଲକ୍ଷ୍ମୀନାରାୟଣ ମିଶ୍ରଙ୍କୁ ମଧ୍ୟ ଆଣି ରଖାଗଲା । ସେଥିଲେ ଅତ୍ୟନ୍ତ ମୁହଁଟାଣ ଓ ଟାଣୁଆ ଲୋକ । ଦୁର୍ନୀତି ଦେଖିଲେ ଅଗ୍ନିଶର୍ମା ହୁଅନ୍ତି । ତାଙ୍କର ଏହି ସୁଗୁଣ ବା ଦୁର୍ଗୁଣପାଇଁ ୧୯୬୨ ନିର୍ବାଚନ ସମୟରେ ଷ୍ଟେସନଭିତରେ ତାଙ୍କୁ ହତ୍ୟା କରାଗଲା । ତେବେ କଂଗ୍ରେସ ସରକାର ତାହାର କିଛି ସନ୍ଧାନ ପାଇଲେ ନାହିଁ । ବେଙ୍ଗଖୋଇବ ସିଏ ତାକୁ ଉଠେଇବ କିଏ ? ରାଷ୍ଟ୍ରପତି ରାଜେନ୍ଦ୍ର ପ୍ରସାଦ ତାଙ୍କର ଜେଲବନ୍ଧୁ । ସେ କଂଗ୍ରେସ ଭିତରେ ଚାଲିଥିବା ଦୁର୍ନୀତି ବିଷୟରେ କେତୋଟି ଝଣ୍ଡେ ଦାଘପତ୍ର ଲେଖିଥିଲେ ଏବଂ ତାଙ୍କର ହତ୍ୟାବେଳକୁ ସେ ବିଷୟରେ ଗୁପ୍ତ ଅନୁସନ୍ଧାନ ଚାଲିଥିଲା ।

ଜେଲରେ ଆମକୁ ଜଣେ ଦୁଇଜଣ ନୁହେଁ ୧ବର୍ଷ କଟାଇବାକୁ ହେବ । ତେଣୁ ଆମେ ଗୋଟିମତ ରୁଟିନବନ୍ଧା କାମ କରିବାକୁ ଲାଗିଲୁ । ପଢ଼ାପଢ଼ି, ଲେଖାଲେଖି, ତାସ୍ ଖେଳ, କସରତ, ବ୍ୟାୟାମ, ରାଜନୀତିର ଆଲୋଚନା ଓ ରୋଷେଇ କରି ଆମେ ଜେଲର କଠୋର ଜୀବନକୁ ଉପହାସ କରି ଉଡ଼େଇଦେଲୁ । ଅଧିକାଂଶ ସମୟରେ ମୁଁ ଓ ସାଧୁବାବୁ ରୋଷେଇ କରୁ । ଯାହାସବୁ ରସଦ ମିଳେ ଅମେ ସେଇଥିରେ ପାଞ୍ଚ ତରକାରୀ ସାତ ଭୂଣ କରୁ । ଏଣ୍ଡୁରି, ଚକୁଳି ମଣ୍ଡା ଆଦି ପିଠା ତିଆରି କରୁ । ପଣାରୁଣି ପତର ବହୁତ ହୋଇଥାଏ । ପ୍ରାଣନାଥ ବାବୁତ ସ୍ୱାସ୍ଥ୍ୟ ପାଇଁ ବାଛି ବାଛି କାକଡ଼ ଖାଆନ୍ତି । ସେ କଞ୍ଚା ପଣାରୁଣି ବାଟି ପିଅନ୍ତି, ମୁଁ ବି ଓଧ ସଙ୍ଗେ ଭୁଆବଗାଡ଼ି ବାଘ ହେଲାଭଳି କଞ୍ଚା ପସାରୁଣି ପତ୍ର ବଟା ପିଇଦିଏ, କଞ୍ଚ ଭେଣ୍ଡି ଚୋବେଇ ଯାଏ ।

ଏହି ସମୟରେ ଜଣେ ଷ୍ଟେଟସମେନ କାଗଜରେ ହଠାତ୍ ପଢ଼ିଲୁ ଯେ ଓଡ଼ିଶା ରେ କମ୍ୟୁନିଷ୍ଟ ଷଡ଼ଯନ୍ତ୍ର ମାମଲା ଆରମ୍ଭ ହୋଇଛି ସେଥିରେ ଭଗବତୀ ଚରଣ ପାଣିଗ୍ରାହୀ, ଗୁରୁଚରଣ ପଟ୍ଟନାୟକ, ଅନନ୍ତ ପଟ୍ଟନାୟକ, ବିଜୟ ଚନ୍ଦ୍ର ଦାସ, ଦୁର୍ଗାଚରଣ ମହାନ୍ତି, ରାମଚନ୍ଦ୍ର ମିଶ୍ର, ବୈଦ୍ୟନାଥ ରଥ, ବନମାଳୀ ଦାସ, ଶରତ୍ ପଟ୍ଟନାୟକ ପ୍ରଭୃତି ଗିରଫ ହୋଇଛନ୍ତି । ଆମ ମନଟା ବିଷାଦରେ ଭରିଗଲା । କିନ୍ତୁ ଲକ୍ଷ୍ମୀନାରାୟଣ ମିଶ୍ର କହିଲେ "ଯାହାହେଉ ଓଡ଼ିଶାରେ ପୁଅ ଅଛନ୍ତି, ଓଡ଼ିଆଜାତି ଶ୍ମଶାନଯାତ୍ରୀ ନୁହେଁ ।" ସେ ଏଥିପାଇଁ ଖୁସିହୋଇ ଉଠିଲେ ଏବଂ ଆମକୁ ମଧ୍ୟ ଉତ୍ସାହିତ କଲେ ।

# ଦୁଃଖର ଓ ଆନନ୍ଦର ଝଲକ ।

ଅମେ ଥାଉ ମାଡାମା ବସରେ ହ୍ଵିଲରେ ଢ଼' ବଜାର । ଆମ ମକଦ୍ଦମାର କାଗଜପତ୍ର ତିଆର କରିବାପାଇଁ ଭଗବତୀ ବାବୁ, ଗୁରୁଚରଣ ପଟ୍ଟନାୟକ ଆସୁଥାନ୍ତି ସାହାଯ୍ୟ କରିବା ପାଇଁ । ଥରେ ସମସ୍ତେ ଥା'ନ୍ତି । ଚାଉଳ ଗଣ୍ଡାକ ଦାମ ମିଶ୍ର ଯାଇ ଯୋଗାଡ଼ କରି ଆଣିଥିଲେ । କିନ୍ତୁ ରାନ୍ଧିବା ପାଇଁ ପଇସା ନଥାଏ, ଡାଲି କଥା ଛାଡ଼ । ଦୁଇଟା ପଇସା ଖରଚ (ଅଧିକ ଲରା' କଲେ ବକ୍ରେ, ସେତକ ବି ଆମକୁ ମିଳୁ ନଥାଏ ସେତେବେଳେ, ବାଣପଟେ ଗୋଟାଏ ଚବକା ଥାଏ । ଭଗବତୀ ବାବୁ, ଦାମ ମିଶ୍ର, ଗଙ୍ଗାଧର ମିଶ୍ର ଖିଅଦେଇ ଚୂନାମାଛ ଗଣ୍ଡାଏ ଧଇଲେ । କିଏ ରାନ୍ଧିଲେ ନଡ଼ିଆ ତୁଣ ହେବ ? ଭଗବତୀ ବାବୁ ବାଧ୍ୟ ହେଲେ ତାକୁ ରାନ୍ଧିବାକୁ । ଖାଇଲାବେଳେ ସମସ୍ତେ କହିଲେ ବଢ଼ିଆ ହୋଇଛି । ହସଖୁସିରେ ଗୋଟାଏ ନଡ଼ିଆ ଭୋଜି ହୋଇଗଲା ସେଇଥିରେ ।



ଆଉଦିନେ କାମ କରୁ କରୁ ବହୁତ ଡେରି ହୋଇଗଲା । ଖାଇବାର ବ୍ୟବସ୍ଥା କିଛି ନାହିଁ, ପଇସା ବି ନଥାଏ । ଯାହାପାଖରେ ଯାହାଅଛି ବାହାରଦିଅ ବୋଲି ଭଗବତୀବାବୁ କହିଲେ । ଶେଷରେ ଦରଣ୍ଡା ଦରଣ୍ଡି କରି ଦୁଇ ପଇସା ଅଧଲାଏ ବାହାରିଲା । ଭଗବତୀ ବାବୁଙ୍କ ଉପରେ ବଜେଟ୍ ତିଆର କରିବାର ଭାର ଦିଆଗଲା । ସେ ବଜେଟ କଲେ ମୁଢ଼ି ଦୁ ପଇସା, ଅଧଲାଏ, ଦୁ' ପଇସ କାର, ଚିନି ଅଧଲାଏ । ବଳକା ବଜେଟ ହେଲା ଅଧଲାଏ । କିନ୍ତୁ ଏତେ ରାତିରେ ମିଳିବ ନାହିଁ ତେଣୁ ଅଧଲାଏ ରହିଲା । ମୁଁ, ଦାମ ମିଶ୍ର, ଦୋକାନୀକୁ ଉଠେଇ ସେତକ ସଉଦା କରି ଆଣିଲୁ । ଭଗବତୀ ବାବୁ ଓଡ଼ିଶା ପ୍ରାଦେଶିକ କମ୍ୟୁନିଷ୍ଟ ପାର୍ଟିର ସମ୍ପାଦକ । ତେଣୁ ସେ ହେଲେ ସେଦିନ ରାତିର ଦୁ' ଭୋଜିର ମୁଖ୍ୟ ଅତିଥି । ସମସ୍ତଙ୍କ ଆଗରେ ଖବର କାଗଜ ଖଣ୍ଡେ ଖଣ୍ଡେ ପଡ଼ିଲା. ରସତାଟିଆ, ଗେନ, ଗିଲାସ ସବୁରେ ନାଲି ଦୁ' ପରସା ହେଲା ମୁଢ଼ି ମୁଠାଏ ୨ କାଗଜରେ । ଭଗବତୀବାବୁ ମୁଖ୍ୟ ଅତିଥି ବକ୍ତୃତା ଆରମ୍ଭ କଲେ. ଆମର ହାତ ଚାଲିଲା । ଭୋଜି ଶେଷରେ ଖଣ୍ଡେ ହେଁସ ପଡ଼ା ହେଲା । ଏ ହେଁସ ଖଣ୍ଡିକ ୧୯୩୭ ନିର୍ବାଚନ ବେଳେ କିଣା ଯାଇଥିଲା । ସେଇଥିରେ ସମସ୍ତେ ଗଡ଼ିଗଲେ । ସେଥିରେ ପୁଣି କି ଆନନ୍ଦ, କି ହସ !

—*—

# କମ୍ୟୁନିଷ୍ଟ ଷଡଯନ୍ତ୍ର ମାମଲା

କଟକ ଜେଲ ଭିତରେ କମ୍ୟୁନିଷ୍ଟ ଷଡ଼ଯନ୍ତ୍ର ମାମଲାର ବିଚାର ଆରମ୍ଭ ହେଲା । ଏଚ୍. ଲାଲ୍ ସ୍ୱତନ୍ତ୍ର ବିଚାରପତି ଭାବରେ ଏହି ମକଦ୍ଦମାର ବିଚାର କରୁଥାନ୍ତି । କୁଖ୍ୟାତ ଗୋଇନ୍ଦା ବିଭାଗର ଅଫିସର ମନବୋଧ ପଣ୍ଡା ମୁଖ୍ୟଭାବରେ ଏହି ମକଦ୍ଦମାକୁ ପ୍ରମାଣ କରିବାପାଇଁ କାଗଜପତ୍ର ତିଆର କରୁଥାନ୍ତି । କମ୍ୟୁନିଷ୍ଟ ପାର୍ଟି ତରଫରୁ ସେହି ସମୟରେ "ଆଗେଚାଲ" ନାମରେ ଏକ ଗୁପ୍ତ ସାପ୍ତାହିକ ପତ୍ରିକା ସାଇକ୍ଲୋଷ୍ଟାଇଲ ହୋଇ ବାହାରୁଥାଏ । ସା[redacted] ମିଶ୍ର ଭଗବତୀ ବାବୁଙ୍କ ପାଖକୁ ଯିବା ଆସିବା କରୁଥାନ୍ତି । ଭଗବତୀ ବାବୁଙ୍କୁ ଗିରଫ କରିବାରେ ମନବୋଧ ପଣ୍ଡା ତାଙ୍କୁ ବ୍ୟବହାର କରି ଭଗବତୀ ବାବୁଙ୍କ ଟ୍ରଙ୍କ ତଳେ ଏହି "ଆଗେଚାଲ" ଖଣ୍ଡିଏ ରଖାଇ ଦେଇ ଅଳ୍ପ ସମୟ ପରେ ତାଙ୍କ ଘର ଖାନତଲାସ କଲେ । ଏବଂ ସେହି କାଗଜ ଖଣ୍ଡିକ ବାହାର କରି ଭଗବତୀ ବାବୁଙ୍କୁ ଗିରଫ କରାଗଲା ।

ଏହି ମକଦ୍ଦମାରେ ବାହାରୁ ଯେଉଁସବୁ ଚିଠିପତ୍ର ଆସୁଥିଲା ତା'ର ଠାର ଅଜୟ ଘୋଷ (ଯେ କି ପରେ ଭାରତୀୟ କମ୍ୟୁନିଷ୍ଟ ପାର୍ଟିର ସମ୍ପାଦକ ହେଲେ) ଗିରଫ ହେଲାବେଳେ ତାଙ୍କଠାରୁ ମିଳିଥିବା କାଗଜ ପତ୍ରରୁ ପୁଲିସ ବାରି ସବୁକୁ ଯୋଡ଼ାଯୋଡ଼ି କରିଦେଲେ ।

ଏହି ମକଦ୍ଦମା ଚାଲିଥିବାବେଳେ ମକଦ୍ଦମା ପ୍ରମାଣପାଇଁ ଓଡ଼ିଶାର ପୂର୍ବତନ ଘରୋଇମନ୍ତ୍ରୀ ନିତ୍ୟାନନ୍ଦ କାନୁନଗୋ ଭଗବତୀ ବାବୁଙ୍କ ବିରୁଦ୍ଧରେ ଦେଇଥିବା ମନ୍ତବ୍ୟକୁ ଏହି କୋର୍ଟରେ ଦାଖଲ କରାଗଲା । ଆମପକ୍ଷରୁ ବିଶ୍ୱେଶ୍ୱର ବାନାର୍ଜି ଆସିଥାନ୍ତି ମକଦ୍ଦମା ଲଢ଼ିବା ପାଇଁ ସେ ଲକ୍ଷ୍ୟ କଲେ ଯେ ସେ କାଗଜକୁ ପୁଲିସ ଅଫିସର ଧରି ପଢୁଛନ୍ତି ତାର ମାର୍ଜିନ୍ ପଟେ ହାତପାପୁଲି ଚାପିଧରିଛନ୍ତି । ସେଥିରେ ତାଙ୍କର ସନ୍ଦେହ ହେଲା । ଏବଂ କାଗଜଟିକୁ ତାଙ୍କ ହାତରୁ ନେଇ ମାର୍ଜିନ୍‌ରେ ପ୍ରଧାନମନ୍ତ୍ରୀ ବିଶ୍ୱନାଥ ଦାସଙ୍କ ଲେଖାଥିବା ମନ୍ତବ୍ୟକୁ ପଢ଼ିଦେଲେ । ସେଥିରେ ଭଗବତୀବାବୁଙ୍କ ସପକ୍ଷରେ ବିଶ୍ୱନାଥ ଦାସ ଲେଖିଥିଲେ । ତାକୁ କୋର୍ଟ ପାଖରୁ ପୁଲିସ ଲୁଚାଇବାକୁ ଚେଷ୍ଟା କରୁଥିଲେ ।

ଏହି ମକଦ୍ଦମା ଚାଲିଥିଲା ବେଳେ ମୁଁ ଅନୁଗୁଳ ଜେଲରୁ ଖଲାସ ହୋଇ ଆସିଲି । ସାଧୁଚରଣ ମହାନ୍ତି, ରାମକୃଷ୍ଣ ପତି ଚାନ୍ଦା ପଇସା ଆଦାୟ କରିବାଠାରୁ ମକଦ୍ଦମାର ସମସ୍ତ ପ୍ରକାର ତଦ୍‌ବିର କରୁଥାନ୍ତି । ମୁଁ ସେମାନଙ୍କୁ ସାହାଯ୍ୟ କରିବା-

ପାଇଁ କଟକରେ ରହିଲି । ଏହି ମକଦ୍ଦମାରୁ କ'ଣ କେତେକଙ୍କୁ ଏମାନେ ମୁକ୍ତ ହୋଇ ପାରନ୍ତି ? ଭଗବତୀ ବାବୁ, ଗୁରୁଚରଣ, ଅନନ୍ତ ପଟ୍ଟନାୟକ, ବୈଦ୍ୟନାଥ ରଥଙ୍କୁ ମୋର ଯେତେଦୂର ମନେଅଛି ୨ବର୍ଷ ଲେଖାଏଁ ସଶ୍ରମ କାରାଦଣ୍ଡର ଆଦେଶ ହୋଇଥିଲା । ବ୍ରଜସୁନ୍ଦର ଦାସ ଓ ଶରତ ପଟ୍ଟନାୟକଙ୍କୁ ୬ମାସ ଲେଖାଏଁ ଓ ବନମାଳି ଦାସଙ୍କୁ ୯ ମାସ ଜେଲଦଣ୍ଡ ହୋଇଥିଲା । ଏମାନଙ୍କୁ ଅନୁଗୁଳ ଜେଲରେ ବନ୍ଦୀ କରି ରଖାଗଲା । ସେକାଳର ସେତେବେଳେ ଏହି ଜେଲକୁ ନିରାପଦ ବୋଲି ଭାବୁଥିଲେ ।

--- X ---

# ବ୍ୟକ୍ତିଗତ ଆଇନ ଅମାନ୍ୟ

ଯୁଦ୍ଧ ଭୟଙ୍କର ଆକାର ଧାରଣ କରିଥାଏ । ଜର୍ମାନ, ଜାପାନ ଇଟାଲି ଗୋଟିଏ ଦଳରେ ରହି ଫ୍ରାନ୍ସ, ଯୁଗୋସ୍ଲାଭିଆ, ପୋଲାଣ୍ଡ, ରୋମାନିଆ, ହଙ୍ଗେରି ପ୍ରଭୃତି ଫିଲିପାଇନ, ଇଣ୍ଡୋଚୀନ, ଇଣ୍ଡୋନେସିଆ, ବର୍ମା ଦଖଲ କରି ଚାଲିଥାନ୍ତି । ହିଟଲରର ନାଦରେ ପୃଥିବୀ ଥରହର ହେଉଥାଏ ।

କଂଗ୍ରେସ ତରଫରୁ ଗାନ୍ଧିଜୀ ବ୍ୟକ୍ତିଗତ ଆଇନ ଅମାନ୍ୟ ଆନ୍ଦୋଳନ ଆରମ୍ଭ କଲେ । ଏହି ବ୍ୟକ୍ତିଗତ ଆଇନ ଅମାନ୍ୟ ଆନ୍ଦୋଳନକୁ ସଂଗଠନ କରିବା ଓ ପରିଚାଳନା କରିବା ପାଇଁ ପୁରୀଜିଲ୍ଲା କଂଗ୍ରେସ କମିଟି ମୋ ଉପରେ ଭାର ଦେଲେ । ପ୍ରାଣନାଥ ପଟ୍ଟନାୟକ ଖୋର୍ଦ୍ଧାରୁ ପ୍ରଥମେ ସତ୍ୟାଗ୍ରହ କରିବା ସ୍ଥିର ହେଲା । ଏହି ସତ୍ୟାଗ୍ରହ ପାଇଁ ଖୋର୍ଦ୍ଧା ସବ୍‌ଡିଭିଜନର ଗାଁ ଗଣ୍ଡା-ବୁଲି ମୁଁ ଓ ଦାମୋଦର ମିଶ୍ର ପ୍ରଚାର କରିବାକୁ ଲାଗିଲୁ । ଯେଉଁଦିନ ଓ ଯେଉଁଠାରେ ଓ ଯେତେବେଳେ ପ୍ରାଣନାଥ ବାବୁ ସତ୍ୟାଗ୍ରହ କରିବେ ତାହା ସତ୍ୟାଗ୍ରହର ନିୟମ ଅନୁସାରେ ପ୍ରାଣନାଥ ବାବୁ ଆଗରୁ ସରକାରଙ୍କୁ ଜଣାଇଦେଲେ । ୨୪-୪୪ ମିନିଟରେ ସତ୍ୟାଗ୍ରହ କରିବାର ସମୟ । ସ୍ଥାନ ଖୋର୍ଦ୍ଧା କଚେରୀପାଖ-ଛକ । ଏହି ଏମ୍ପୁରି ବହୁ ଆଗରୁ ଛକ ଓ ଆଖପାଖ ଲୋକାରଣ୍ୟ ହୋଇଗଲା । ଠିକ୍ ସମୟରେ ଆସି ପ୍ରାଣନାଥ ବାବୁ ଗୋଟିଏ ଟେବୁଲଉପରେ ଛିଡ଼ାହୋଇ "ଧନ ଜନ ଦେଇ ଏ ଯୁଦ୍ଧକୁ କେହି ସାହାଯ୍ୟ କରନାହିଁ, ନାଏକ ଭାଇ, ନାଏକ ଭାଇ" କହିବା ମାତ୍ରେ ପୁଲିସ ତାଙ୍କୁ ଗିରଫ କରିନେଲେ ।

ଏହା ପରେ ପରେ ବାଲେଶ୍ୱର ଓ କଟକରେ ସତ୍ୟାଗ୍ରହର ଅନୁଷ୍ଠାନ କଲି । ଲକ୍ଷ୍ମଣ ପଟ୍ଟନାୟକ, ରଘୁନାଥ ଦାସ ସତ୍ୟାଗ୍ରହୀଙ୍କର ନିଗ୍ରହ ହେଲେ । ଏସବୁ ସ୍ଥାନରେ ବିପୁଳ ଜନସମାଗମ ହେଉଥାଏ । ଏବଂ ସାରା ଦେଶରେ ଚହଳ ପଡ଼ିଯାଇଥାଏ ।

ଏହି ସମୟରେ ମୋତେ ଗିରଫ କରାଗଲା । ଦୀର୍ଘ ଦିନଧରି ଖୋର୍ଦ୍ଧା କୋର୍ଟରେ ମୋର ବିଚାର ଚାଲିଲା । ମୋତେ ଏକୁଟିଆ ଖୋର୍ଦ୍ଧା ଜେଲରେ ରଖା-ଯାଇଥାଏ । ମୋର ବିଚାର କରୁଥାନ୍ତି ଖୋର୍ଦ୍ଧାର ଏସ ଡି. ଓ ମାକ୍‌ଡୋନେଲ୍‌-ସାହେବ । ମୋ ପ୍ରତି ତାଙ୍କର ଭାରି ରାଗ । ମୁଁ କୋର୍ଟରେ ବେଞ୍ଚ ଉପରେ ବସିଥାଏ । ବିଚାର ଚାଲିଥାଏ । କାଠଗଡ଼ା ଭିତରେ ଠିଆ ନ ହୋଇ ସାଧାରଣତଃ ଆମେ ବେଞ୍ଚରେ ହିଁ ବସୁ । କିନ୍ତୁ ଯେଉଁଦିନ ହଠାତ୍ ତାଙ୍କର କ'ଣ ମନେହେଲା କେଜାଣି ମୋ ଉପରେ ପାଟିକରି ଉଠି କାଠଅଡ଼ା ଭିତରେ ଠିଆ ହେବାକୁ ଆଦେଶ ଦେଲେ । ମୁଁ କାଠଅଡ଼ା ଭିତରକୁ ସାଙ୍ଗେ ସାଙ୍ଗେ ଚାଲିଗଲି ।

ଅନ୍ୟଦିନକୁ ପୁଣି ତାରିଖ ହେଲା । ସାଧୁଚରଣ ମହାନ୍ତି ମୋ ମକଦ୍ଦମାର ତଦ୍ବିର କରୁଥାନ୍ତି । ଲୋକନାଥ ମିଶ୍ର (ପଣ୍ଡାବାବୁ) ଓକିଲ ନିଯୁକ୍ତ ହୋଇଥାନ୍ତି । କିନ୍ତୁ ତାରିଖକୁ ସେ ଆସିନଥାନ୍ତି । ମୁଁ ସମୟ ନେଉଥାଏ । ଏଥିରେ ଗୋଟାଏ ତାରିଖରେ ମାକ୍‌ଡୋନେଲ ମୋ ଉପରେ ରାଗିଯାଇ ବିଚାର ଆରମ୍ଭ କଲେ । ମୁଁ ବିଚାରରେ ଭାଗନେବି ନାହିଁ ବୋଲି ଜଣାଇଦେଲି ଏବଂ ମୋର ବିଚାର ତାଙ୍କ କୋର୍ଟରେ ନ ହେବାକୁ ହାଇକୋର୍ଟକୁ ଜଣାଇବା ପାଇଁ ସମୟ ନେଲି ।

ଏଥିରେ ସେ ମୋ ଉପରେ ଖୁବ୍ ଉତ୍ତ୍ୟକ୍ତ ହୋଇ ଉଠିଲେ । ମୁଁ ତାଙ୍କୁ ସେକଟୋକ୍ ଭାବରେ ଉତ୍ତର ଦେଲି, "ମୁଁ ଖଡ଼ା ଚୋର ନୁହେଁ । ଇଂରେଜ ସରକାରକୁ ଏ ରାଜ୍ୟରୁ ତଡ଼ିବା ପାଇଁ ସଂଗ୍ରାମ କରୁଛି । ବିଲାତର ରାଜା, ଭାରତ ସମ୍ରାଟର ମୁଁ ପ୍ରତିଦ୍ୱନ୍ଦ୍ୱ । ତୁମେତ ସମ୍ରାଟଙ୍କର ସାମାନ୍ୟ ନୌକର । ତୁମେ କ'ଣ କରିବ ମୋର ? ମୋତେ ଫାଶୀଦବାର ଅଧିକାର ତମର ନାହିଁ । ଦେଇ ଦେଇ ଦୁଇବର୍ଷ ସଜାଦେବ । ଆଉ କଣଟା କରିବ ?" ଏତିକି କହିବା ମାତ୍ରେ ନିଆଁରେ ପାଣି ପଡ଼ିବା ଭଳି ସେ ତୁନିହୋଇ କିଛି ସମୟ ରହିଗଲେ ।

ମୋର ରାଏଦେବାର ତାରିଖ ଧାର୍ଯ୍ୟ ହେଲା । ରାୟଦିନ କୋର୍ଟକୁ ଆସି ଆଗଭଳି କାଠଅଡ଼ାରେ ଯାଇ ଠିଆହେଲି । ମୋତେ ସେଦିନ ସେ ବେଞ୍ଚରେ ଆସି ବସିବାକୁ ନିର୍ଦ୍ଦେଶ ଦେଲେ । ବିନମ୍ର ସହକାରେ ମୁଁ ତାଙ୍କୁ ଜଣାଇଦେଲି "ଯେଉଁ କାଠଅଡ଼ାରେ ମୁଁ ଠିଆହୋଇଛି ତାହା ମୋର ସମ୍ମାନିତ ସ୍ଥାନ । ବରଂ ମୁଁ ଭୁଲକରି ପୂର୍ବରୁ ବେଞ୍ଚଉପରେ ବସିଥିଲି । ମୁଁ ତ କାଠଅଡ଼ାରେ ଠିଆହେବାକୁ ଗୌରବ

ମନେ କରୁଛି ।" ମୋ ମୁହଁକୁ କିଛିକ୍ଷଣ ନୀରବରେ ଚାହିଁ ରହିଲେ । ଦେଖିନ ରାଏ-ଦିଆନ ହୋଇ ବସିର ରହିଲା । ମୁଁ ମକଦ୍ଦମା ନ ଲଢ଼ିବା କଥା ଆଗରୁ କହିଦେଲି । କାରଣ ଦେଖିଲି ପଙ୍କବାବୁ ସାହାଯ୍ୟ କରୁନାହାନ୍ତି । ଅନ୍ୟ ମକଦ୍ଦମା ଲଢ଼ିବାରେ ମଧ୍ୟ ମୋର ଆଗ୍ରହ ନଥାଏ ।

ରାଏ ଦିଆଯିବ । ମୋତେ ନିର୍ଦ୍ଦିଷ୍ଟ କାଳ୍ପଦନ ଜେଲରେ ରହିବାକୁ ହେବ, ଏବଂ ଖୋର୍ଦ୍ଧାରୁ ଚାଲିଯିବାକୁ ହେବ । ମୋତେ ବୋଲଗଡ଼, ବେଗୁନିଆଁ ଚନ୍ଦକା, ଖୋର୍ଦ୍ଧା ପ୍ରଭୃତି ଗ୍ରାମଅଞ୍ଚଳରୁ ବହୁ ସାଥୀ ମୋତେ ଦେଖାକରିବାକୁ 'ଖୋର୍ଦ୍ଧା' ଆସିଥାନ୍ତି । ପୁରୀ ଜିଲାର ପୁଲିସ ସାହେବ ଓ ଖୋର୍ଦ୍ଧା ଏସ୍. ଡି. ଓ ମାକ୍‌ଡୋନେଲ ଦୁହେଁ ଆଲୋଚନା କରି ରାଏ ଲେଖିଲେ । ମୁଁ ଦେଖୁଥାଏ, ତାପରେ ରାଏ ଦିଆହେଲା । ଖୋର୍ଦ୍ଧା ସବ୍‌ଡିଭିଜନର ଯେତେ ସତ୍ୟାଗ୍ରହ ହୋଇଛି ସେ ସବୁକୁ ମୁଁ କରାଇଥିଲି । ସେଥିପାଇଁ ସତ୍ୟାଗ୍ରହୀଙ୍କ ଠାରୁ ଅଧିକ କଠିନ ଓ ଆଦର୍ଶଦଣ୍ଡ ଦିଆହେଲା ବୋଲି ମୋତେ ଜଣାଇ ଦିଆହେଲା । ଯେତେଦୂର ମନେହୁଏ ମୋତେ ଏକବର୍ଷ ସଶ୍ରମ କାରାଦଣ୍ଡ ହେଲା ।

ଖୋର୍ଦ୍ଧା ଜେଲରୁ ପୁରୀ ଓ ପରେ ବ୍ରହ୍ମପୁର ଜେଲକୁ ମୋତେ ନିଆଗଲା । ଏହି ଜେଲରେ ଓଡ଼ିଶାର ସବୁ ରାଜନୈତିକ ବନ୍ଦୀଙ୍କୁ ଏକାଠି ରଖାଯାଉଥିଲା । ଏହି ଜେଲରେ ହରେକୃଷ୍ଣ ମହତାବ, ବୋଧରାମ ଦୁବେ ପ୍ରଥମ ଶ୍ରେଣୀର ବନ୍ଦୀଭାବରେ, ନବକୃଷ୍ଣ ଚୌଧୁରୀ, ମୋହନ ଦାସ, ପ୍ରାଣନାଥ ପଟ୍ଟନାୟକ ମନମୋହନ ମିଶ୍ର, ପଙ୍କ ମିଶ୍ର, ଗୋବିନ୍ଦ ପ୍ରଧାନ, ସଦାଶିବ ତ୍ରିପାଠୀ, ରାଧାମୋହନ ସାହୁ, ରାଧାକୃଷ୍ଣ-ବିଶ୍ୱାସ ରାଏ, ବନମାଳି ଦାସ ପ୍ରଭୃତି ବହୁ ଲୋକ ଦ୍ୱିତୀୟ ଶ୍ରେଣୀର ବନ୍ଦୀ ଭାବରେ ଏହିଠାରେ ଥିଲେ ।

ସମସ୍ତ କାର୍ଯ୍ୟ ବ୍ୟସ୍ତତା ଭିତରେ ବେଶ୍ ଆନନ୍ଦରେ କଟିଯାଉଥିଲା । ସକାଳୁ ଅନେକ ବ୍ୟାୟାମରେ ଲାଗିଯାଉଥିଲୁ । ତା'ପରେ ପଢ଼ାପଢ଼ି, ଲେଖା ଲେଖି, ଖଟ୍‌ବେଟେ ତାସ୍ ଓ ଚେସ୍ ଖେଳ ଚାରିଟାବେଳେ ଡୁ ଡୁ, ବୋହୁଚୋରି, ରାତିରେ ପୁଣି ପାଠପଢ଼ା । ଦିନେ ଦିନେ ସାଂସ୍କୃତିକ କାର୍ଯ୍ୟକ୍ରମ । ମହତାବ ବାବୁ ଓ ବୋଧରାମ ବାବୁ ତାଙ୍କ ଓ୍ୱାର୍ଡରୁ ଆସି ଆମ୍ଭମାନଙ୍କ ସାଙ୍ଗରେ ଏ ସବୁଥିରେ ଯୋଗ ଦିଅନ୍ତି । ଡୁ ଡୁ ବୋହୁଚୋରି ଖେଳରେ ମଧ୍ୟ ମହତାବ ବାବୁ ଭାଗ ନେଇ ଖେଳନ୍ତି । ପାଳିକରି ଆମ ଭିତରେ ରୋଷେଇ ଭାର ଦିଆଯାଏ । କାହା ପାଳିରେ ଭଲଖାନା ଓ ପ୍ରକାର ବେଶୀ ହେବ ସେଥିପାଇଁ ପ୍ରତିଦ୍ୱନ୍ଦ୍ୱିତା ଚାଲେ । ଗୋବିନ୍ଦ ପ୍ରଧାନ ରୋଷେଇ ବିଷୟରେ ବେଶ୍ ଭଲ ଜାଣନ୍ତି । ସେ ଭଲ ଗସ୍ତାମି ଖାନା ତିଆରି କରନ୍ତି । ଆମ୍ଭମାନଙ୍କ ଭିତରେ ଥିଲା ପରସ୍ପର ପ୍ରତି ଗଭୀର ମମତା ଓ ଆତ୍ମୀୟତା । ଦିନ ଆନନ୍ଦରେ କଟିଯାଉଥିଲା ।

# ହିଟ୍ଲରର ଭାଗ୍ୟଭାଣ୍ଡାରେ ହାଡଭଙ୍ଗା

୧୯୪୧ ଜୁନ୍ ୨୨ ତାରିଖ । ଆମେମାନେ ବହରମପୁର ଜେଲରେ ଥାଉ । ହଠାତ୍ ଖବର ପାଇଲୁ ଯେ ହିଟ୍ଲର ଋଷିଆ ଉପରେ ଆକ୍ରମଣ କରିଛି । ଜର୍ମାନ-ସୈନ୍ୟ ଓ ଋଷିଆର ଲାଲ ସେନାବାହିନୀ ଭିତରେ ଭୟାବହ ଯୁଦ୍ଧ ଆରମ୍ଭ ହୋଇଛି । ହିଟ୍ଲରର ସମଗ୍ର ଇଉରୋପର ସମ୍ପଦ ଯେତେ ସମସ୍ତ ସାମରିକ ଶକ୍ତି ଓ ପରାକ୍ରମକୁ ଠୁଳ କରି ବିଜୟ ଗର୍ବରେ ଋଷକୁ ପରାସ୍ତ କରିବାର ଦୃଢ଼ ସଂକଳ୍ପ ଓ ବିଶ୍ୱାସ ଯେତେ ପ୍ରଚଣ୍ଡ ଆକ୍ରମଣ କରି ଆଗେଇ ଚାଲିଲା । ଲକ୍ଷ ଲକ୍ଷ ନିରୀହ ନାରୀ, ଶିଶୁ ଓ ବୃଦ୍ଧଙ୍କୁ ହତ୍ୟା କରୁଥାଏ । ଟେମ୍ ଟେମ୍ପଲରେ ପକାଇ ମାରୁଥାଏ । ଏକ ନାରକୀୟ ବିଭୀଷିକା ସୃଷ୍ଟି କରୁଥାଏ । ଗାଁ ଗଣ୍ଡା ସହରର ଖାଲିକରି କ୍ଷେତ ଖମାର ଘର ଦ୍ୱାର ଜାଳି ପୋଡ଼ିଦେଇ ବନ୍ଧବାଡ଼ ଭାଙ୍ଗିଦେଇ ସବୁକୁ ଲାଣ୍ଡୁ କରି ଋଷର ଲୋକେ ଚାଲିଯାଉଥାନ୍ତି । ଋଷର ନେତା ଷ୍ଟାଲିନ ଓ ଲାଲସୈନ୍ୟ ବାହିନୀର ଅପରାଜେୟ ଶକ୍ତି ଉପରେ ଲୋକଙ୍କର ଅଗାଧ ବିଶ୍ୱାସ ଥାଏ । ଋଷର ଲୋକେ ସେହି ଆତ୍ମବିଶ୍ୱାସରେ ହିଟଲରର ଫାସିଷ୍ଟ ସୈନ୍ୟବାହିନୀର ମୁକାବିଲା କରୁଥାନ୍ତି । ଋଷର ଅଳ୍ପ ବୟସ୍କ ବାଳକ ବାଳିକାମାନେ ମଧ୍ୟ ବିଭିନ୍ନ କୌଶଳରେ ଜର୍ମାନ ସେନାବାହିନୀକୁ ପ୍ରତିରୋଧ କରୁଥାନ୍ତି । ଶହ ଶହ ସୈନ୍ୟଙ୍କୁ ମାରି ଉଡ଼ାଇ ଦେଉଥାନ୍ତି । ଉଭୟ ପକ୍ଷର ଅସଂଖ୍ୟ ଟ୍ୟାଙ୍କ କମାଣ, ଉଡ଼ାଜାହାଜ ଆକ୍ରମଣ ପ୍ରତିଆକ୍ରମଣରେ ଋଷବକ୍ଷରେ ଏକ ଧ୍ୱଂସର ତାଣ୍ଡବଲୀଳା ଚାଲିଥାଏ । ପ୍ରତିଦିନର ଏହିସବୁ ସଂବାଦ ଆମେ ମନଦେଇ ଟିକିନଖି ଭାବରେ ନିରୀକ୍ଷଣ କରୁଥାଉ । ମନରେ ଗଭୀର ବିଷାଦ । ନୂତନ ଯୁଗର ସ୍ରଷ୍ଟା, ସ୍ୱାଧୀନତାର ପ୍ରହରୀ, ପରାଧୀନ ଦେଶର ଆଶା ଭରସାର ଏକମାତ୍ର ଦେଶ ଋଷିଆର ଶୋଚନୀୟ ଅବସ୍ଥା ପ୍ରତ୍ୟେକ ଚିନ୍ତାଶୀଳ ବ୍ୟକ୍ତିଙ୍କୁ ମର୍ମାହତ କରୁଥାଏ । ବିଶ୍ୱକବି ରବିନ୍ଦ୍ରନାଥ ଠାକୁରଙ୍କ ଭଳି ବ୍ୟକ୍ତିମଧ୍ୟ ମର୍ମାହତ ହୋଇ ପଡ଼ିଥିଲେ । ୧୯୪୧ ଅଗଷ୍ଟ ୭।୭ ରେ ତାଙ୍କର ମୃତ୍ୟୁର ପୂର୍ବ ମୁହୂର୍ତ୍ତରେ ସେ ଋଷର ଅଗ୍ରଗତି କେତେଦୂର ହେଲାବୋଲି ପ୍ରଶ୍ନକରି ଖବର ନେଇଥିଲେ ।

୧୯୪୧ ଶେଷ ଆଡ଼କୁ ଜେଲରୁ ଖଲାସ ହେଲି । ଖଲାସ ହେବା ସାଙ୍ଗେ-ସାଙ୍ଗେ ସାଂଗଠନିକ କାମରେ ଲାଗିଲି । ଯୁଦ୍ଧ ଘମାଘୋଟ ଲାଗିଥାଏ । ପୃଥିବୀର ଚତୁର୍ଦିଗ ଯେପରି ଯୁଦ୍ଧର ନିଆଁ ହୁତୁହୁତୁ ହୋଇ ଜଳୁଥାଏ । ଭାରତବର୍ଷ ଉପରକୁ ମଧ୍ୟ ଯୁଦ୍ଧ ମାଡ଼ି ଆସିଲାଣି ।

ରୁଷ ଆକ୍ରମଣ ପରେ ରୁଷିଆ, ଆମେରିକା, ଇଂଲଣ୍ଡ, ଫ୍ରାନ୍ସ, ଚୀନ ମେଣ୍ଟବାନ୍ଧି ଜର୍ମାନ ବିରୁଦ୍ଧରେ ଲଢ଼ୁଥିଲେ। ଜାପାନର ଆକ୍ରମଣରେ ବର୍ମା, ଫିଲିପାଇନ୍ସ ଇଣ୍ଡୋନେସିଆ, ସିଙ୍ଗାପୁର, ଇଣ୍ଡୋଚୀନରେ ବ୍ରିଟିଶ ପରାଜିତ ହେଲା ଏବଂ ମଣିପୁର ଭିତରେ ଶତ୍ରୁସୈନ୍ୟ ପଶିଲେ ଏବଂ କଲିକତା ଉପରେ ଉଡ଼ାଜାହାଜ ଆକ୍ରମଣ ହେଲା, କୂଳ ଉପକୂଳରେ ଦଫେ ଏ ନୌଯୁଦ୍ଧ ହୋଇଗଲା। ବଙ୍ଗୋପସାଗରରେ ଜାପାନୀ ନୌବାହିନୀର ପ୍ରଭାବ ବଢ଼ିଲା। ସେମାନେ ଓଡ଼ିଶା ଉପକୂଳରେ ପର୍ଚ୍ଛିତ୍ର ମାରିବାକୁ ଲାଗିଲେ। ପୁରୀ, ଅନ୍ତରଙ୍ଗ, ଗଞ୍ଜାମ ଜିଲାର ଉପକୂଳରେ ବସା ବାନ୍ଧିବାକୁ ଲାଗିଲେଣି। ବ୍ରହ୍ମପୁର ଜେଲ ପାଖରେ ଦୁଇଟା ବୋମା ମଧ୍ୟ ପଡ଼ିଗଲାଣି।

## ଆସ୍କା ମର୍ଡର କେଶ

ମୋର ମେଡେଦୂର ମନେହୁଏ ଏହି ସମୟରେ ଆସ୍କାବେଙ୍କ ମର୍ଡର କେଶ୍ ଘଟେ। କେତେଜଣ ଯୁବକ ଅସ୍କାବେଙ୍କ୍ ଉପରେ ଦିନବେଳେ ଆକ୍ରମଣ କରି ସେଠାରେ ଥିବା ସୁନା ଓ ଟଙ୍କା ନେଇଯାଇଥିଲେ ଏବଂ ବେଙ୍କ୍‌ର ଏଜେଣ୍ଟଙ୍କୁ ହତ୍ୟା କରିଥିଲେ। ବିଜୟ ଚନ୍ଦ୍ର ଦାସଙ୍କୁ ଏହି ମକଦ୍ଦମାରେ ଗିରଫ କରାଗଲା। କାରଣ ଏହି ଯୁବକମାନଙ୍କ ସହିତ ତାଙ୍କର ପରିଚୟ ଥିଲା ଏବଂ ସେମାନେ ରାଜନୈତିକ କ୍ଷେତ୍ରରେ କାର୍ଯ୍ୟ କରୁଥିଲେ। କିନ୍ତୁ ବିଜୟ ଚନ୍ଦ୍ର ଦାସ ପ୍ରକୃତରେ ଏସବୁ ବିଷୟରେ ସମ୍ପୂର୍ଣ୍ଣ ଅଜ୍ଞଥିଲେ। ଆମେ ଏ ସମ୍ବାଦ ପାଇ ଯେତିକି ଆଶ୍ଚର୍ଯ୍ୟ ହେଲୁ ସେତିକି ବ୍ୟଥିତ ହେଲୁ। କିଛିଦିନ ପରେ ବିଜୟ ଚନ୍ଦ୍ର ଦାସଙ୍କୁ ଏଥିରୁ ମୁକ୍ତ କରିଦିଆଗଲା।

ଜେଲ ସମୟ ଶେଷ ହୋଇଯିବା ପରେ ଜେଲରୁ ଖଲାସ ହୋଇ ଖୋର୍ଦ୍ଧା ଆସିଲି।

## ଓଲଟ ପାଲଟ

ଜେଲରୁ ଖଲାସ ହୋଇ ଆସିଲା ପରେ ଆଉ ବିଶ୍ରାମ ମିଳିଲା ନାହିଁ। ରୁଷ ଉପରେ ହିଟଲରର ଆକ୍ରମଣ ହେବାପରେ ରୁଷ, ଇଂଲଣ୍ଡ, ଆମେରିକା ଫ୍ରାନ୍ସ, ଚୀନକୁ ନେଇ ମିତ୍ରପକ୍ଷ ଗଠନ କଲା। ଇଂରେଜ ସରକାର ଭାରତରେ କମ୍ୟୁନିଷ୍ଟ ପାର୍ଟିକୁ ଆଇନସଙ୍ଗତ ଘୋଷଣା କଲା। କମ୍ୟୁନିଷ୍ଟ ପାର୍ଟି ଯୁଦ୍ଧକୁ ପିପୁଲ୍‌ସ ୱାର ବୋଲି ମଧ୍ୟ ଘୋଷଣା କଲା ଜାପାନୀ ଆକ୍ରମଣକୁ ପ୍ରତିହତ କରିବା ଢଙ୍ଗେ ସଙ୍ଗେ

ଇଂରେଜ ଏମାନଙ୍କୁ ମଧ୍ୟ ସଚେତନ କରିବା ଏବଂ ଏମାନଙ୍କ ଭିତରେ ଜନସାଧାରଣଙ୍କୁ ସଂଗଠିତ କରି ଭାରତର ମୁକ୍ତିସଂଗ୍ରାମ ଚଳାଇ ଭାରତର ସ୍ୱାଧୀନତା ହାସଲ କରିବା ।

କଂଗ୍ରେସ ମନ୍ତ୍ରୀମଣ୍ଡଳରୁ ଇସ୍ତଫା ଦେଇଗଲେ ପାରଳା ମହାରାଜାଙ୍କ ନେତୃତ୍ୱରେ । ଓଡ଼ିଶାରେ ପୁଣି ମନ୍ତ୍ରୀମଣ୍ଡଳ ଗଠିତ ହେଲା । ପଣ୍ଡିତ ଗୋଦାବରୀଶ ମିଶ୍ର ଏଥିରେ ଯୋଗଦେଲେ । ନୀଳକଣ୍ଠ ଦାସ ଓଡ଼ିଶା ଜାତୀୟ ଯୁଦ୍ଧ ସାମୁଖ୍ୟର ନେତା ହେଲେ । (National war Front)

ଭାରତର ପୂର୍ବପଟେ ଯୁଦ୍ଧର ନିଆଁ ସେତେବେଳକୁ ଜଳି ଉଠିଲାଣି । ଭାରତବର୍ଷ ବିପନ୍ନ ହୋଇ ପଡ଼ିଲାଣି । ବାଟ୍ଟା ସବୁରେ ସୈନ୍ୟମାନଙ୍କର ସାଞ୍ଜୁଆ ଗାଡ଼ିର ଭିଡ଼ ହେଲାଣି । ବୋମାବର୍ଷୀ ଉଡ଼ାଜାହାଜର ଘର୍ଘର ଶବ୍ଦରେ ଦିନରାତି ଆକାଶ କମ୍ପୁଥାଏ । ଜିନିଷପତ୍ରର ଘୋର ଅଭାବକୁ, ଦରଦାମ ହୁହୁ ବଢ଼ି ଯାଉଥାଏ କେତେବେଳେ କଣ ଘଟିବ ଭାବି ଲୋକେ ଆତଙ୍କରେ ଦିନ କଟାଉଥାନ୍ତି । ହିଟଲର ଓ ଜାପାନର ଜିଣିବା ଖବର ବିଜୁଳି ବେଗରେ ଗାଁ ଗଣ୍ଡାରେ ପ୍ରଚାରିତ ହୋଇ ଯାଉଥାଏ । ଗୁଜବର କଥା କହିଲେ ନସରେ ।

ଆମକୁ ଏହି ଅବସ୍ଥାର ସାମନା କରିବାକୁ ହେଲା । ଲୋକଙ୍କ ଭିତରେ ସେତେବେଳେ ହିଟଲରର ପ୍ରବଳଶକ୍ତି ଓ ସେ ନିଶ୍ଚୟ ଜିଣିବ ବୋଲି ଦୃଢ଼ ଧାରଣା । ସେତେବେଳେ ଲୋକଙ୍କୁ ଆମେ ବୁଝାଉ ଥାଉ ଯେ ହିଟଲର ନିଶ୍ଚୟ ହାରିବ । ପ୍ରତିକୂଳ ଅବସ୍ଥାରେ ଆମକୁ ଯେ କେତେଦୂର କଷ୍ଟ ହେଉଥିବ କାମ, କରିବାକୁ ତାହା ସହଜେ ଅନୁମେୟ । ଏଣେ ଇଂରେଜ ସରକାର ଭାରତରୁ ଧାନ ଚାଉଳ ଗହମ ଲୁଗାପଟା, କାଠ, ବାଉଁଶ ଟଙ୍କା ପଇସା ଯୁଦ୍ଧରେ ବ୍ୟବହାର କରିବା ପାଇଁ ଲୁଟ କରିନେବାରେ ଲାଗିଥାଏ । ଫଳରେ ଲୋକଙ୍କୁ ଧାନଚାଉଳ ଲୁଗାପଟ ମିଳୁନଥାଏ । ଅନାହାର ମୃତ୍ୟୁର ବିଭୀଷିକା ସାରାଦେଶରେ ଖେଳିଗଲାଣି । ଲୋକଙ୍କୁ ସେଥିରୁ ରକ୍ଷା କରିବାକୁ ହେବ । ସେମାନଙ୍କ ମନରେ ସାହାସ, ଦୃଢ଼ତା ଓ ଆତ୍ମବିଶ୍ୱାସ ଆଣିବାକୁ ହେବ । ସେତେବେଳେ ଏହା ଯେ କି କଠିନ କାମ ଥିଲା ତାହା ଆଜି କଳନା କରିପାରୁନାହିଁ । କମ୍ୟୁନିଷ୍ଟ ପାର୍ଟିକୁ ଏକା ଏହି ଦାୟିତ୍ୱ ତୁଲେଇବାକୁ ହେଉଥିଲା । ଆଉ କେହି ସାହା ଭରସା ନଥିଲେ । କଂଗ୍ରେସ ସୋସିଆଲିଷ୍ଟ, ଫରୱାର୍ଡ଼ବ୍ଲକ (ସୁଭାଷ ବୋଷଙ୍କଦଳ) ସମସ୍ତେ ସେତେବେଳେ ଆମର ବିରୋଧୀ । ସେମାନେ ଜର୍ମାନ- ଜାପାନର କାର୍ଯ୍ୟତଃ ପକ୍ଷପାତୀ । ଅନେକ ତ ଜାପାନୀ ସୈନ୍ୟ ଆସିଗଲେ ସେମାନଙ୍କୁ ପାଛୋଟି ଆଣିବାପାଇଁ ଫୁଲମାଳ ସଜକରି ରଖିଥାନ୍ତି ।

ଏତନ୍ତକବେଳେ ୧୯୪୨ ଅଗଷ୍ଟ ତା ୯ରେ ସରକାର କଂଗ୍ରେସକୁ ବେଆଇନ ଘୋଷଣା କଲା । ଗାନ୍ଧି, ଜହରଲାଲ, ପଟେଲ, ମହମ୍ମଦ ପ୍ରଭୃତି ଭାରତବର୍ଷର ସବୁ ନେତାଙ୍କୁ ବନ୍ଦୀକରାହେଲା । ବହୁ କଂଗ୍ରେସ କର୍ମୀ, କମ୍ୟୁନିଷ୍ଟ ପାର୍ଟିର ମଧ୍ୟ ବହୁ ନେତା ଓ କର୍ମୀଙ୍କୁ ଅଟକ ଆଇନ ବଳରେ ଜେଲରେ ଭର୍ତ୍ତି କରି ଦିଆହେଲା । ଦେଶ ନେତୃତ୍ୱହୀନ ହୋଇ ପଡ଼ିଲା ।

# ନୂଆ ଯୁଗର ସଙ୍କେତ

୧୯୪୨ ଅଗଷ୍ଟ ତା ୯ ଠିକ୍‌ବେଳେ କଟକରେ ଏକ ବୃହତ୍ କୃଷକ ମେଳା ହେବାର ଆୟୋଜନ ଚାଲିଥାଏ । ସ୍ୱାମୀ ସହଜାନନ୍ଦ ସରସ୍ୱତୀଙ୍କୁ ଏଥିରେ ପୌରହିତ୍ୟ କରିବାକୁ ଆମନ୍ତ୍ରଣ କରାଯାଇଥାଏ । ସମଗ୍ର ଓଡ଼ିଶାର ପୁରପଲ୍ଲୀରୁ ଚାଷୀ ଓ କର୍ମୀମାନେ ଶୋଭାଯାତ୍ରା କରି ୪, ୫ ଦିନ ପୂର୍ବରୁ ଚାଲି ଚାଲି କଟକ ବାହାରି ଥା'ନ୍ତି । ବୋଲଗଡ଼ରୁ ପଶୁରାମ ପଦାତିକ ରାୟ, ବେଗୁନିଆଁରୁ ଗଙ୍ଗାଧର ପରିଜେଗ, ବାଙ୍କନଧି ସୁବୁଦ୍ଧି, ଟାଙ୍ଗିରୁ ଦିଗମ୍ବର ହରିଚନ୍ଦନ, ଖୋର୍ଦ୍ଧାରୁ ମୁଁ, ପ୍ରାଣନାଥ ବାବୁ, ଦାମୋଦର ମିଶ୍ର ଏହିସବୁ ଶୋଭାଯାତ୍ରାକୁ ପରିଚାଳନା କରୁଥାଉ ବାଟରେ ଗ୍ରାମଡ଼ିହ, ଚନ୍ଦକା, ମେଣ୍ଟାଶାଳ, କାଟେଣି, କଣ୍ଡାବାଡ଼ ଚନ୍ଦକାଠାରେ । ସକାଳେ, ଖରାବେଳେ ଉପରଓଳି, ଓ ରାତିରେ ରହଣି ହେଉଥାଏ । ଏହିପରି ଚାରିଆଡ଼ୁ ଆସୁଥିବା ଶୋଭାଯାତ୍ରା ସବୁ ବାଟରେ ପଡ଼ୁଥିବା ଗ୍ରାମମାନଙ୍କରେ ରହଣି କରି ଚାଲିଥାନ୍ତି । ଗ୍ରାମବାସୀମାନେ ଆମ୍ଭମାନଙ୍କୁ କୀର୍ତ୍ତନ, ବାଜାବଜାଇ ବାଟରୁ ପାଛୋଟି ନେଉଥାନ୍ତି । ସ୍ତ୍ରୀଲୋକେ ହୁଳହୁଳୀ, ଶଙ୍ଖ ବଜାଇ ବନ୍ଦାପନା କରୁଥାନ୍ତି । ଖିଆପିଆ ଖୋଲି ରୋଷେଇ କରି ମଉଛା ହେଉଥାଏ । ରା'ରି ଭିତରେ ସଭା ଚାଲେ, ଗଣନୃତ୍ୟ ଓ ସଙ୍ଗୀତରେ ଗ୍ରାମ ମୁଖରିତ ହୁଏ । କି ଆନନ୍ଦ, କି ଉନ୍ମାଦନା ! କେତେବେଳେ ମୁଁ ଶୋଭାଯାତ୍ରା ପରିଚାଳନା କରୁଥାଏ ତ କେତେବେଳେ ଆଗୁଆ ବାହାରିରେ ଯାଇ ଆୟୋଜନ କରେ, କେତେବେଳେ ବକ୍ତୃତା ଦିଏ ତ କେତେବେଳେ ସ୍ଲୋଗେନ ଦବାରେ ଅଗ୍ରଣୀ ହୁଏ । କ୍ଳାନ୍ତି, ଅବସାଦ ମୋତେ ସ୍ପର୍ଶ କରୁ ନଥାଏ । ଦାମ ମିଶ୍ର, ଗଙ୍ଗାଧର ମିଶ୍ର, ପଶୁରାମ ପଦାତିକରାୟ, ଅନନ୍ତଜେଙ୍ଗା (ଛତାବର), ବ୍ରଜ ମହାନ୍ତି ଗ୍ରାମଡ଼ିହ) ପ୍ରଭୃତି ଯେଉଁମାନେ ବିଭିନ୍ନ ଅଞ୍ଚଳରୁ ଶୋଭାଯାତ୍ରା ଘେନି ଆସିଥାନ୍ତି ସମସ୍ତେ ଉତ୍ସାହରେ କାମରେ ମାତିଥାନ୍ତି । ବାଟଚାଲି ଚାଲି ପାଦସବୁ ଫୋଟକା ହୋଇଯାଇଥାଏ । କିନ୍ତୁ କିଏ ପଚାରୁଚି ସେ କଥାକୁ । ସେଇଥିରେ ଧାଁ ଧପଡ଼ ଚାଲିଥାଏ । ପୁଣି ନାଚିବା ଗୀତ ଗାଇବା ପାଇଁ ସେଇଥିରେ ସେମାନେ ବାହାରି ପଡ଼ୁଥାନ୍ତି । ଆମର ଏହି କାମଦାମରେ ଶତ୍ରୁମାନେ ମଧ୍ୟ ଆଶ୍ଚର୍ଯ୍ୟ

ହୋଇ ଯାଉଥିଲେ । କାକଟପୁର, ନିମାପଡ଼ା, ଗଡ଼ାଙ୍କଳା, ସମ୍ବଲପୁର ପ୍ରଭୃତି ଦୂର ଗ୍ରାମମାନଙ୍କରୁ ଠିକ୍ ଏହିପରି ଲୋକେ ଚାଲି ଚାଲି ଆସୁଥାନ୍ତି । କଟକ ଜିଲ୍ଲାର ପଟିଆ, କୁଜଙ୍ଗ, ଏରସମା, ଢେଙ୍କାନାଳ, ଆଠଗଡ଼ ଅଞ୍ଚଳରୁ ଲୋକେ ଆସିଥାନ୍ତି । ଗୋଟାକପରେ ଗୋଟାଏ ଗାଁ ପାରହେଲା ବେଳକୁ ସେଥିରେ ଗୋଟାକ ପରେ ଗୋଟାଏ ଗାଁର ଲୋକେ ଯୋଗ ଦେଉଥାନ୍ତି । ଶୋଭାଯାତ୍ରା କ୍ରମେ ବଡ଼ରୁ ବଡ଼ ହେବାକୁ ଲାଗିଥାଏ ।

ତା ୮ ରିଖ ଦିନ ସଂଧ୍ୟାବେଳେ ଯାଇ ଆମେ ଚନ୍ଦକାରେ ପହଞ୍ଚିଲୁ । ଏ ଥିଲା ଆମର ଏକ ଧେଣ୍ଡ ଜେଗା । ଆମ୍ବତୋଟା ଭିତରେ ଆମର ରହଣି ହେଲା । ରାତିରେ ମଧ୍ୟ ସେଠାରେ ସଭା, ଗୀତ, ନୃତ୍ୟ ଓ ମଉଛା ଚାଲିଲା ।

ରାତି ଥାଉ ଥାଉ ଆମେ ଚାଲିଲୁ କଟକ ଆଡ଼କୁ. ଏହିଠାରୁ ଚନ୍ଦକା ଲୋକେ ଆମ ସଙ୍ଗରେ ଯୋଗଦେଲେ । ସକାଳ ଫାଟିଲା ବେଳକୁ ଆମେ ଯାଇ ପହଞ୍ଚିଲୁ କାଠଯୋଡ଼ି କୂଳରେ । ବଡ଼ ବଡ଼ ଡଙ୍ଗାସବୁ ଆମକୁ ପାରିକରିବାକୁ ସଜ ହୋଇ ରହିଥିଲା । କୃଷକ ସଭାର ବଡ଼ ବଡ଼ ଲାଲପତାକା ଧଳାରଙ୍ଗର ଦା' ହଣ୍ଡିକ ଚିହ୍ନରେ ଧରି କାଠଯୋଡ଼ି ବକ୍ଷ ଉପରେ ଫର ଫର ହୋଇ ଉଡ଼ିବାକୁ ଲାଗିଲା । ଡଙ୍ଗାସବୁ କାଠଯୋଡ଼ି ପାଣିର ଧୀର ସ୍ରୋତରେ ଦୋହଲି ଦୋହଲି ଯିବାକୁ ଲାଗିଲା । ରେଳପୋଲ ଉପରେ ଶହ ଶହ ଲାଲପତାକା ଉଡ଼ାଇ ହଜାର ହଜାର କୃଷି କୃଷକ ସଭାର ସ୍ଲୋଗାନ ଦେଇ ଆଗଉଥାନ୍ତି । ଯେତେବେଳେ ଆମର ଡଙ୍ଗାସବୁ କାଠଯୋଡ଼ି ପଥର ବନ୍ଧ ନିକଟ ହୋଇ ଆସିଲା, ସେତେବେଳେ ଆମେ ଦେଖିଲୁ ବନ୍ଧୁକଧାରୀ ଅସଂଖ୍ୟ ପୁଲିସ ଏମୁଣ୍ଡରୁ ସେମୁଣ୍ଡ ଯାଏ ଛିଡ଼ାହୋଇ ରହିଛନ୍ତି । ଆମର ଡଙ୍ଗା ପାଖକୁ ଆସିଲା ପୋଲିସ ଆମକୁ ଓହ୍ଲାଇବାକୁ ଦେଲେନାହିଁ । ଆମକୁ ଜଣାଇ ଦେଲେ ଯେ ସଭା, ଶୋଭାଯାତ୍ରା ସବୁ ବେଆଇନ କରି ଦିଆଯାଇଛି । ଭାରତର ସବୁ କଂଗ୍ରେସ ନେତା ଓ କର୍ମୀଙ୍କୁ ଗିରଫ କରାଯାଇଛି । ଆମକୁ ମଧ୍ୟ ଗିରଫ କରାଯିବ । ପୁଲିସ ଓ ଆମ ଭିତରେ ବହୁ ବାଦାନୁବାଦ ଚାଲିଥିବାବେଳେ ଓର ଉଣ୍ଡି ମୁଁ ଆଉ କେତେଜଣ ସହର ଭିତରକୁ ଚାଲିଗଲୁ । ଅନ୍ୟମାନେ ଡଙ୍ଗାକୁ ଅନ୍ୟଆଡ଼େ ନେଇ ସେଠାରୁ ମଧ୍ୟ ନାନା କୌଶଳରେ ସହର ଭିତରକୁ ଖସି ଆସିଲେ । କେବଳ କାଠଯୋଡ଼ି କୂଳକୁ ଯେ ପୁଲିସ ଜଗିଥିଲେ ତା ହାନୁହେଁ । ସାରା କଟକ ସହରକୁ ପୁଲିସ ଅବରୋଧ କରି ରଖିଥିଲା । ଆଶଙ୍କା ଥିଲା କିଛି ଅଘଟଣ ଯଦି ଘଟେ କିନ୍ତୁ ଯେଉଁମାନେ ଶୋଭାଯାତ୍ରାରେ ଓଡ଼ିଶାର ଚାରିଆଡ଼ୁ ଆସିଥିଲେ ସେମାନେ ସମସ୍ତେ କଟକ ସହରରେ ପ୍ରବେଶ କଲେ ।

ଏହି ଆତଙ୍କରାଜ ଭିତରେ କଟକ ଚାନ୍ଦିନୀଚୌକ ଠାରେ ସେଦିନ ପ୍ରକାଶ୍ୟରେ ଓଡ଼ିଶାର ଇତିହାସରେ ପ୍ରଥମକରି କମ୍ୟୁନିଷ୍ଟ ପାର୍ଟିର ଖୋଲା ଅଫିସ ଭଗବତୀ ଚରଣ ପାଣିଗ୍ରାହୀ ଉଦ୍‌ଘାଟନ କଲେ ଏବଂ ହାତୁଡ଼ି ଥିବା କମ୍ୟୁନିଷ୍ଟ

ପାର୍ଟିର ଲାଲପତାକା ଓଡ଼ିଶାର ରାଜଧାନୀର ରାସ୍ତା ଉପରେ ପ୍ରଥମ କରି ଦେଖା ଦେଲା । ସ୍ୱାମୀ ସଦାନନ୍ଦ ସରସ୍ୱତୀଙ୍କ ଉପସ୍ଥିତିରେ ବିଭିନ୍ନ ଜିଲ୍ଲାର ନେତାମାନଙ୍କ ସହ ଘରୋଇ ବୈଠକରେ ଆଲୋଚନା ଚାଲିବା ପରେ ଜିଲ୍ଲାଓ୍ୟାରି ଆଲୋଚନା ମଧ୍ୟ ଚାଲିଲା ଏବଂ ଭବିଷ୍ୟତ କାର୍ଯ୍ୟପନ୍ଥା ନେଇ ସେ ଯାହା ଜିଲ୍ଲାକୁ ଫେରିଗଲେ ।

୧୯୪୨ ଅଗଷ୍ଟ ତା ୯ ଭାରତର ଇତିହାସରେ ଯେପରି ଏକ ନୂତନ ଇତିହାସ ସୃଷ୍ଟିର ଦିବସ, ଓଡ଼ିଶା ଇତିହାସରେ ସେହିପରି ଏକ ନୂତନ ଯୁଗର ସଙ୍କେତର ଦିବସ । ●

# ଚୋଷ୍ଟି ନା କାଗଜ
# ଲେଖା ନା ବୋମା

କମ୍ୟୁନିଷ୍ଟ ପାର୍ଟି ତରଫରୁ 'ମୁକ୍ତିଯୁଦ୍ଧ' ସାପ୍ତାହିକ ପ୍ରକାଶ କରାଯାଉଥାଏ । ଅଗଷ୍ଟ ତା ୯ ଘଟଣା ଉପରେ ଭଗବତୀବାବୁ ଏକ ସମ୍ପାଦକୀୟ ଲେଖିଲେ 'ଦୋଷ କାହାର ଦାୟୀ କିଏ ? ଏହି ଲେଖାର ତାତ୍ପର୍ଯ୍ୟ ଥିଲା ଇଂରେଜ ସରକାରର ଦୋଷୀ, ଦାୟୀ ହେଲା କଂଗ୍ରେସ ଓ ଦେଶର ସବୁ ରାଜନୈତିକ କର୍ମୀ' । ଏହି ଲେଖ ଉପରେ 'ମୁକ୍ତିଯୁଦ୍ଧ' ଓ ତା'ର ସମ୍ପାଦକଙ୍କୁ ଟ୬୦୦-୦୦ ଅମାନତ ଜମା ନଦେଲେ 'ମୁକ୍ତି ଯୁଦ୍ଧ'କୁ ବନ୍ଦ କରିଦିଆଯିବ ବୋଲି ଓଡ଼ିଶା ସରକାର ଆଦେଶ ଦେଲେ । ଏହି ସମ୍ପାଦକୀୟଟି ଛୋଟିଆ ଏବଂ ତାର ଭାଷା ଖୁବ୍ ସରଳ ଥିଲା ସତ, କିନ୍ତୁ ସେଥିରେ ଯେଉଁ ଶକ୍ତି ସୂଚିତ ହିଥିଲା, ତାହା ବୋମାଠାରୁ ଆହୁରି ଭୟଙ୍କର ବିସ୍ଫୋରକ ଥିଲା ।

'ମୁକ୍ତିଯୁଦ୍ଧ' ଉପରେ ଏ ଯେଉଁ ଆକ୍ରମଣ ହେଲା ତା'ର ପ୍ରତି ଉତ୍ତର ଦେବାପାଇଁ ଆମେ ଜନସାଧାରଣଙ୍କୁ ନିବେଦନ କଲୁ । ରାମଚନ୍ଦ୍ର ମିଶ୍ର, ମୁଁ ଓ କେତେଜଣ ଗୃହିଣୀଙ୍କ ବାଲୁବଜାର ଛକଯାଏ ପ୍ରତ୍ୟେକ ଦୋକାନୀ ଓ ବାଟର ଲୋକଙ୍କଠାରୁ ପଇସା ଆଦାୟ କରିବାକୁ ଲାଗିଲୁ । ୩, ୪ ଘଣ୍ଟା ଭିତରେ ଟ ୬୦୦-୦୦ ଆଦାୟ ହୋଇଗଲା ଏବଂ ଅମାନତ ଟଙ୍କା ଜମାଦେଇ କାଗଜ ବାହାର କରାଗଲା ।

'ମୁକ୍ତିଯୁଦ୍ଧ' ପ୍ରକାଶ ପାଇଁ ସରକାର କାଗଜ ଯୋଗାଇଲେ ନାହିଁ । ଯୁଦ୍ଧ ଲାଗିଥିବାରୁ ବଜାରରେ କାଗଜ ମଧ୍ୟ ମିଳୁ ନଥାଏ । କିନ୍ତୁ 'ମୁକ୍ତିଯୁଦ୍ଧ' ନିଶ୍ଚୟ ବାହାରିବ । ବୈଦ୍ୟନାଥ ରଥ ବାହାରିଲେ ହାତରେ କାଗଜ ତିଆରି କରିବାକୁ ।

କେଓଁରେ ହାତ ତିଆରି କାଗଜରେ 'ମୁକ୍ତିଯୁଦ୍ଧ' ଉତ୍ପାଦିତ ହେଲା । ହାତତିଆରି କାଗଜ ପୁଣି ନୂଆ ଶିଖାଳି କାରିଗର ତିଆରି କରୁଥାନ୍ତି । ତେଣୁ କାଗଜଗୁଡ଼ିକ ସ୍ୱୋଟିଭଳି ମୋଟା ଓ ଝଦଖଦଡ଼ିଆ ହେଉଥାଏ । ପାତଳା ଓ ପାତଳା ହେଉନଥାଏ । ନିଆଁଖୁଣ୍ଟାର ସମ୍ପାଦକ ଗୋଦାବରୀଶ ମହାପାତ୍ର ଥରେ ଲେଖିଥିଲେ ଯେ, ରାତିରେ 'ମୁକ୍ତିଯୁଦ୍ଧ'କୁ ଲୋକେ ଦ୍ବୁଟି ବୋଲି ଭ୍ରମରେ ପଢ଼ି ଶୋଇବେଇ ଯିବେ । ବୈଦ୍ୟନାଥ ରଥ, ଗୁରୁଚରଣ ପଟ୍ଟନାୟକ, ଘନଶ୍ୟାମ ଝଣ୍ଟିଆଲ, ଭଗବତୀ ବାବୁ, ଅନନ୍ତ ପଟ୍ଟନାୟକ, ନନ୍ଦକିଶୋର ପଟ୍ଟନାୟକ, ଅକ୍ଳାନ୍ତ ପରିଶ୍ରମ କରି ହାତରେ କାଗଜ ତିଆରି କରି 'ମୁକ୍ତିଯୁଦ୍ଧ' ପ୍ରକାଶ କରିବାକୁ ଲାଗିଲେ । ସେମାନଙ୍କର ଦୃଢ଼ତା ହେତୁ ଏହା ସେଦିନ ସମ୍ଭବ ହୋଇ ପାରିଥିଲା ।

—※—

# ଆତ୍ମଗୋପନ

୧୯୪୨ ଅଗଷ୍ଟ ୦ତା୯ ପରେ ପରେ ପ୍ରାଣନାଥ ପଟ୍ଟନାୟକ ଅଟକବନ୍ଦୀ ହେଲେ । ମୋତେ ଗିରଫ କରିବା ପାଇଁ ଖୋଜା ଚାଲିଛି ବୋଲି ଖବର ପାଇଲି । ତେଣୁ କଟକରୁ ମୁଁ ଆତ୍ମଗୋପନ କରି ଖସି ଚାଲିଗଲି । କିନ୍ତୁ ମୋର ଆଗରୁ ଏ ବିଷୟରେ କୌଣସି ଅଭିଜ୍ଞତା ନଥିଲା । ଅବସ୍ଥା ଚକ୍ରରେ ପଡ଼ିଲେ ମଣିଷ ଆପଣା ମନକୁ ସବୁ ଉଦ୍‌ଭାବନ କରେ । ତାକୁ ଶିଖାଇବାକୁ ପୁଣି କେହି ନଥାଏ । ମୋ କ୍ଷେତ୍ରରେ ତାହାହିଁ ହେଲା । ଜଙ୍ଗଲ ଭିତରେ ଯାଇ ରହିଲି । ଏକୁଟିଆ. ସାଙ୍ଗରେ ଧରିଥାଏ ଚୁଡ଼ା, ତେନ୍ତୁଳି, ଲୁଣ, ଲଙ୍କା, ଝରଣା ପାଣିରେ ସେତକ ଭିଜାଇ ପଥରଟିରେ ସେତକ ଖାଇଦିଏ । ବାଘ, ଭାଲୁ, ହାତୀର ଘର ସେ ଜଙ୍ଗଲରେ । ଏକୁଟିଆ ରାତି ମଧ୍ୟ କଟାଏ । ସମସ୍ତଙ୍କର ସୁପରିଚିତ ଗୁଣ ଅଜା (ଗୁଣନିଧି ସ ମନ୍ତ୍ରୀ) କେବଳ ମୋର ଭରସା । ସେ ପ୍ରତିଦିନ ଆସି ମୋର ଖବର ନିଅନ୍ତି । ତାଙ୍କରି ହାତରେ ଚିଠିପତ୍ର ଦେଇ ଅନ୍ୟ ସାଥୀମାନଙ୍କ ସହିତ ସମ୍ପର୍କ ରଖୁଥାଏ । କାମ ଦାମର ନିର୍ଦ୍ଦେଶ ଓ ଲେଖାସବୁ ପଠାଉଥାଏ । ଏହିପରି ମାସକୁ ବେଶୀ କଟିଗଲା । ଏଥିରେ ବିଶେଷ ସୁବିଧା ହେଲନାହିଁ । କାମ ଠିକ୍ ଠିକ୍ ଚାଲିଲା ନାହିଁ । ଏହି ସମୟରେ ମୁଁ କଠିନ ରକ୍ତଆମ ଶଯ୍ୟାରେ ଆକ୍ରାନ୍ତ ହେଲି । ଗୁଣ ଅଜା ମୋତେ ଗୋପନରେ ଆଣି ଜଣେ କବିରାଜଙ୍କ ପାଖରେ ଚିକିତ୍ସା କରିବାର ବ୍ୟବସ୍ଥା କଲେ । ମୋର ଦେହ ଭଲ ହେବାପାଇଁ ମାସେ ଲାଗିଗଲା । ସେତେବେଳକୁ ଖାଲି ଦୁର୍ବଳ ହୋଇ ପଡ଼ିଥାଏ । ଚାଲିପାରୁ ନଥାଏ ।

କିନ୍ତୁ ମୋର ଏହି ଦୁର୍ବଳତା ସତ୍ତ୍ୱେ ମୋର ଆତ୍ମଗୋପନର ସୁଯୋଗ ନେଇ ବଦଳାଇ ବିଭିନ୍ନ ପାର୍ଟି କେନ୍ଦ୍ର ଥାନା ସବୁ ବୁଲି ପାର୍ଟି ବୈଠକମାନ କରାଇଲି । ଯୁଦ୍ଧ ପାଇଁ ସାଧାରଣ ଗରିବ ଲୋକ ଓ କୃଷୀଙ୍କ ଉପରୁ ଆଦାୟ ହେଉଥିବା ଯୁଦ୍ଧ ଚାନ୍ଦାର ବିରୋଧ କରିବା, ଲୋକଙ୍କୁ ଧନ, ଗୃହଲ ଯୋଗାଇବା ଓ ଶସ୍ତା ଗୋଲାଗୁଡ଼ିକୁ ଖୋଲିବା, ଜମିହୀନଙ୍କୁ ସସ୍ତା ଯୋଗାଇବା ଓ ଜାପାନୀ ଆକ୍ରମଣରେ ମୁକାବିଲା କରିବା ପାଇଁ ପ୍ରତିରୋଧ ବାହିନୀ ଗଢ଼ିବା କାର୍ଯ୍ୟ ଆରମ୍ଭ କରାଯାଇଥିଲା । ବେଲଗଡ଼, ଦେଗୁଳିଆ ଥାନାର ବହୁ ଯୁବକ ସେତେବେଳକୁ କମ୍ୟୁନିଷ୍ଟ-ପାର୍ଟିର ସଭ୍ୟ ହୋଇ ସାରିଥିଲେ । ନୟାଗଡ଼ର ବାସୁଦେବ ଦାସ, ସାନପଦରର ଗଙ୍ଗାଧର ପାଇକରାୟ ବାଙ୍କନାଥ ସୁକ୍ରିଡି ବୋଲାଗଡ଼ର ମୁସ ସାହେବ ପ୍ରଭୃତି ବହୁ ଯୁବକ କମ୍ୟୁନିଷ୍ଟପାର୍ଟିର ନେତୃତ୍ୱ କରୁଥାନ୍ତି । ପୁରୀ ଜିଲ୍ଲା କମ୍ୟୁନିଷ୍ଟପାର୍ଟିର ସମ୍ପାଦକ ଭାବରେ କାର୍ଯ୍ୟ କରୁଥିବା ହେତୁ ଓଡ଼ିଶା ସରକାରଙ୍କ ନିର୍ଦ୍ଦେଶରେ ମୋ ଉପରୁ ଗିରଫ ପରୱାନା ଉଠାଇ ନିଆହେଲା ସତ କିନ୍ତୁ ମୋର କାର୍ଯ୍ୟରେ ଓଡ଼ିଶା ସରକାର ଅସନ୍ତୁଷ୍ଟ ହୋଇ ମୋ ଉପରେ ୧୪୪ ଧାରା ଜାରି କରି ୨ମାସ ପାଇଁ ସଭାସମିତି କରିବାକୁ ନିଷେଧ ଆଦେଶ ଦେଲେ ।

ଏ ନିଷେଧ ଆଦେଶ ସତ୍ତ୍ୱେ ମୁଁ ଖୋର୍ଦ୍ଧା ସବ୍‌ଡିଭିଜନର ବହୁ ଗାଁରେ ବୁଲିସବୁ ବୈଠକ ସଭାମାନ କରି ଲୋକଙ୍କୁ ସଙ୍ଗଠିତ କରିବାକୁ ଲାଗିଲି ।

*—

# ଗୁପ୍ତ ସେନାବାହିନୀ ଗଠନ

ଭାରତୀୟ କମ୍ୟୁନିଷ୍ଟପାର୍ଟିର ଅଫିସ ସେତେବେଳେ ବମ୍ବେରେ ଥାଏ । ୧୯୪୨ ଅକ୍‌ଟୋବରରେ କଲିକତାରେ କମ୍ୟୁନିଷ୍ଟପାର୍ଟି ତରଫରୁ ରାଜନୈତିକ ଶିକ୍ଷା ଶିବିର ଖୋଲାଗଲା । ଭାରତର ସବୁ ପ୍ରଦେଶରୁ ପାର୍ଟିର ସମ୍ପାଦକ ଓ ମୁଖ୍ୟ କର୍ମକର୍ତ୍ତାମାନେ ଏଠାକୁ ଶିକ୍ଷା ପାଇବା ପାଇଁ ଆସିଲେ । ପି. ସି ଯୋଶି ପାର୍ଟି ସମ୍ପାଦକ ଏବଂ ଅନ୍ୟ କେତେଜଣ କେନ୍ଦ୍ର କମିଟିର ସଭ୍ୟ ଶିକ୍ଷା ଦେଉଥାନ୍ତି । ଓଡ଼ିଶାରୁ ଭଗବତୀ ବାବୁ, ଗୁରୁଚରଣ ପଟ୍ଟନାୟକ ଓ ମୁଁ ଗଲୁ । ଏଠାରୁ ରାଜନୈତିକ ଶିକ୍ଷା ସାରି ଓଡ଼ିଶାକୁ ପରେ ଫେରିଆସିଲୁ ।

ଯୁଦ୍ଧର ଘନଘଟା କ୍ରମେ ବଢ଼ି ଚାଲିଥାଏ । ଭାରତକୁ ଜାପାନ ଦଖଲ କରିନିବାର ଘୋର ଆଶଙ୍କା ଦେଖାଦେଲା । କମ୍ୟୁନିଷ୍ଟପାର୍ଟି ଭାରତର ମୁକ୍ତି ପାଇଁ ଜାପାନ ବିରୁଦ୍ଧରେ ଗରିଲାଯୁଦ୍ଧ ଚଳାଇବାକୁ ସ୍ଥିର କଲା । ଗରିଲାଯୁଦ୍ଧରେ

ପରିଚାଳକମାନଙ୍କୁ ତାଲିମ ଦବାପାଇଁ ପ୍ରତ୍ୟେକ ପ୍ରଦେଶରୁ ବଛାବଛା ପାର୍ଟି ସଭ୍ୟଙ୍କୁ ଏକ ଗୋପନୀୟ ସ୍ଥାନକୁ ପଠାଗଲା । ଓଡ଼ିଶାରୁ ରାମଚନ୍ଦ୍ର ମିଶ୍ର ମୋତେ ଓ ଆଉ ଜଣଙ୍କୁ ପଠାଗଲା । ଗରିଲା ଯୁଦ୍ଧରେ ଓସ୍ତାଦ ପାର୍ଟି ଶିକ୍ଷକମାନଙ୍କ ପାଖରୁ ତାଲିମ ପାଇ ଆମେ ଓଡ଼ିଶାକୁ ଫେରି ଆସିଲୁ । ବଙ୍ଗଳା ଉପରେ ସେତେବେଳେ ଏକ ଭୟଙ୍କର ଝଡ଼ ବହି ଯାଇ ଘରଦ୍ୱାର ସବୁକୁ ଛାରଖାର କରି ଦେଇଥାଏ । ଖଡ଼ଗ୍‌ପୁର ଷ୍ଟେସନରେ ପହଞ୍ଚି ଦେଖିଲୁ ଯେ ଟିଣ ଛାତ ସବୁ ଉଡ଼ିଯାଇଛି, ମାଲଗାଡ଼ି-ସବୁ ଓଲଟି ଲାଇନ କଡ଼ରେ ପଡ଼ିଛି । ବାଲେଶ୍ୱର ଏଥିରେ ମଧ୍ୟ କ୍ଷତିଗ୍ରସ୍ତ ହୋଇଥାଏ ।

ପୁରୀଜିଲ୍ଲାର କମ୍ୟୁନିଷ୍ଟପାର୍ଟିର ସଭ୍ୟମାନଙ୍କୁ ପ୍ରଥମେ ବିଭିନ୍ନ କେନ୍ଦ୍ରରେ ଗରିଲାଯୁଦ୍ଧରେ ତାଲିମ ଦେଇସାରି ଗରିଲା ବାହିନୀ ସବୁ ଗଠନ କରିବାକୁ ଲାଗିଲି । ସମସ୍ତ ପାର୍ଟି ସଭ୍ୟ ଏଥିପାଇଁ ପ୍ରସ୍ତୁତ ହୋଇଗଲେ । ଏତେ ଦ୍ରୁତ ଗତିରେ ଅବସ୍ଥା ବଦଳୁ ଥାଏ ଏବଂ ତାହାର ସଙ୍ଗେ ତାଳଦେଇ ଆମକୁ ଏତେ ଦ୍ରୁତ-ଗତିରେ କାମ କରିବାକୁ ପଡ଼ୁଥାଏ ଯେ, ତାହା ଏବେ ନିଜେ କଳ୍ପନା କରିପାରୁ-ନାହିଁ । ରାତିରେ ମଧ୍ୟ ଅବସର ନଥାଏ । ସମସ୍ତ ରାତିଟା କାମରେ କଟିଯାଏ । ଜାପାନୀ ଆକ୍ରମଣ ହେଲେ ଲୋକେ କିପରି ଶୃଙ୍ଖଳିତ ଭାବରେ ଗାଁ ଗଣ୍ଡା ଛାଡ଼ିଯିବେ, ଖାଇବା ପଦାର୍ଥ କିପରି ଓ କେଉଁଠି ନିରାପଦରେ ସାଇତି ରଖିବେ, ଶତ୍ରୁକୁ ହଇରାଣ କରିବେ ସେ ସବୁ ବିଷୟରେ ଆମର ପ୍ରଭାବିତ ଅଞ୍ଚଳର ଲୋକଙ୍କୁ ମଧ୍ୟ ତାଲିମ ଦିଆ ଚାଲିଲା । ଗାଁର ବଛା ବଛା ବିଶ୍ୱସ୍ତ ଲୋକଙ୍କୁ ମଧ୍ୟ ଗରିଲାଯୁଦ୍ଧର କୌଶଳ ବତାଇ ଦିଆ ହେଉଥାଏ । ପୁରୀଜିଲ୍ଲା ସମୁଦ୍ର ଉପକୂଳରେ ଅବସ୍ଥିତ । ଜେଷ୍ଠ ଶତ୍ରୁର ମୁକାବିଲା କରିବା ସାଙ୍ଗେ ମୁକ୍ତଅଞ୍ଚଳ ପ୍ରତିଷ୍ଠା କରିବା ସାଙ୍ଗେ ମୁକ୍ତ ଅଞ୍ଚଳ ପ୍ରତିଷ୍ଠା କରିବା ପାଇଁ ଆମେ ପ୍ରସ୍ତୁତ ହୋଇ ରହିଲୁ । କାକଟପୁର ଠାରେ ଇଂରେଜ ସରକାରର ଗୋଟିଏ ଉଡ଼ାଜାହାଜ ଘାଟିଥାଏ ଏବଂ ଜାପାନୀ ନୌବାହିନୀର ଜାହାଜ ସବୁ ପୁରୀ ଓ ଅସ୍ତରଙ୍ଗ କୂଳରେ ପ୍ରାୟ ଆସି ପଇଣ୍ଟରା ମାରୁଥାନ୍ତି ଏବଂ ବୁଡ଼ାଜାହାଜ ଦେବୀନଦୀ ଭିତରେ ୩,୪ ମାଇଲ ଭିତରକୁ ପଶି ଆସୁଥାନ୍ତି । ଇଂରେଜ ସୈନ୍ୟମାନେ ପୁରୀ ଝାଉଁବଣରେ ସେମାନଙ୍କର ଏକ ଘାଟି ପ୍ରତିଷ୍ଠା କରିଥାନ୍ତି ଏବଂ ଖୋର୍ଦ୍ଧାର ବରୁଣାଇରେ ସେନାଛାଉଣି ପକାଇଥାନ୍ତି, ଭୁବନେଶ୍ୱରରେ ଗୋଟିଏ ବଡ଼ଧରଣର ଉଡ଼ାଜାହାଜ ଘାଟି ରଖିଥାନ୍ତି । ଆମେ ଏସବୁକୁ ମଧ୍ୟ ଘେରି କାମ ଚଳାଇଥାଉ । ଇଂରେଜ ସରକାର ହଟିଗଲେ, ସେମାନେ ଛାଡ଼ିଯାଇଥିବା ଅସ୍ତ୍ରଶସ୍ତ୍ର ଗୋଳାବାରୁଦ ଆମେ ଅଧିକାର କରିନେଇ ସେସବୁକୁ ଯେପରି ବ୍ୟବହାର କରିପାରିବୁ ସେଥିପାଇଁ ବ୍ୟବସ୍ଥା କରୁଥାଉ ।

—*—

# ଦୁର୍ଭିକ୍ଷ

ଯୁଦ୍ଧର ଦାଉରେ ଓଡ଼ିଶାରେ ଖାଦ୍ୟାଭାବ ଦେଖାଦେଲା । ଚନ୍ଦକା ତ ଏକେ ଜଙ୍ଗଲିଆ ଅଞ୍ଚଳ । ସେଠାରେ ଧାନ, ଚାଉଳ ଆଦୌ ମିଳିଲା ନାହିଁ । ଲୋକେ ଉପାସରେ ଦିନ କାଟିବାକୁ ଲାଗିଲେ । ଚନ୍ଦକା ଥାନାରେ ଖାଦ୍ୟାଭାବ ଉତ୍କଟ ଅବସ୍ଥା ଧାରଣ କଲା । ସରକାର କୌଣସି ବ୍ୟବସ୍ଥା କଲେ ନାହିଁ । ମଦନଲାଲ ଯାଦେ ଜୀଆଙ୍କ ଭଳି ଧାନ ଚାଉଳ ବେପାରୀମାନେ କଳାବଜାରରେ ବାହାରକୁ ପଠାଇ ଟଙ୍କା ରୋଜଗାରରେ ଲାଲ୍ ବନିଗଲେ ।

ବେଗୁନିଆ ଓ ଚନ୍ଦକା ପାର୍ଟି ପ୍ରଭାବିତ ଅଞ୍ଚଳ । ବେଗୁନିଆର ସାଥୀମାନେ ବସି ଠିକ୍ କଲେ ଯେ ଚନ୍ଦକା ଥାନାକୁ ଧାନ ଯୋଗାଇବେ । ଚନ୍ଦକାଥାନାରୁ ଶଗଡ଼ସବୁ ବେଗୁନିଆକୁ ଗଲା । ଗଙ୍ଗାଧର ପାଇକରାୟ, ବାଞ୍ଛାନିଧି ମୁଦୁଲି, ପ୍ରଭୃତିଙ୍କ ଉଦ୍ୟମରେ ଦଶ ଶଗଡ଼ ଧାନ ସଂଗ୍ରହ କରାଗଲା । ସରକାର ଦେଖିଲେ ଯେ ସେ ଯାହା ପାରୁନାହାନ୍ତି କମ୍ୟୁନିଷ୍ଟ ପାର୍ଟି ତାହା କରିପାରୁଛି । ତେଣୁ ମୋ ବିରୁଦ୍ଧରେ ବେଆଇନ ଚାଉଳ ଚାଲାଣ କରିବା ଅଭିଯୋଗରେ ମକଦ୍ଦମା କରିବାକୁ ସରକାର ସ୍ଥିର କଲେ । ମୋର ଯୋଡ଼ାଏ ବଥବାହାରି ସେ ସବୁ କଷ୍ଟ ହୋଇ ମୁଁ ଡାକ୍ତରଖାନାରେ ପଡ଼ିଥାଏ । ଚନ୍ଦକା ଓ ବେଗୁନିଆର ଧାନଶଗଡ଼ ସବୁ ରୋଡ଼ରେ ପୁଲିସ ଅଟକାଇ ମକଦ୍ଦମା କରିବାକୁ ଯାଉଛନ୍ତି ବୋଲି ମୋତେ ସାଥୀମାନେ ଆସି ଡାକ୍ତରଖାନାରେ ଖବର ଦେଲେ । ମୋର ଆଉ ଧୈର୍ଯ୍ୟ ରହିଲା ନାହିଁ । ହାଲ୍‌ଟାମରି ଯେପରି ଶୋଇଥିଲି ସେହି ଅବସ୍ଥାରେ ବାଡ଼ି ଖଣ୍ଡିଏ ଧରି ଗ୍ଲେଣ୍ଟେଇ ଗ୍ଲେଣ୍ଟେଇ ଆସି ଏସ୍. ଡି. ଓ.ଙ୍କ କୋର୍ଟରେ ହାଜର ହେଲି । ଏସ୍. ଡି. ଓ. ମୋତେ ଏ ଅବସ୍ଥାରେ ଦେଖିବେ ବୋଲି ଭାବି ନଥିଲେ । ଜଗନ୍ନାଥ ମିଶ୍ର ସେତେବେଳେ ଏସ୍. ଡି. ଓ. ଥାନ୍ତି । ମୁଁ ତାଙ୍କୁ ସମସ୍ତ କଥା କହିଲି ଏବଂ ପରିଷ୍କାର ଜଣାଇ ଦେଲିଯେ, ଯଦି ଧାନଶଗଡ଼ ଚନ୍ଦକାକୁ ଛାଡ଼ିଦିଆ ନଯାଏ, ତେବେ ଯେଉଁ ଭୟଙ୍କର ଅବସ୍ଥା ସୃଷ୍ଟିହେବ ତା'ର ପରିଣାମ ତାଙ୍କୁ ଭୋଗକରିବାକୁ ହେବ । ଶେଷରେ ସେ ଏ ସବୁ ଶଗଡ଼କୁ ସନ୍ଧ୍ୟା ପୂର୍ବରୁ ପୁଲିସ ତତ୍ତ୍ୱାବଧାନରେ ଚନ୍ଦକା ପଠାଇ ଦେବାକୁ ଆଦେଶ ଦେଲେ । ଏ ସବୁ ଧାନ ଚନ୍ଦକାର ଲୋକଙ୍କୁ କିଛି ବଣ୍ଟାଗଲା ଏବଂ କିଛି ବିକ୍ରୀ କରାଗଲା । ଚନ୍ଦକାର ଲୋକଙ୍କୁ ସାହାଯ୍ୟକରିବା ପାଇଁ

ସେଦିନ ଏହିପରି ଅନଂ ଅଞ୍ଚଳର କମ୍ୟୁନିଷ୍ଟ ଗାଁସବୁ ବାହାରି ପଡ଼ିଥିଲେ ଏବଂ ଅନାହାରରୁ ଲୋକଙ୍କୁ ରକ୍ଷା କରିଥିଲେ ।

ଆମରି ଏହି ଉଦ୍ୟମ ପରେ ସରକାର ଚନ୍ଦକା ଥାନ ରେ କେତେଗୁଡ଼ିଏ ଧାନଗୋଲା ଖୋଲିଲେ ।

—※—

# ମଣିଷମାରୁ ଧନୀ ଲୋକ

ଯୁଦ୍ଧପରେ ମହାଜନ୍, ଦୋକାନୀମାନେ ଧାନର ଦର ବଢ଼େଇ ଚାଲିଲେ ଏବଂ ଆହୁରି-ଲାଭ, ଆହୁରି ଲାଭ, ପାଇଁ ଧାନ ମଧ୍ୟ ଲୋକଙ୍କୁ ବିକିଲେ ନାହିଁ । ଲୋକେ ଖାଇବା ବିନା କଲବଲ ହୋଇଗଲେ । ଦିନ ଦିନଧରି ଗାଁ ଗାଁ ବୁଲି ମଧ୍ୟ ଖାଲି ଟୋକେଇ ଅଖା ଧରି ନିରାଶରେ ଘରକୁ ଫେରୁଥାନ୍ତି । ଦିନେ ସକାଳେ ଖୋର୍ଦ୍ଧାର ମଥୁରାମ ମହାଜନର କୋଠି ଦୁଆର ମୁହଁରେ ଅନେକ ଲୋକ ଧାନକିଣିବା ପାଇଁ ଜମା ହେଲେ । ସେ ଘରଭିତରୁ ଧାନ ନବିକିବାକୁ ଜଣାଇଦେଲା । ମୋତେ ଲୋକେ ଯାଇ ବିକଳ ହୋଇ କହିଲେ । ମୁଁ ଲୋକଙ୍କ ସଙ୍ଗେ ଆସି ମଥୁରାମ ମହାଜନ ସଙ୍ଗେ ଦେଖାକରିବାକୁ ଚାହିଁଲି । କିନ୍ତୁ ସେ ଘରୁ ବାହାରିଲେ ନାହିଁକି ମୋ ସଙ୍ଗେ ଦେଖା କଲେ ନାହିଁ । ଶେଷରେ ଠିକ୍ କଲୁ ଆମେ କୋଠିର ଚାବି ଭାଙ୍ଗି ଧାନ ବାଣ୍ଟି କରିବୁ । ମୁଁ ଚାବିଭାଙ୍ଗିବାର ଦାୟିତ୍ୱ ନେଲି । ପୋଲିସ ଘଟଣା ଲକ୍ଷ୍ୟ କରୁଥାଏ ଅବସ୍ଥା କେଉଁ ଆଡ଼କୁ ଯାଉଛି । ଏସ୍. ଡ଼. ଓ.ଙ୍କୁ ମଧ୍ୟ ସବୁ ଖବର ପଠାଉଥାନ୍ତି । ଯେତେବେଳେ ମୁଁ ତାଲା ଭାଙ୍ଗିବାକୁ ବାହାରିଲି ଲୋକେ ମୋତେ ସମର୍ଥନ କରୁଥାନ୍ତି ପୁଲିସ ଦେଖିଲେ ଯେ ମୁଁ ନିଶ୍ଚୟ ତଲା ଭାଙ୍ଗିବି; ଆଇନ ଶୃଙ୍ଖଳା ତାଙ୍କ ହାତରୁ ଚାଲିଯାଉଛି । ସେମାନେ ସେଇଠୁ ମଥୁରାମ ମହାଜନଙ୍କୁ ଖବର ଦେଲେ ଯେ ସେ ଯଦି ଆସି ଧାନ ନ ବିକେ, ତେବେ ପୁଲିସ ତାଲାଭାଙ୍ଗି ଲୋକଙ୍କୁ ଧାନ ବିକିବ । ଶେଷରେ ମଥୁରାମ ଆସି ଧାନ ବିକିଲେ । ଆନନ୍ଦ ଧ୍ୱନି କରି ଶହ ଶହ ସ୍ତ୍ରୀ ପୁରୁଷ ଧାନ ନେଇ ଘରକୁ ଫେରିଲେ ।

ଏଣେ ପାର୍ଟି ଅଫିସରେ ହାଣ୍ଡି ଚଡ଼ପଡ଼ାଙ୍ଗ । ଦିନ ସେତେବେଳକୁ ୨ଟା । ଗିଲାସେ ପାଣି ଧଇ ଶୋଇଗଲି । ସଧ୍ୟାବେଳକୁ ଉଦୟନାଥ ମହାନ୍ତିଙ୍କ ଘରକୁ ଗଲି । ତାଙ୍କର ସ୍ତ୍ରୀ ପଚାରିଲେ, "କାହିଁକି ଭରି ଶୁଖିଲା ଦିଶୁଛ ? ଖିଆପିଆ

ବୋଧହୁଏ ହୋଇନାହିଁ ?" ମୋର ଉତ୍ତରକୁ ଅପେକ୍ଷା ନକରି ପଖାଳ ବାଢ଼ି-ଦେଲେ । ସେ ଜାଣନ୍ତି ଯେ ମୋତେ ଅନେକ ସମୟରେ ଏହିପରି ଓପାସ ରହିବାକୁ ପଡ଼େ । ସେ ସେଥିପାଇଁ ମଝିରେ ମଝିରେ ମୋତେ ପ୍ରାୟ ଖୁଆନ୍ତି । ପଖାଳ ଗଣ୍ଡାକ ପେଟରେ ପଡ଼ିଗଲା ପରେ ଟାଣ ହୋଇଗଲି ।

ଆଉଦିନେ ଜଣେ ବେପାରୀ ପଚିଶି ଶଗଡ଼ ଧାନ ବାହାରକୁ ଚାଲାଣ କରିବା-ପାଇଁ ଖୋର୍ଦ୍ଧାବାଟେ ନେଉଥାଏ । ଆମେ ସେହି ଧାନ ଶଗଡ଼ ଅଟକାଇ ଲୋକଙ୍କୁ ଧାନ ବିକିବାକୁ ବହୁ ଅନୁରୋଧ କଲୁ । ଏମାନଙ୍କ ପାଖରେ ଲୋକଙ୍କର ଜୀବନର ମୂଲ୍ୟଠାରୁ ଲାଭର ମୂଲ୍ୟ ଅଧିକ । ତେଣୁ ଆମର ଅନୁରୋଧ ସେ ଶୁଣିଲେ ନାହିଁ । ପୁଣି ଯେତେବେଳେ ପୁଲିସ ଓ ଶାସନକଳ ସେମାନଙ୍କ ପକ୍ଷରେ, ଟଙ୍କା ପଇସାରେ ପୁଲିସକୁ ସନ୍ତୁଷ୍ଟ କରିଦେଲାପରେ ପୁଲିସ ଓ କର୍ତ୍ତୃପକ୍ଷ ମୋତେ ଲାଲ ଆଖି ଦେଖାଇବାକୁ ଆରମ୍ଭ କଲେ ।

ମୁଁ ଲୋକଙ୍କୁ ସଂଗଠିତ କରି ଶଗଡ଼ ସବୁକୁ ବାଟ ଛାଡ଼ି ନଦେବା ପାଇଁ ବ୍ୟବସ୍ଥା କଲି । ଖୋର୍ଦ୍ଧାର ନିରଞ୍ଜନ ମହାନ୍ତି ମୋତେ ସାହାଯ୍ୟ କରୁଥାନ୍ତି । ମୁକୁନ୍ଦପ୍ରସାଦ ପାଖେ ପ୍ରତିରୋଧ ଆରମ୍ଭ ହେଲା । ରଥଯାତ୍ରା ସମୟ । ଆକାଶଭାଙ୍ଗି ବରଷା ଅରମ୍ଭ ହେଲା । ଲୋକେ ସେହିଥିରେ ଶଗଡ଼ ସାମନାରେ ବସି ରହିଲେ । ବଳଦସବୁ ଶଗଡ଼ରୁ ଫିଟାଇଦେଲେ । ଗୋଟାଏ କିଛି ମିମାଂସା କରିବା ନା'ରେ ମୋତେ ଏସ୍. ଡ଼ି ଓ.ଙ୍କ ପାଖକୁ ଡକାଇନେଇ ତେଣେ କେତେକ ଓକିଲଙ୍କୁ ମୁକୁନ୍ଦପ୍ରସାଦ ପଠାଇ ଲୋକଙ୍କୁ ପ୍ରତାରଣାରେ ଭୁଲାଇ ପ୍ରତିରୋଧ ଉଠାଇନବାକୁ ପ୍ରବର୍ତ୍ତାଇଲେ । ଯେଉଁ ଓକିଲମାନେ ପଇସା ନପାଇଲେ କୋର୍ଟରେ ଛିଡ଼ା ହୁଅନ୍ତି-ନାହିଁ ସେମାନେ ମାଗଣାରେ, ବରଷରେ କାହିଁକି ମୁକୁନ୍ଦପ୍ରସାଦ ଧାଇଁ ଜଣେ ମହାଜନ ପାଇଁ ଲଢ଼ୁଛନ୍ତି, ସେକଥା ଲୋକେ ସହଜରେ ଧରିନେଲେ । ତେଣୁ ସେମାନେ ତାଙ୍କ ଜାଲରେ ପଡ଼ିଲେ ନାହିଁ । ମୋତେ ଏଣେ କୋର୍ଟରେ ଗିରଫ କରିବାର ଧମକ ଦିଆଗଲା । ମୁଁ ଯେତେବେଳେ ଏହି ଗିରଫ୍ କଥାରେ ପୁଲିସ ଅଫିସରଙ୍କୁ ଛଲେଇ ଦି'ପଦ କହିଲି ଏବଂ ତା' ସଙ୍ଗେ ସେମାନଙ୍କୁ ଓଲଟି ଧମକ ଦେଇ କହିଲି "ସନ୍ଧ୍ୟା ପୂର୍ବରୁ ଲୋକଙ୍କୁ ଧାନ ବିକିବାର ବ୍ୟବସ୍ଥା କର, ନହେଲେ ନେଡ଼ିଗୁଡ଼ କହୁଣୀକୁ ବୋହିଯିବ । ଅବସ୍ଥା ଆୟତ୍ତାଧୀନ ହୋଇଯିବ ।" ମୋର କଥା ସବୁରେ ସେମାନେ ଅନେକ କିଛି ଆଶଙ୍କା କଲେ । ଏଣେ ଦେଖିଲେ ଯେ ଲୋକେ ଭୋକିଲା ଓ ଟାଣ ଧରି ରହିଛନ୍ତି ।

ଶେଷରେ ପୁଲିସ ମହାଜନକୁ ଜଣାଇଦେଲେ ଯେ ସେମାନେ ତାଙ୍କୁ ଆଉ ସାହାଯ୍ୟ କରିପାରିବେ ନାହିଁ । ଏଣେ ଲୋକେ ବଳଦସବୁକୁ ହୁରୁଡ଼ାଇ ତଡ଼ି-ଦେଲେଣି । ଓକିଲ ଭଦ୍ରଲୋକେ ମହାଜନପାଖରୁ ଟଙ୍କା ବୁନ୍ଲା ଓ ନୋକଙ୍କ-

ପାଖରୁ ଅପମାନର ବୁନ୍ଦୁଲାବାନ୍ଧି ଘରକୁ ଲେଉଟିଗଲେଣି, ସନ୍ଧ୍ୟା ହେଲାଣି । ମହାଜନ ଅନ୍ୟଗତ ନଦେଖି ଧାନ ବଜା ଆରମ୍ଭ କଲେ । ହଳାରରୁ ଊର୍ଦ୍ଧ ସ୍ତ୍ରୀ-ପୁରୁଷ ଧାନ ନେଇ ସେଦିନ ରାତିରେ ଘରକୁ ଫେରିଲେ । ମୁଁ ଓ ମୋତେ ସାହାଯ୍ୟ କରୁଥିବା ନିରଞ୍ଜନ ମହାନ୍ତି ଖୋର୍ଦ୍ଧା ଫେରିଲୁ । ରାତି ବେଶି ହୋଇଯାଇଥିଲା । ଖାଇବାର କିଛି ବ୍ୟବସ୍ଥା ନାହିଁ । ମାଠିଆରେ ପାଣିଥିଲା । ପାଣି ପିଇ ସେଦିନ ରାତିଟା କଟିଗଲା ।

—*—

# କୁଜଙ୍ଗ ଉପକୂଳରେ ଡଙ୍ଗୀ ଯୁଦ୍ଧ

ବର୍ମାରେ ଇଂରେଜ ସରକାର ପରାସ୍ତ ହୋଇଗଲେ । ବହୁ ଭାରତୀୟ ସୈନ୍ୟ ଆଜାଦହିନ୍ଦ୍ ଫୌଜରେ ଯୋଗଦେଲେ । ସୁବାସବୋଷ ଏହି ଆଜାଦହିନ୍ଦ୍ ଫୌଜ ଗଢ଼ିଥିଲେ । ଆଉ ଅନେକ ଭାରତୀୟ ନାଗରିକ ଓ ସୈନ୍ୟ ବର୍ମାରୁ ଅସାଧ ବାଟ ଦେଇ ଚାଲି ଚାଲି ଭାରତକୁ ପଳାଇ ଆସିଲେ । କଲିକତା ସହର ଉପରେ ଉଡ଼ାଜାହାଜ ଆକ୍ରମଣ ହେଉଥାଏ । ଏହି ସମୟରେ ବ୍ରିଟେନର ୮ଟି ଜାହାଜ ବଙ୍ଗୋପସାଗରରେ ଯାଉଥିଲାବେଳେ ତାକୁ ଜାପାନୀ ଜାହାଜସବୁ ଆକ୍ରମଣ କରିବାକୁ ଗୋଡ଼ାଇଲେ । କୁଜଙ୍ଗ ପାଖେ ଏହି ଜାହାଜ ଗୁଡ଼ିକୁ ଜାପାନୀ ବୁଡ଼ାଜାହାଜ ଓ ନୌଭେଲା ଘେରିଯାଇ ଆତ୍ମସମର୍ପଣ କରିବାକୁ ଆଦେଶ ଦେଲେ । ନିର୍ଦ୍ଦିଷ୍ଟ ସମୟ ପରେ ଜାପାନୀ ଜାହାଜରୁ ଆକ୍ରମଣ ହେଲା ଏବଂ ଗୋଟିଏ ଗୋଟିଏ କରି ଆଠଟି ଜାହାଜକୁ ବୁଡ଼ାଇ ଦେଲେ । ଏଥିରେ ଅଧିକାଂଶ ଦକ୍ଷିଣ ଆଫ୍ରିକୀୟ ସୈନ୍ୟମାନେ ଥିଲେ । ଅନେକେ ମଲେ, ବହୁତ ସୈନ୍ୟ ପହଁରି ପହଁରି ଏଗାର-ମାଇଲ ଆସି କୂଳରେ ଲାଗିଲେ । ରେଭେନ୍ସା କଲେଜ ଆହତ ସୈନ୍ୟମାନଙ୍କର ଡାକ୍ତରଖାନାରେ ପରିଣତ ହେଲା । ବଡ଼ ଡାକ୍ତରଖାନାରେ ଆହତ ସୈନ୍ୟମାନେ ଭର୍ତ୍ତି ହୋଇଗଲେ ।

କୁଜଙ୍ଗ ପାଖ ଆଖ ଗାଁର ଲୋକେ ଦେଖି ଡଙ୍ଗାରେ ବହୁତ ସୈନ୍ୟଙ୍କୁ ଉଦ୍ଧାର କଲେ । ଚା' ଦୋକାନରେ ଯେତେ ଚାହା ଥିଲା ହାଣ୍ଡି ହାଣ୍ଡି କରି ସେମାନଙ୍କୁ ପିଆଇ ଗରମ ବାଲି ସେମାନଙ୍କ ଉପରେ ଘୋଡ଼ାଇ ସେମାନଙ୍କର ସେତା ପଡ଼ିଯାଇଥିବା ଓ କ୍ଳାନ୍ତ ଦେହକୁ ଉଷୁମ କରିବାକୁ ଲାଗିଲେ । ପରେ ଅବଶ୍ୟ ଗାଡ଼ିସବୁ ଧରି କଟକରୁ ଡାକ୍ତରମାନେ ଯାଇ ପ୍ରାଥମିକ ଚିକିତ୍ସା କରିଥିଲେ ।

ଯେଉଁଦିନ ପାକିସ୍ତାନରେ ଏହି କୌଣସି ଘଟିଲା, ସେଦିନ ମୁଁ ଥାଏ ଭୁବନେଶ୍ୱରରେ । ଘନ ଘନ ତୋପଧ୍ୱନି ଶୁଣି ପାକିସ୍ତାନରୁ ଉଠି ରଥଗଡ଼ା ପାଖରେ ଛିଡ଼ା ହୋଇଛୁ । ହଠାତ୍ କଟକଆଡ଼୍ ଗୋଟିଏ ସାଇକ୍ଲଆଗାଡ଼ି ଆସି ମୋ ପାଖରେ ଅଟକ ପାଗ୍‌ଘାପଠାରେ କୌଣସିର ସମ୍ବାଦ ଦେଲେ ଏବଂ ପିପିଲିକୁ ବାଟ ପଗ୍ଭରିଲେ । ଭୁବନେଶ୍ୱରର ୨, ୪ ଜଣ ମୋ ପାଖରେ ଛିଡ଼ା ହୋଇଥିଲେ । ଆମେ ପିପିଲିକୁ ବାଟ ବତାଇ ଦେବାପରେ ସାମରିକ ଅଫିସର ଜଣକ ଆମକୁ ଭୁବନେଶ୍ୱର ଗ୍ରାମ ଭିତରକୁ ଗ୍ଭଲିଯିବାକୁ ପରାମର୍ଶ ଦେଇ ବେଗରେ ସେଠାରୁ ଗ୍ଭଲିଗଲେ ।

ଅଳ୍ପ କେତେଘଣ୍ଟା ଭିତରେ କଟକ ସହର ଜାପାନୀମାନଙ୍କ ହାତରେ ପଡ଼ିଯିବା ନିଶ୍ଚିତ ବୋଲି ଲୋକେ ଧରିନେଲେ ଏବଂ କଟକ ସହର ଖାଲିକରି ଲୋକେ ପିଲାଙ୍କୁ ଆଧାର ମଟର, ଶଗଡ଼ ଯେ ଯାହା ପାଇଲା ସେଥିରେ ଗାଁ ଗଣ୍ଡା ଭିତରକୁ ପଠେଇବାକୁ ଲାଗିଲେ । ତଳା ଲୋକଙ୍କର ଭିଡ଼ରେ ରାସ୍ତା ସବୁ ଜାମ ହୋଇଗଲା । ସରକାରୀ ଅଫିସ ସବୁ ସେଠାରୁ ଅନ୍ୟସ୍ଥାନକୁ ଉଠାଇନବା କାମ ଗ୍ଭଲିଲା । ଗୋଟାଏ ବିଶୃଙ୍ଖଳା ଭିତରେ କାମ ଏସବୁ କାମ ଗ୍ଭଲିଲା । ଅଫିସରମାନଙ୍କ ଭିତରୁ ମଧ୍ୟ ଅନେକେ କାଏ କୁଆଡ଼େ ନଥି ଗ୍ଭଲିଗଲେ । କଟକରୁ ବହୁଲୋକ ଆସି ଭୁବନେଶ୍ୱରରେ ଜମା ହେବାକୁ ଲାଗିଲେ । ଭୁବନେଶ୍ୱରର ଲୋକେ ମଧ୍ୟ ଆତଙ୍କ ମଣିଲେ । କାରଣ ଉଡ଼ାଜାହାଜ ଘାଟି ପାଖରେ, ତା'ଉପରେ ନିଶ୍ଚୟ ଆକ୍ରମଣ ହେବ । ଅଳ୍ପ ସମୟ ଭିତରେ ଭୁବନେଶ୍ୱରର କେତେକ ଜଣ ଶୁଣା ଲୋକଙ୍କୁ ଏକାଠି କରି ସେମାନଙ୍କୁ ଦରକାର ପଡ଼ିଲେ ଚନ୍ଦକା ଜଙ୍ଗଲ ଭିତରକୁ ଶୃଙ୍ଖଳିତ ଭାବେ ଯିବାକୁ ପରାମର୍ଶ ଦେଲି ଏବଂ ମୁଖିଆଭାବରେ କେତେକଙ୍କୁ ଏହାର ଦାୟିତ୍ୱ ଦେଲି ।

ଏହି ସମୟରେ ଭଗବତୀବାବୁ ଗୋଟିଏ ଏକ ଟଣା ବଳଦ ଗାଡ଼ିରେ ପିଲାଙ୍କୁ ଧରି ଗାଁକୁ ଯିବା ବାଟରେ ଭୁବନେଶ୍ୱରରେ ମୋ ସଙ୍ଗେ ଦେଖା ହେଲା । ସେ କଟକ ସହର କିପରି ଜନଶୂନ୍ୟ ହୋଇଗଲାଣି ଏବଂ ଆସନ୍ନ ବିପଦର ସମ୍ମୁଖୀନ ସେ ସବୁର ବିଶଦ ବିବରଣ ଦେଲେ । ମୋତେ ଖୋର୍ଦ୍ଧା ଗ୍ଭଲିଯାଇ ପ୍ରତିରୋଧର ବ୍ୟବସ୍ଥା ଓ ଗରିଲା ଯୁଦ୍ଧ ପାଇଁ ପ୍ରସ୍ତୁତ ରହିବାକୁ ନିର୍ଦ୍ଦେଶ ଦେଲେ ।

ମୁଁ ସାଇକେଲରେ ପ୍ରାୟ ୨ଟା ବେଳେ ଖୋର୍ଦ୍ଧାରେ ଯାଇ ପହଞ୍ଚିଲି । ସେତେବେଳେ ଖୋର୍ଦ୍ଧା ସହରରେ କଟକରୁ ପଳେଇ ଆସୁଥିବା ମଟର, ଘୋଡ଼ାଗାଡ଼ି ଓ ଲୋକଙ୍କର ଗହଳି ହୋଇଗଲାଣି । ସୈନ୍ୟ ଓ ଅସ୍ତ୍ର ସଜ୍ଜିତ ସାଞ୍ଜୁଆ ଗାଡ଼ିସବୁ ଖୁବ୍ ବେଗରେ ଏଣେତେଣେ ଯିବା ଆସିବା କରିବାରେ ଲାଗିଥାଏ ।

କୋର୍ଟରେ ସ୍ମାନ୍ ବୋଲି ଜଣେ ଗୋରା ଏସ୍. ଡ଼ି. ଓ. ଥା'ନ୍ତି । ସେ ମୋତେ ଖୋଜିଥାନ୍ତି । ମୁଁ ପହଞ୍ଚିବା ଖବର ପାଇବା ମାତ୍ରେ ଡକାଇଲେ ଏବଂ ଅବସ୍ଥା ସମ୍ପର୍କରେ ଆମ ଦୁହିଁଙ୍କ ଭିତରେ ଗୁପ୍ତ ଆଲୋଚନା ହେଲା । ତାଙ୍କର ନିରାପତ୍ତା ପାଇଁ ସେ ମୋତେ ଅନୁରୋଧ କଲେ । ମୁଁ ତାଙ୍କୁ ସାହାସ ଧରିବାକୁ ପରାମର୍ଶ ଦେଇ ଫେରିଲି ।

ମୁଁ ଯେତେ ଚଞ୍ଚଳ ପାରେ ଏବଂ ଯେତେ ପ୍ରକାର ଉପାୟ ଥିଲା ସବୁ ବ୍ୟବହାର କରି ପାର୍ଟିର ସାଥୀ ଓ ସମର୍ଥକମାନଙ୍କୁ ଡକାଇଲି । ପ୍ରତିରୋଧ ଓ ଗରିଲାଯୁଦ୍ଧ ପାଇଁ ସବୁ ବ୍ୟବସ୍ଥା ସେମାନଙ୍କ ସଙ୍ଗେ କରି ରାତାରାତି ସେମାନଙ୍କୁ ବିଦାୟ କରିଦେଲି । ଲକ୍ଷ୍ମଣ ପଟ୍ଟନାୟକ, ଗଙ୍ଗାଧର ପାଇକରାୟ, ପଶୁରାମ-ପଦାତିକରାୟ, ଗଙ୍ଗାଧର ମିଶ୍ର, ବାସୁଦେବ ଦୋରା, ରାଜନ ଶ୍ରୀଚନ୍ଦନ, ରାଜକିଶୋର ଭୂଜବଲ, ଦିଗମ୍ବର ହରିଚନ୍ଦନ, ନିମେଇଁ ଚରଣ ବରାଳ, ଚନ୍ଦ୍ରକାର ନିରଞ୍ଜନ ମହାନ୍ତି, ଚନ୍ଦକା ଅନନ୍ତ ତେଙ୍ଗ ପ୍ରଭୃତି ନିଜ ନିଜ ଅଞ୍ଚଳକୁ ଫେରିଯାଇ ପ୍ରସ୍ତୁତ ହେଲେ ।

ଜାପାନ ପାରାଦ୍ୱୀପଠାରେ ଓହ୍ଲାଇଲା ନାହିଁ କିନ୍ତୁ ଜାପାନୀ ଆକ୍ରମଣର ଆଶଙ୍କା ବଢ଼ିବାରେ ଲାଗିଲା ଏବଂ କେତେମାସ ଉଦ୍‌ବେଗଜନକ ଅବସ୍ଥାରେ ଆମର କଟିଲା ।

—*—

## ଦୁଃସଂବାଦ

ଯୁଦ୍ଧବେଳେ ଧାନ, ଚାଉଳ, ଗହମ ସବୁ ଦେଶରୁ ବୋଝ ଚାଲିଗଲା ଯୁଦ୍ଧକ୍ଷେତ୍ରକୁ ସୈନ୍ୟଙ୍କ ପାଇଁ । ଯାହା ବି ରହିଲା ସେତକ ବ୍ରେପାରୀ, କଲାବଜାରୀ ମଣିଷର ଜୀବନକୁ ସଉଦା କରିବା ପାଇଁ ଲୁଚାଇ ରଖିଲେ । ବଙ୍ଗଳା ଓ ଓଡ଼ିଶାରେ ଖାଦ୍ୟାଭାବର ଘୋର ଶଙ୍କଟ ଉପୁଜିଲା । ଲକ୍ଷ ଲକ୍ଷ ଲୋକ ଖାଇବା ବିନା ରାସ୍ତା ଘାଟରେ ମରି ଶୋଇଗଲେ । କଟକଣୀ ଷ୍ଟେସନ, ପୁରୀ ସିଂହ-ଦ୍ୱାରରେ ଶବ ଗଣି ହେଉନଥିଲେ । ସେହି ସମୟରେ ଗ୍ରାମ ଜିଲ୍ଲାର ଅବସ୍ଥା କଥା କହିଲେ ନସରେ । ପାରିକୁଦରେ ଶବ ଉଠାଇବା ପାଇଁ ଲୋକ ରହିଲେ ନାହିଁ । ଯୋଡ଼ାଯୋଡ଼ା ମଶାଣିରେ କୌଣସି ମତେ ଲୋକଙ୍କୁ ପକେଇ ଦେଇ ଆସିଲେ ଭାରତୀୟ କମ୍ୟୁନିଷ୍ଟ ପାର୍ଟିର ମୁଖପତ୍ର Peoples war 'ପିପୁଲ୍‌ସ ୱାର' ରେ

ଏହିସବୁ ମତାନ୍ତରର ଚାପ ଯେତେବେଳେ ପ୍ରକାଶ ପାଇଥିଲା । ଭଗବତୀବାବୁ ଏହି ଅବସ୍ଥା ଦେଖି ବ୍ୟବସ୍ଥା କରିବା ପାଇଁ ପାରଳାକିମେଦି ଓ ଗଞ୍ଜାମ ଜିଲ୍ଲା ଗସ୍ତରେ ଗଲେ । ଅନାହାରରେ ଦିନ ଦିନ ତାଙ୍କର ବଢିଗଲା । ଶେଷରେ ଖୁବ୍ ଦୁର୍ବଳ ହୋଇ ପଡିଲେ ବ୍ରହ୍ମପୁର ରେଳଷ୍ଟେସନରେ ବାସି ବରା ମିଳିଲା । ତାକୁ ଖାଇ କଟକ ଫେରି ଏକପ୍ରକାର ମାରାତ୍ମକ ଝାଡ଼ାରୋଗରେ ଆକ୍ରାନ୍ତ ହେଲେ । ପ୍ରଥମ ଚିକିତ୍ସାରେ ସେ ଭଲ ହୋଇଗଲେ ମନେ ହେଲା । କିନ୍ତୁ ଡାକ୍ତରମାନେ ରୋଗ କ'ଣ ପ୍ରକୃତରେ ଠିକ୍ କରି ପାରିନଥିଲେ । ତେଣୁ ଦୁ' ତିନିଦିନ ପରେ ତାଙ୍କର ଅବସ୍ଥା ସଙ୍କଟଜନକ ହେଲା ଏବଂ ଅକ୍ଟୋବର ତା ୨୩ ରେ ସେ ଇହଲୀଳା ସମ୍ବରଣ କଲେ ।

ଯେଉଁ ବୁଭୁକ୍ଷୁ ଜନତାର ମୁକ୍ତିପାଇଁ କମ୍ୟୁନିଷ୍ଟ ପାର୍ଟି ଗଢ଼ିବାରେ ଲ ଥିଲେ, ଏବଂ ଯାହାର ସେ ଥିଲେ ମୁଖ୍ୟ- ସମ୍ପାଦକ ସେହି ବୁଭୁକ୍ଷୁ ଜନତାକୁ ମୃତ୍ୟୁମୁଖରୁ ବଞ୍ଚାଇବା ପାଇଁ ଉଦ୍ୟମ କରିବାକୁ ଯାଇ ନିଜେ ମୃତ୍ୟୁବରଣ କଲେ ।

କଟଣି ଷ୍ଟେସନଠାରେ ଏହି ଦୁଃସମ୍ବାଦ ପାଇଲି । ଆମ୍ଭମାନଙ୍କ ପକ୍ଷରେ ଏହା ଥିଲା ଏକ ଦାରୁଣ ଆଘାତ ।

ତାଙ୍କର ତିନିକନ୍ୟା ଓ ସ୍ତ୍ରୀଙ୍କୁ ସେ ସମ୍ପୂର୍ଣ୍ଣ ଅସହାୟ ଅବସ୍ଥାରେ ଛାଡ଼ିଗଲେ ।

—*—

# ମୋଡ଼ ବଦଳିଲା

ଷ୍ଟାଲିନ୍‌ଗ୍ରାଡ୍ । ଏହିଠାରେ ଜର୍ମାନ ସୈନ୍ୟଙ୍କୁ ଘେରରେ ପକାଇ ଶତ୍ରୁ ଆସି ଆକ୍ରମଣ କଲେ ଋଷର ଲାଲ ସୈନାବାହିନୀ । ଜର୍ମାନ ସୈନ୍ୟ ଭୟଙ୍କର ବିପର୍ଯ୍ୟୟର ସମ୍ମୁଖୀନ ହେଲେ । ଏହିଠାରୁ ଆରମ୍ଭହେଲା, ଜର୍ମାନ ସୈନ୍ୟଙ୍କର ପରାଜୟ । ପ୍ରତିଦିନ ଜର୍ମାନ ସୈନ୍ୟଙ୍କର ଘନ ଘନ ପରାଜୟର ସମ୍ବାଦ ଆସିବାକୁ ଲାଗିଲା । ଋଷରୁ ଜର୍ମାନସୈନ୍ୟ ସମ୍ପୂର୍ଣ୍ଣ ପରାଜିତ ହେଲାପରେ ପୋଲାଣ୍ଡ, ହଙ୍ଗେରି, ରୋମାନିଆ, ବୁଲ୍‌ଗେରିଆ, ଚେକୋସ୍ଲୋଭେକିଆ ପ୍ରଭୃତିରୁ ମଧ୍ୟ ପରାଜିତ ହୋଇ ହିଟ୍‌ଲର ସୈନ୍ୟ ପଛକୁ ହଟିଗଲେ । ଶେଷରେ ସମସ୍ତ ଇଉରୋପ ଫାସିଷ୍ଟ ସୈନ୍ୟଙ୍କ କବଳରୁ ମୁକ୍ତହେଲା । ବର୍ଲିନର ପତନ ହେଲା । ଋଷ ସୈନ୍ୟ ବର୍ଲିନ ଦଖଲ କଲେ ଜାପାନ ଆତ୍ମ ସମର୍ପଣ କଲା । ଇଟାଲିର ଶାସକ ମୃତ୍ୟୁବରଣ କଲେ । ହଲାଣ୍ଡରେ ଲୋକେ ତାଙ୍କୁ ଘୋଷାଡ଼ି ଘୋଷାଡ଼ି ନେଲେ । ଏହି ବିଜୟ ସମଗ୍ର

ବିଶ୍ୱରେ ଏକ ନୂତନ ପରିସ୍ଥିତି ସୃଷ୍ଟି କଲା । ସାମ୍ୟବାଦୀ ଋଷ ପୃଥିବୀର ଏକ ବୃହତ୍ତ ଶକ୍ତିଭାବରେ ଆବିର୍ଭାବ ହେଲା । ପୂର୍ବ ଇଉରୋପରେ ସାତୋଟି ରାଜ୍ୟରେ ସାମ୍ୟବାଦୀ ରାଷ୍ଟ୍ର ଜନ୍ମଲାଭ କଲା । ପୃଥିବୀରେ ସାମ୍ରାଜ୍ୟବାଦ ଓ ସାମ୍ୟବାଦ ଭିତରେ ସାମ୍ୟବାଦର ଓଜନ ବଢ଼ିଗଲା — ଦୁନିଆରେ ଭାରସାମ୍ୟ ବଦଳିଗଲା ।

ଏହାର ପ୍ରତିକ୍ରିୟା ଭାରତବର୍ଷରେ ଦେଖାଗଲା । ଇଂରେଜ ସରକାର କଂଗ୍ରେସ ଓ କମ୍ୟୁନିଷ୍ଟ ପାର୍ଟିର ବନ୍ଦୀମାନଙ୍କୁ ଖଲାସ କରିବାକୁ ଲାଗିଲେ । କଂଗ୍ରେସର ନେତାମାନେ ଖଲାସ ହେଲେ ।

## ମଧ୍ୟମଣି

ଜେଲରୁ ମୁକ୍ତ ହେଲାପରେ ଜହରଲାଲ ବଲ୍ଲଭଭାଇ ପଟେଲଙ୍କ ଠାରୁ ଆରମ୍ଭ କରି ଗାଁ ଗଣ୍ଡାର କଂଗ୍ରେସ କର୍ମୀମାନଙ୍କର ମୁଣ୍ଡ ଗରମ ହୋଇଗଲା । ସେମାନେ କମ୍ୟୁନିଷ୍ଟ ପାର୍ଟି ଓ ତା'ର କର୍ମୀମାନଙ୍କ ଉପରେ ଆକ୍ରମଣ ଆରମ୍ଭ କରିଦେଲେ । ଏଭଳି ମିଛନାହିଁ ଯାହା ଆମକୁ ବଦ୍‌ନାମ ଓ ଲୋକ ଅପ୍ରିୟ କରିବା ପାଇଁ ସେମାନେ ପ୍ରଚାର ନକଲେ । ଅତି ନୀଚ ଧରଣରେ ପ୍ରଚାର କରିବାକୁ ମଧ୍ୟ ସେମାନେ କୁଣ୍ଠା ବୋଧ କଲେ ନାହିଁ । 'ମାଇପିଙ୍କି କୋଠ କରିଦେବେ, ଗୋରୁ, ମାଂସ ସମସ୍ତଙ୍କୁ ଖୁଆଇବେ ଗୋଟାଏ ଡଙ୍ଗାରେ ଭାତ ଡାଲି ସବୁ ଢାଳିଦେଇ ସମସ୍ତଙ୍କୁ ଏକାଠି ସେଇଥିରୁ ଖୁଆଇବେ ସବୁ ଜମିବାଡ଼ି, ଗାଈ, ବଳଦ ଏମାନେ ନେଇଯିବେ କୋଠ କରିଦେବେ ବୁଢ଼ାବୁଢ଼ୀଙ୍କୁ ମାରିଦେବେ ଇତ୍ୟାଦି ଇତ୍ୟାଦି ପ୍ରଚାର ଆମ ବିରୁଦ୍ଧରେ ଓ ଋଷ୍ ବିରୁଦ୍ଧରେ ଚଳେଇଲେ । ସେମାନେ ଅନେକ ଜାର ସୁନାପୁଅ— ବରପୁତ୍ର ସାଜିଗଲେ । କମ୍ୟୁନିଷ୍ଟମାନଙ୍କୁ ଋଷିଆର ଦଲାଲ, ଋଷିଆରୁ ଏମାନେ ଟଙ୍କା ଖାଉଛନ୍ତି ବୋଲି ପ୍ରଚାର କଲେ । ଏ ପ୍ରଚାର ଏତେଦୂର ଗଲା ଯେ ଶେଷରେ ଗାନ୍ଧିଜୀଙ୍କ ଭଳି ନେତୃସ୍ଥାନୀୟ ବ୍ୟକ୍ତି ଏହାର ଶୀକାର ହେଲେ ଏବଂ ଏ ବିଷୟରେ କମ୍ୟୁନିଷ୍ଟ ପାର୍ଟିର ସମ୍ପାଦକ ପି. ସି. ଯୋଶୀଙ୍କ ସହିତ ତାଙ୍କର ପତ୍ର ବିନିମୟ ହେଲା । ଗାନ୍ଧିଜୀ ସରୋଜିନୀ ନାଇଡୁ ଏବଂ ବୁଲାଭାଇ ଦେଶାଇଙ୍କୁ ଏହାର ତଦନ୍ତପାଇଁ ନିଯୁକ୍ତ କଲେ । ଏମାନେ ତଦନ୍ତ କଲେ । ତଦନ୍ତରୁ ଜଣାଗଲା ଯେ ଏସବୁ ପୁରାପୁରି ମିଛ । କିନ୍ତୁ ଗାନ୍ଧିଜୀଙ୍କ ଭଳି ଲୋକ ଏକଥା ସାଧାରଣରେ ନଜଣାଇ ନୀରବ ରହିଲେ ।

କଂଗ୍ରେସର ଲୋକେ ଗୁରିଆଡ଼େ ଗୁଣ୍ଡାମାନଙ୍କୁ ଓ କର୍ମୀମାନଙ୍କୁ ଧରି କମ୍ୟୁନିଷ୍ଟ ପାର୍ଟି ଅଫିସ ଓ କମ୍ୟୁନିଷ୍ଟମାନଙ୍କ ଉପରେ ଚଢ଼ାଉ କଲେ । ବିହାର, ବମ୍ବେ, କଲିକତା, ମାନ୍ଦ୍ରାଜ ଅନ୍ଧ୍ର ପ୍ରଭୃତି ଅଞ୍ଚଳରେ ଏହା ଭୟଙ୍କର ଆକାର

ଧାରଣ ହେଲା । ଗାନ୍ଧି, ଜବାହରଲାଲ, ରଜାଜୀ ଭଳି ପଦସ୍ଥ ସମସ୍ତଙ୍କୁ ଏକଥା ଲେଖାଗଲା। ଏବଂ ଏପରି ଆକ୍ରମଣରୁ ନିବର୍ତ୍ତାଇବା ପାଇଁ କଂଗ୍ରେସ କର୍ମୀମାନଙ୍କୁ ନିର୍ଦ୍ଦେଶ ଦେବାପାଇଁ ଅନୁରୋଧ କରାଗଲା । କିନ୍ତୁ ବମ୍ବେରୁ ଉତ୍ତର ମିଳିଲା । "ଯେହେତୁ କମ୍ୟୁନିଷ୍ଟମାନେ ଦେଶଦ୍ରୋହୀ, କେଣୁ ଲୋକେ ସେମାନଙ୍କୁ ଆକ୍ରମଣ କରୁଛନ୍ତି। ସରକାର ତାଙ୍କ କାମ ବନ୍ଦ କଲେ ଏହସବୁ ଆକ୍ରମଣ ଆପଣାମନକୁ ବନ୍ଦ ହୋଇଯିବ।"

ଶେଷୁ କମ୍ୟୁନିଷ୍ଟ ପାର୍ଟି ତରଫରୁ ପରାମର୍ଶରେ ପାର୍ଟି ସଭ୍ୟମାନଙ୍କୁ ନିର୍ଦ୍ଦେଶ ଦିଆଗଲା । "ଗୋଟିଏ ମୁଣ୍ଡ ଆମକୁ ମାରିଲେ ଦଶଟି ମୁଣ୍ଡ ଫେରାଇ ଦିଅ" ।

ଏହି ସମୟରେ ଘଟିଥିବା ଗୋଟିଏ ଘଟଣା । ଝୋଡ଼ ପୋଷ୍ଟ ଅଫିସ ପଛପଟେ କୁନ୍ଦନଗ୍ରାମଙ୍କ ଘରେ ଆମେ ଅଫିସ କରିଥାଉ । ନବକୃଷ୍ଣ ଚୌଧୁରୀ, ମାଳତୀ ଚୌଧୁରୀ ତା' ପୂର୍ବଦିନ କଟକରୁ ଚାଲି ଯାଇଥାଇ ଲୋକ, ଆଳୁଅ, ବାଜା ପ୍ରଭୃତି ଆଣି ବହୁ କଷ୍ଟରେ ଝୋଡ଼ରେ ସାଧାରଣ ସଭା କରି ଆମ ବିରୁଦ୍ଧରେ ବହୁ କଥା କହିଥାନ୍ତି, ଜଘନ୍ୟ ଭାଷାରେ ଗାଳିଗୁଲଜ କରିଥାଆନ୍ତି । ତଥାପି ନିଜର ଅଭିଜ୍ଞତାରୁ ସ୍ଥାନୀୟ ଲୋକେ ଆମ ବିରୁଦ୍ଧରେ ଯାଇ ନଥାନ୍ତି । କେବଳ ରଘୁଦାସ ମୁକ୍ତିଆର ଓ ତାଙ୍କର ପଟ୍ଟନାୟକ ମେହେରଙ୍କ ପ୍ରଭୃତିଙ୍କ ଭଳି ୪, ୫, ଜଣ ତାଙ୍କ ପଛରେ ଥାଆନ୍ତି । କୁହୁଡ଼ିର ରାଧାମୋହନ ପାଣି କଂଗ୍ରେସ ବାଲା ସେ ଦିନ ଲୋକଙ୍କୁ ଧରି କମ୍ୟୁନିଷ୍ଟ ପାର୍ଟି ବିରୁଦ୍ଧରେ ସ୍ଲୋଗେନ୍ ଦେଇ 'ମାର' 'ମାର' ପରି ଚିତ୍କାର କରି ଆସି ଆମ କମ୍ୟୁନିଷ୍ଟ ପାର୍ଟି ଅଫିସ ଦୁଆର ମୁହଁରେ ପହଞ୍ଚିଲେ ଏବଂ ସେହିପରି ପାର୍ଟି ଭୁଣ୍ଡ କରିବାକୁ ଲାଗିଲେ । ଏସବୁ ପାର୍ଟି ଭୁଣ୍ଡ ଓ କୁତ୍ସିତ ଭାଷାରେ ଗାଳିଗୁଲଜ ଶୁଣି ଶୁଣି ମୋର ଆଉ ଧୈର୍ଯ୍ୟ ରହିଲା ନାହିଁ ଦୁଆର ଖୋଲି ତାଙ୍କର ସାମନା କରିବାକୁ ବାହାରିଲି । ତାଙ୍କୁ କହିଲି "ସ୍ୱରାଜର ଉମର ହୋଇଗଲାଣି । ମୁଁ ମୁଣ୍ଡ ଦେଖାଉଛି-ମାର ତେବେ ସ୍ୱରାଜ ଉମର ନା ରାଧାମୋହନ ପାଣିର ହୋଇଛି ମନକୁ ଟିକିଏ ହେଜିଲ ।" ରାଧାମୋହନ ପାଣିଙ୍କୁ ହସି ହସି କହିଲି" ଏ ଟୋକାଏ ମୋ ସଙ୍ଗେ କ'ଣ ଲଢ଼ିବେ । ଆସ ଉମର ମୋର ଲଢ଼ା ଲଢ଼ି ହେବା । ଦାଣ୍ଡରେ କାହିଁକି ଠିଆ ହୋଇଛ ? ଭିତରକୁ ଆସ ବୋଲି ସମସ୍ତଙ୍କୁ ଡାକିଲି । କିନ୍ତୁ ଯେଉଁମାନେ ଆସିଥିଲେ ଗୋଟି ଗୋଟି ହୋଇ ଖସି ଗୁଲିଗଲେ ।

ସେତେବେଳେ ନେତାଠାରୁ କର୍ମୀଯାଏ କଂଗ୍ରେସ ଲୋକେ ଆଉ ଚରିତ୍ର ସ୍ପର୍ଦ୍ଧା ମାନିଲେ ନାହିଁ । ସେମାନେ ଭାବିଥିଲେ କମ୍ୟୁନିଷ୍ଟମାନଙ୍କୁ ଦଳିଚକଟି ନିଶ୍ଚିହ୍ନ କରିଦେବେ । କିନ୍ତୁ ଇତିହାସ ତା'ର ଅନ୍ୟରୂପ ଦେବାରେ ଲଗିଛି ।

—※—

# ପୁରୀଜିଲ୍ଲା ବୋର୍ଡ ନିର୍ବାଚନ

୧୯୪୫ରେ ପୁରୀଜିଲ୍ଲା ବୋର୍ଡ଼ ନିର୍ବାଚନ ହେବାର ସ୍ଥିର ହେଲା । କମ୍ୟୁନିଷ୍ଟ ପାର୍ଟିର ସଭ୍ୟ ଓ ସମର୍ଥକମାନେ ସେ ପର୍ଯ୍ୟନ୍ତ କଂଗ୍ରେସ ସଂଗଠନରେ ସଭ୍ୟ ଭାବରେ ଥା'ନ୍ତି । କିନ୍ତୁ କମ୍ୟୁନିଷ୍ଟ ପାର୍ଟିର ସଭ୍ୟମାନଙ୍କୁ ବାଦଦେଇ ଜିଲ୍ଲାବୋର୍ଡରେ ପ୍ରାର୍ଥୀ ଛିଡ଼ା କରାଇବା ପାଇଁ କଂଗ୍ରେସ ତରଫରୁ ଉଦ୍ୟମ ହେଲା । ପୁରୀରେ ଲୋକନାଥ ମିଶ୍ର (ପଙ୍କ ମିଶ୍ର)ଙ୍କ ଘରେ ଆମେ ସମସ୍ତେ ଏକାଠି ହୋଇ ଆଲୋଚନା ପରେ ଗୋଟିଏ ମିଳାମିଶା ହେଲା ଏବଂ ପ୍ରାର୍ଥୀ ସ୍ଥିର କରାଗଲା । କିନ୍ତୁ କାର୍ଯ୍ୟରେ ଦେଖାଗଲା ଯେ, ଏହି ମିଳାମିଶାକୁ ଫିଙ୍ଗିଦେଇ କମ୍ୟୁନିଷ୍ଟ ପାର୍ଟିର ସଭ୍ୟମାନଙ୍କ ବିରୁଦ୍ଧରେ କଂଗ୍ରେସ ଟିକେଟରେ ଅନ୍ୟ ପ୍ରାର୍ଥୀମାନେ ଛିଡ଼ା ହେଲେ । ଏହାକୁ ବିଶ୍ୱାସଘାତକତା ଛଡା ଆଉ କ'ଣ କୁହାଯାଇ ପାରେ ? ଯେଉଁମାନେ ସ୍ୱାଧୀନତା ଆନ୍ଦୋଳନ ବେଳେ କଂଗ୍ରେସ ବିରୁଦ୍ଧରେ ଇଂରେଜ ସରକାରକୁ ସାହାଯ୍ୟ କରୁଥିଲେ ସେଭଳି ଲୋକଙ୍କୁ କଂଗ୍ରେସ ପ୍ରାର୍ଥୀଭାବରେ ଛିଡ଼ା କରିବାକୁ କୁଣ୍ଠାବୋଧ କଲା ନାହିଁ ଏବଂ ଯେତେ ଦେଶଦ୍ରୋହୀ, ସୁବିଧାବାଦୀ ଲୋକଥିଲେ ସେ ସମସ୍ତଙ୍କୁ କଂଗ୍ରେସ କୋଳେଇ ନେଲା । ବାଦ ପଡ଼ିଲୁ ଆମ୍ଭେମାନେ ।

ଏହି ନିର୍ବାଚନ ଗାନ୍ଧୀଙ୍କ ନାମରେ ଚାଲିଲା । କମ୍ୟୁନିଷ୍ଟ ପାର୍ଟି କାକଟପୁର ଅଞ୍ଚଳକୁ ଛାଡ଼ିଦେଲେ ସବୁ ଜାଗାରୁ ହାରିଗଲା । କାକଟପୁରର ପ୍ରାର୍ଥୀ ଦୁଇଜଣ ନିର୍ଦ୍ୱନ୍ଦ୍ୱରେ ନିର୍ବାଚିତ ହେଲେ ।

—※—

# ହଳଦିଆ ଜମିଦାର ବିରୁଦ୍ଧରେ ଆନ୍ଦୋଳନ

ଖୋର୍ଦ୍ଧାରେ ହଳଦିଆ ଖଣ୍ଡିଏ ଗାଁ । ସେଠାରେ ଭଞ୍ଜ ଜମିଦାରଙ୍କର ରାଜୁତି । ୫ ଖଣ୍ଡି ଗାଁର ସେ ଜମିଦାର । ହଳଦିଆ, କୁଆପୁଟ, ବ୍ରହ୍ମଣବେଢଣି ହାଟସାହି ଓ ବସନ୍ତ । ଏହି ଅଞ୍ଚଳକୁ ବହୁତ ଥରଯାଏ । ଜମିଦାରୀ ଅତ୍ୟାଚାର କଥା ଶୁଣେ । ସେମାନଙ୍କୁ କୃଷକ ସଭା କଥା କହିଲି । କୁଆପୁଟର ଗଙ୍ଗାଧର ମିଶ୍ର, ହଳଦିଆର ଗଙ୍ଗାଧର ଭଞ୍ଜ, ବ୍ରାହ୍ମଣବେଢଣିର ଜଗନ୍ନାଥ ଲେଙ୍କା ପ୍ରଭୃତ ଆଗୁଆ ହୋଇ ବାହାରି ସେ ଅଞ୍ଚଳରେ ଗୋଟିଏ କୃଷକ ସଭା ଗଠନ କଲେ । ବହୁତ ସଭା

ସମିତି ହେଲା ଏବଂ ଜମିଦାରୀ ଅତ୍ୟାଚାର ବିରୁଦ୍ଧରେ ଲଢ଼େଇ ଚାଲିଲା । ଆନ୍ଦୋଳନରେ ଶବରମାନେ ମଧ୍ୟ ଯୋଗଦେଲେ । ଆନ୍ଦୋଳନ ଫଳରେ ଚାଷୀ-ମାନେ ଜମିରେ ନିଜର ଦଖଲ ବନ୍ଦୋବସ୍ତ ବେଲେ କରାଇ ନେଲେ ଏବଂ ଜମିଦାରୀ ଅତ୍ୟାଚାରରୁ ରକ୍ଷା ପାଇଲେ । ଏହି ଆନ୍ଦୋଳନ ଚାଲିଥିଲା ବେଳେ ମୁଁ ପ୍ରାଣନାଥ ବାବୁ ପ୍ରଭୃତି ଯୁଦ୍ଧ ବେଳେ ବନ୍ଦୀ ହେଲୁ । ଏହି ସୁଯୋଗରେ ଜମିଦାରଙ୍କୁ ମାଡ଼ ମାରିଥିବା ଅଭିଯୋଗରେ ଗଙ୍ଗାଧର ଭଞ୍ଜ ପ୍ରଭୃତିଙ୍କୁ ସଜା ହେଲା । କିନ୍ତୁ ଏହା ସତ୍ତ୍ୱେ ଆନ୍ଦୋଳନର ସୁଫଳ ଲୋକେ ଭୋଗକଲେ ।

# ୧୯୪୬ ସାଧାରଣ ନିର୍ବାଚନ

ଶେଷ ହୋଇଯାଇଥାଏ । କିନ୍ତୁ ସ୍ୱାଧୀନତା ମିଳି ନଥାଏ । କଂଗ୍ରେସ ମୁସଲିମ ଲିଗ ଓ ଇଂରେଜ ସରକାର ଭିତରେ ବୁଝାମଣା ହେବା ପାଇଁ ଜୋର ସୋରରେ କଥାବାର୍ତ୍ତା ଚାଲିଥାଏ । ଏହି ସମୟରେ ୧୯୩୫ ଶାସନ ଖସଡ଼ା ଅନୁସାରେ ଓଡ଼ିଶା ବିଧାନ ସଭା ପାଇଁ ନିର୍ବାଚନ ହେଲା । ୬୦ଟି କେନ୍ଦ୍ର ମଧ୍ୟରୁ କମ୍ୟୁନିଷ୍ଟ ପାର୍ଟି କେବଳ ଶ୍ରମିକ ସ୍ଥାନ ପାଇଁ ଜଣେ ପ୍ରାର୍ଥୀ ଠିକ୍ କଲା । ବୈଦ୍ୟନାଥ ରଥ ଏହି ଶ୍ରମିକ ନିର୍ବାଚନ ମଣ୍ଡଳୀରୁ ପ୍ରାର୍ଥୀ ହେଲେ । ଶ୍ରମିକ ନିର୍ବାଚନ ମଣ୍ଡଳୀ କହିଲେ ସାରା ଓଡ଼ିଶାଟା । ମୁଁ, ସାଧୁବାବୁ, ପ୍ରାଣନାଥ ବାବୁ, ଧର୍ମ୍ମ ନିରଞ୍ଜନ, ଜଗଦେବ, ଅନନ୍ତ ଡେଙ୍ଗ, ଗଙ୍ଗାଧର ମିଶ୍ର ପ୍ରଭୃତି କେତେଜଣ ରେଳୱେ ଶ୍ରମିକ ଅଞ୍ଚଳର ଦାୟିତ୍ୱରେ ରହିଲୁ । ଖୁର୍ଦ୍ଦା ରୋଡଠାରେ ଆମେ କ୍ୟାମ୍ପ କଲୁ । ଗାଁ ଗଣ୍ଡାରୁ ଚାଉଳ ପଇସା ଚାନ୍ଦା କରି ଆଣୁ ଏବଂ ରେଲୱେ କଲୋନି ଓ ଶ୍ରମିକ ବସ୍ତିମାନଙ୍କୁ ଯାଇ ବୁଝାଉ । ବି. ଏନ. ଆର. ଶ୍ରମିକମାନେ ଦକ୍ଷିଣ ପନ୍ଥୀ ନେତାମାନଙ୍କ ଦ୍ୱାରା ପରିଚାଳିତ । ବିଶେଷ କରି କଂଗ୍ରେସ ପ୍ରଭାବରେ ପ୍ରଭାବିତ ଥିବାରୁ କମ୍ୟୁନିଷ୍ଟ ପକ୍ଷ ପାତି ନଥିଲେ । ତେଣୁ ଆମକୁ ପ୍ରବଳ ଉଦ୍ୟମ ଓ ଅକ୍ଲାନ୍ତ ପରିଶ୍ରମ କରିବାକୁ ପଡୁଥାଏ । ଏହି ଉଦ୍ୟମ ଓ ପରିଶ୍ରମ ଫଳରେ ଆମେ ଅନେକଗୁଡ଼ା ଭୋଟ ଏଠାରୁ ପାଇବାକୁ ସକ୍ଷମ ହୋଇଥିଲୁ । ଏହି ନିର୍ବାଚନରେ ବୈଦ୍ୟନାଥ ରଥ ଜୟଯୁକ୍ତ ହୋଇଥିଲେ । ୬୦ ଜଣିଆ ବିଧାନ ସଭାରେ କମ୍ୟୁନିଷ୍ଟ ପାର୍ଟିର ଜଣେ ମାତ୍ର ପ୍ରତିନିଧି ଥିଲେ ସେ । କିନ୍ତୁ ସେ ଏକା ହେଲେ ମଧ୍ୟ ଶ୍ରମିକ, କୃଷକ ଓ ସମସ୍ତ ଖଟିଖିଆ ଶ୍ରେଣୀ ସ୍ୱାର୍ଥରକ୍ଷା ପାଇଁ ବିଧାନ ସଭାରେ ଲଢ଼ିଥିଲେ ।

ନିର୍ବାଚନପରେ ହରେକୃଷ୍ଣ ମହତାବ, ନବକୃଷ୍ଣ ଚୌଧୁରୀ, ନିତ୍ୟାନନ୍ଦ କାନୁନଗୋ, ଲିଙ୍ଗରାଜ ମିଶ୍ର, ରାଧାକୃଷ୍ଣ ବିଶ୍ୱାସରାୟଙ୍କୁ ନେଇ ମନ୍ତ୍ରୀମଣ୍ଡଳ ଗଠନ କରାଗଲା । ହରେକୃଷ୍ଣ ମହତାବ ମୁଖ୍ୟମନ୍ତ୍ରୀ ହେଲେ ।

—*—

# କାକୁଡ଼ିଆ ବନ୍ଧ

କୁଦ୍‌ଆଁଶରେ ଥାଇ ନିର୍ବାଚନ କାମ କରୁଥାଉ । ଏହି ସମୟରେ ସାଧୁବାବୁ କାକୁଡ଼ିଆ କଥା ଆମକୁ କହିଲେ । ବଢ଼ିବେଳେ କାକୁଡ଼ିଆ ମୌଜା ଓ ଆଖପାଖ ଗାଁ ପ୍ରତିବର୍ଷ ଧୋଇଯାଏ । ଲୋକେ ଫସଲ ପାଆନ୍ତି ନାହିଁ । କାକୁଡ଼ିଆ-ଗାଁର ପଛପଟେ ଆନିକଟ ଧରଣର ଗୋଟାଏ ବନ୍ଧ ପକାଇଲେ, ସେ ଅଞ୍ଚଳର ଲୋକେ ବଢ଼ିରୁ ରକ୍ଷା ପାଇବା ସଙ୍ଗେ ସଙ୍ଗେ ଫସଲ ମଧ୍ୟ ପାଆନ୍ତେ । ନିର୍ବାଚନ ପରେ ଆମେ ଲୋକଙ୍କ ପାଖରୁ ଶ୍ରମଦାନ ଆଦାୟ କରି ବନ୍ଧ ପକାଇବାକୁ ସ୍ଥିର କରି କାମ ଆରମ୍ଭ କଲୁ । ପ୍ରାଣନାଥ ବାବୁ ଏହାର ମୁଖ୍ୟ ଦାୟିତ୍ୱ ନେଲେ । ଜନସାଧାରଣ ଏହି କାମରେ ଆଗ୍ରହର ସହିତ ଅଗ୍ରସର ହେଲେ । କିନ୍ତୁ କଂଗ୍ରେସ ସରକାର ଏହା କରାଇ ନ ଦେବାକୁ ଯେତେ ପ୍ରକାର ଅସୁବିଧା ସୃଷ୍ଟି କରିବାକୁ ଲାଗିଲା । ସରକାରୀ ଅନୁମତି ଦେଉନଥାନ୍ତି ଅଥଚ ସରକାରୀ ଅନୁମତି ବିନା ବନ୍ଧ ପକାଇବା ଦଣ୍ଡନୀୟ ଅପରାଧ ବୋଲି କହୁଥାନ୍ତି । ସରକାରଙ୍କର ପ୍ରତିବନ୍ଧକ ସତ୍ତ୍ୱେ ଲୋକେ ଆନିକଟ ଧରଣର ପଥରବନ୍ଧ ପକାଇଦେଲେ । ଏହି ବନ୍ଧ ଫଳରେ ଲୋକେ ବାଲିଚର ହୋଇ ପଡ଼ିଥିବା ଶହ ଶହ ଏକର ଜମିକୁ ଉଠିଆ କଲେ, ଏବଂ ପ୍ରଚୁର ଫସଲ ପାଇଲେ ।

—*—

# ଆକ୍ରମଣର ସୂତ୍ରପାତ

ଖୋର୍ଦ୍ଧା କେଉଟସାହିରେ କମ୍ୟୁନିଷ୍ଟ ପାର୍ଟିର ଅଫିସ ଥାଏ । ସେତେବେଳେ ଜବାହରଲାଲ ପ୍ରଧାନମନ୍ତ୍ରୀ ଓ ବଲ୍ଲଭଭାଇ ପଟେଲ ଉପପ୍ରଧାନ ମନ୍ତ୍ରୀ 'ଅପରେସନ ଏସିଲମ୍' କୋଡ଼ନାରେ କମ୍ୟୁନିଷ୍ଟପାର୍ଟି ଅଫିସ ଘର ଛରଜବର୍ଷ ସବୁ ଖାନତଲାସ କରିବାକୁ ଆଦେଶ ହେଲା । ୧୯୪୮ ଜାନୁଆରୀ ତା ୧୪ରିଖ ମକରସଂକ୍ରାନ୍ତିକୁ ମୁଁ ଅଫିସରେ ରହିଥାଏ । ହଠାତ୍ ପୁଲିସ ଆସି ଅଫିସ ଘେରାଉକରି ସମସ୍ତ କାଗଜପତ୍ର ଓ ଘରର ଅନ୍ଧସନ୍ଧି ଟିକିନିଖି ଖାନତଲାସ କଲେ । କିନ୍ତୁ କିଛି ଆପତ୍ତିଜନକ କାଗଜପତ୍ର ପାଇଲେ ନାହିଁ । ପରେ ବୁଝିଲି ଯେ ପାର୍ଟିର ମୁଖପତ୍ର ନୂଆଯୁଗର ଗୋଟିଏ ସଂଖ୍ୟା ସରକାର ବାଜେୟାପ୍ତ କରିଛନ୍ତି ଏବଂ ସେହି ସଂଖ୍ୟାର କାଗଜଟିକୁ ସେମାନେ ଖୋଜୁଥିଲେ । ସେ ସଂଖ୍ୟାରେ କ'ଣ ବାହାରିଥିଲା ? ଗାନ୍ଧିଜୀଙ୍କୁ

ସଂଯୋଜନା ପାଇଁ ହେଉଥିବା ଷଡ଼ଯନ୍ତ୍ରର କେତେକ ଖବର ସେଥିରେ ପ୍ରକାଶ କରାଯାଇ ଜଣାଇଦିଆ ହୋଇଥିଲା ଏବଂ ଷଡ଼ଯନ୍ତ୍ରକୁ ପଣ୍ଡ କରିଦେବା ପାଇଁ ଆଗରୁ ବିହିତ ବ୍ୟବସ୍ଥା କରିବା ପାଇଁ ଭାରତ ସରକାରଙ୍କୁ ଏଥିରେ ଅନୁରୋଧ କରାହୋଇଥିଲା । ଷଡ଼ଯନ୍ତ୍ରକାରୀଙ୍କ ବିରୁଦ୍ଧରେ ବିହିତ ବ୍ୟବସ୍ଥା କରିବା ପରିବର୍ତ୍ତେ ଯେଉଁ କମ୍ୟୁନିଷ୍ଟମାନେ ଏହାକୁ ପଦାରେ ପକାଇ ଦେଇଥିଲେ ବଲ୍ଲଭଭାଇ ପଟେଲ ଭାରତର ଘରୋଇମନ୍ତ୍ରୀ ଭାବରେ ସେହିମାନଙ୍କ ବିରୁଦ୍ଧରେ ବିହିତ ବ୍ୟବସ୍ଥା ନେଇଲେ । ପରିଣାମରେ ଦିନ ୧୨ଟା ପରେ ଷଡ଼ଯନ୍ତ୍ରକାରୀମାନେ ଗାନ୍ଧିଙ୍କୁ ହତ୍ୟା କରିବାରେ ସଫଳ ହେଲେ ।

XOX

# ପ୍ରଥମ ସ୍ୱାଧୀନତା ଦିବସ

୧୯୪୭ ଅଗଷ୍ଟ ତା ୧୫ ରେ ଭାରତ ବର୍ଷର ପ୍ରଥମ ସ୍ୱାଧୀନତା ଦିବସ ପାଳିତ ହେବ । ସେହିଦିନଠାରୁ ଭାରତବର୍ଷ ସ୍ୱାଧୀନ ହେବ । ଯେଉଁମାନେ ଏ ଦେଶର ସ୍ୱାଧୀନତା ପାଇଁ ସବୁ କିଛି ବିସର୍ଜନ ଦେଇ ବହୁ ଦୁଃଖ କଷ୍ଟ ସହି ବର୍ଷ ବର୍ଷ ଧରି ସଂଗ୍ରାମ କରିଥିଲେ, ସେମାନଙ୍କ ମନରେ ଯେ କି ଆନନ୍ଦ ହେଉନଥିବ, ତାହା ପ୍ରକାଶ କରିବା ସମ୍ଭବ ନୁହେଁ । ମୁଁ ତ ବିଭୋର ହୋଇ ପଡ଼ିଥିଲି । ଖୋର୍ଦ୍ଧାରେ ଏହି ଦିବସ ପାଳନର ଆୟୋଜନ ପାଇଁ ଖୋର୍ଦ୍ଧା ଏସ୍. ଡି. ଓ ଙ୍କ ନେତୃତ୍ୱରେ ବ୍ୟବସ୍ଥା ଆରମ୍ଭ ହେଲା । କିନ୍ତୁ ମୋତେ ବା ପ୍ରାଣନାଥ ବାବୁଙ୍କୁ ଏହି ବୈଠକକୁ ନିମନ୍ତ୍ରଣ କରାଗଲା ନାହିଁ । ବୈଠକ ବସିଲା । ଇଂରେଜ ସରକାରଙ୍କ ଅମଳରେ ଯେଉଁମାନେ ବିଶିଷ୍ଟ ବ୍ୟକ୍ତିବୋଲି ପରିଚିତ ସେହି ବ୍ୟକ୍ତିମାନଙ୍କୁ ନିମନ୍ତ୍ରଣ କରାହେଲା । ଅବଶ୍ୟ ଲୁଚିଛପି କଂଗ୍ରେସ ଆନ୍ଦୋଳନକୁ ସାହାଯ୍ୟ କରୁଥିବା ୨ । ୪ ଜଣ ବ୍ୟକ୍ତିଙ୍କୁ ଡକରା ହୋଇଥିଲା । ବୈଠକରେ ମୋତେ ବା ପ୍ରାଣନାଥ ବାବୁଙ୍କୁ ନଦେଖି ଅନେକଙ୍କ ମନ ଫିକା ପଡ଼ିଗଲା । ଜଣେ ବୃଦ୍ଧ କାନ୍ଦି କାନ୍ଦି ହୋଇ ଉଠି କହିଲେ "ଖୋର୍ଦ୍ଧାରେ ଯେଉଁମାନେ ପ୍ରାଣପାତ କରି ସ୍ୱାଧୀନତା ପାଇଁ ସଂଗ୍ରାମ କରିଗଲେ ଆମରି ଆଖି ଆଗରେ ସେମାନଙ୍କ ଭିତରୁ କାହିଁ କେହିତ ଏଠାରେ ନାହାନ୍ତି । ସେମାନଙ୍କ ବିନା ସ୍ୱାଧୀନତା ଉତ୍ସବ ପାଳନ କରାଯାଇ ପାରିବ ନାହିଁ । ସେମାନଙ୍କୁ ଡକାହେଲେ ଏ ବୈଠକ ଆରମ୍ଭ ହେବ ।" ଶେଷରେ ମୋତେ ଡକାଇ ଅଣାହେଲା । ବନମାଳୀ ପଟ୍ଟନାୟକ ପତାକା ଉତ୍ତୋଳନ କରିବେ ବୋଲି ସରକାରୀ ନିର୍ଦ୍ଦେଶ । ବୈଠକର ଦାବୀ ଯେ ମୁଁ ପତାକା ଉତ୍ତୋଳନ କରିବି ।

ଏମ୍ ଡ଼ି. ଓ. ବଡ଼ ଅଶ୍ରୁଧାରରେ ପଡ଼ିଲେ । ଏକ ଅଚଳ ଅବସ୍ଥା ସୃଷ୍ଟି-ହେଲା । ସେ ପର୍ଯ୍ୟନ୍ତ ମୁଁ ନୀରବଶ୍ରୋତା ହୋଇ ସବୁ ଶୁଣୁଥିଲି । ଅଚଳ ଅବସ୍ଥା ସୃଷ୍ଟି ହୋଇ ଥିବାର ଦେଖି ପ୍ରସ୍ତାବଦେଲି ଯେ ମୁଁ ଉତ୍ସବ ଉଦ୍‌ଘାଟନ କରି ବନମାଳି ପଟ୍ଟନାୟକଙ୍କୁ ପତାକାଉତ୍ତୋଳନ କରିବାକୁ ଅନୁରୋଧ କରିବି । ଏଥିରେ ସମସ୍ତେ ଆନନ୍ଦରେ ରାଜିହେଲେ ଏବଂ ନିଶ୍ଚିତ ଯୋଜନା ପ୍ରସ୍ତୁତ ହେଲା । ପ୍ରାଣନାଥ-ପଟ୍ଟନାୟକ କଟକ ଜେଲରେ ରହିଥିବାରୁ ସେ ଆସିଲେ ନାହିଁ ।

ତା ୧୪ ରାତି ରାତି ୧୨ଟା ପୂର୍ବରୁ ସୁଦ୍ଧମାର ପଡ଼ିଆରେ ଗହଳି । ଆଲୁଅରେ ପଡ଼ିଆ ଝଲମଲ, ଠିକ ୧୨ଟା ବାଜିଲା । ତା'ସଙ୍ଗେ ସଙ୍ଗେ ଭାରତର ସ୍ୱାଧୀନତାକୁ ଅଭିନନ୍ଦନ ଜଣାଇ ତୋପ ଫୁଟିଲା । ଗୋଟାକ ପରେ ଗୋଟାଏ ୨୧ଟି ତୋପଧ୍ୱନି ହେଲା । ତାପରେ ପରେ ବାଣ ଆତସବାଜି । ତା ୧୫ ସକାଳୁ ବଡ଼ ପଡ଼ିଆର ସଫାର ପରିକ୍ରମା କଲେ । ଅପରାହ୍ନ ୪ଟା ବେଳକୁ ସଭାର ସବୁ ଆୟୋଜନ ସରିଛି । ଆଲୋକ ସଜାପାଇଁ ସବୁ ବ୍ୟବସ୍ଥା ହୋଇଛି । କିନ୍ତୁ ମୂଷଳ ଧାରାରେ ବର୍ଷା ଆରମ୍ଭ ହେଲା । ସେହି ବର୍ଷା ଭିତରେ ସ୍ୱାଧୀନ ଭାରତର ଜାତୀୟ ପତାକା ୧୬୦ ବର୍ଷ ପରେ ପୁଣି ସ ଗର୍ବରେ ଉଡ଼ିଲା ।

ମୋ ଆଖି ଆଗରେ ଅତୀତ ବର୍ଷ ଗୁଡ଼ିକର ଚିତ୍ର ଗୋଟିକପରେ ଗୋଟିଏ ଭାସିଯିବାକୁ ଲାଗିଲା । ପଣ୍ଡିତ ଗୋପବନ୍ଧୁ ଦାସ ଏହି ପାଖ ଜେଲରେ ବନ୍ଦୀଥିଲେ, ଖୋର୍ଦ୍ଧାରେ କଂଗ୍ରେସ ପତାକା ଉଡ଼ିବାମନା, ୧୮୧୭ ପାଇକବିଦ୍ରୋହର ଶବ୍ଦ ଶବ୍ଦ ଶମ୍ବାଦ, ସେଇ ବରଗଛ ସାକ୍ଷୀ ଠିଆ ହୋଇଛି । ଆଜି ସେ ଦେଖୁଛି ଆମ ସ୍ୱାଧୀନତାଉତ୍ସବର ସମାରୋହ । ଭାବବିହ୍ୱଳ ହୋଇ ପଡ଼ିଲି ।

ଯେଉଁ ସରକାରୀ ଉଚ୍ଚ କର୍ମଚାରୀମାନେ ସ୍ୱାଧୀନତା ଆନ୍ଦୋଳନକୁ ଦମନ କରିବା ପାଇଁ ପ୍ରାଣମୂର୍ଚ୍ଛା ଉଦ୍ୟମ କରୁଥିଲେ. ଜାତୀୟ ପତାକାକୁ ପାଦରେ ଦଳୁଥିଲେ, ସେମାନେ ଆଜି ସମସ୍ତେ ସଲାମଦେବା ପାଇଁ ଛିଡ଼ା ।

କିନ୍ତୁ ସେହିମାନଙ୍କର ନେତୃତ୍ୱରେ ଅନେକ ଯାଗାରେ ସ୍ୱାଧୀନତା ଦିବସ ପ୍ରଥମ କରି ପାଳିତ ହେଲା । ହେଲାନାହିଁ ସ୍ୱାଧୀନତା ସଂଗ୍ରାମୀମାନଙ୍କ ନେତୃତ୍ୱରେ ।

-- X ---

# ଖୋର୍ଦ୍ଧା ଭାଗଚାଷ ଆନ୍ଦୋଳନ

୧୯୪୬ ସାଧାରଣ ନିର୍ବାଚନ ପରେ ମହତାବ ଓଡ଼ିଶାର ମୁଖ୍ୟମନ୍ତ୍ରୀ ଓ ନବକୃଷ୍ଣ ଚୌଧୁରୀ ରାଜସ୍ୱ ବିଭାଗ ମନ୍ତ୍ରୀ ହେଲେ କଂଗ୍ରେସଦଳ ସରକାର ଗଢ଼ିଲେ ।

କୃଷକ ସଭା ତରଫରୁ ଚାଷୀଙ୍କୁ ସାମନ୍ତବାଦୀ ଶୋଷଣ ଓ ଅତ୍ୟାଚାରରୁ ମୁକ୍ତ କରିବା ପାଇଁ ୧୯୩୪ ରୁ ଆନ୍ଦୋଳନ ଆରମ୍ଭ ହୋଇଥିଲା । ଖୋର୍ଦ୍ଧାରେ ଜମିଦାର ନଥିଲେ ମଧ୍ୟ ହଜାର ହଜାର ଏକର ଜମିର ମାଲିକ ୧୧ ଜଣ ଥିଲେ । ସେମାନେ ଜମିଦାରଙ୍କ ଭଳି ଚାଷୀଙ୍କୁ ଜମି ଭାଗ ଦିଅନ୍ତି ସେ ବାବଦରେ ଚାଷୀଙ୍କଠାରୁ ଫସଲର ଅଧାଅଧି ନିଅନ୍ତି ତା' ଛଡ଼ା କଳାଲିପା, ମାଗୁଣି, ପାର୍ବଣ ଖର୍ଚ୍ଚ ଓ ଖଜଣା ବାବଦରେ ମଧ୍ୟ ନିଅନ୍ତି, ଫସଲର ଦୁଇ ତୃତୀୟାଂଶ ଏହିପରି ଜମିର ମାଲିକ ନେଇଯାଏ । ତା'ଛଡ଼ା ବେଠି ମଧ୍ୟ ବର୍ଷକୁ ଖୁବ୍ କମ୍‌ରେ ଏକମାସ କରିବାକୁ ହୁଏ ଏବଂ ଭେଟି ମଧ୍ୟ ଦିଅନ୍ତି । ଏହିସବୁ ଦାଉରୁ ଚାଷୀଙ୍କୁ ରକ୍ଷା କରିବା ପାଇଁ ଜମିଜମା ଆଇନ ଅନୁସାରେ ଚାଷୀ ତା'ର ଦେୟ ଦେବ, ଆଉ ଅଧିକା ଦେବେ ନାହିଁ । ଏହାରି ଉପରେ ଓଲସିଂ ପଟେ ଆନ୍ଦୋଳନ କରିବାକୁ ଆମ ଭିତରେ ଠିକ୍ ହେଲା ।

ଲୋକଙ୍କ ମନେ ବୁଝି ଜାଣିବା ପାଇଁ ଡମଣ୍ଡେଇ, ଓଲସିଂ ପ୍ରଭୃତିରେ ସଭା ହେଲା । ଏହିସବୁ ସଭାରୁ ଦେଖାଗଲା ଯେ ଲୋକଙ୍କ ଭିତରେ ଏହି ଶୋଷଣ ବିରୁଦ୍ଧରେ ଅସନ୍ତୋଷ ରହିଛି । ତାହାକୁ ରୂପ ଓ ନେତୃତ୍ୱ ଦେବାପାଇଁ ସଂଗଠନ ଦରକାର ।

କମ୍ୟୁନିଷ୍ଟ ପାର୍ଟି ଓଲସିଂ, ଡମଣ୍ଡେଇ, ଗୋଡ଼ିପଡ଼ା, ମଳିପଡ଼ା, ଗୋଲବାଇ ରାଏପୁର, କୃଷ୍ଣପୁର, ସିକୋ ଧରି ସେ ଅଞ୍ଚଳର ପ୍ରାୟ ୬୦ ଖଣ୍ଡ ଗ୍ରାମରେ ଭାଗଚାଷ ଆନ୍ଦୋଳନ ଆରମ୍ଭ କଲା । ପର୍ଶୁରାମ ପଦାତିକ ରାୟ, ଚକ୍ରଧର ପାଇକରା, ବାଙ୍କନିଧି ସୁବୁଦ୍ଧି, ଗଙ୍ଗାଧର ମିଶ୍ର ମୁଁ ଓ ପ୍ରାଣନାଥ ପଟ୍ଟନାୟକ ସାଧୁ ଚରଣ ମହାନ୍ତି, କଣ୍ଡୁରୀ ବଳିଆର ସିଂ, ଲକ୍ଷଣ ପଟ୍ଟନାୟକ, ରଘୁନାଥ ଦାସ ପ୍ରଭୃତି ଜିଲ୍ଲାର ବହୁ କମ୍ୟୁନିଷ୍ଟ ପାର୍ଟିର ସଭ୍ୟ ଆନ୍ଦୋଳନରେ ନେତୃତ୍ୱ ନେଇ କାମ କରିବାକୁ ଲାଗିଲେ । ପ୍ରତିଗାଁରୁ ମଧ୍ୟ ବହୁ ଲୋକ ଏହି ଆନ୍ଦୋଳନକୁ ନିଜ ନିଜ ଗାଁରେ ଚଳାଇବାକୁ ଲାଗିଲେ । ଆନ୍ଦୋଳନ ଅତି ଭୟଙ୍କର ଆକାର ଧାରଣ

କଲ । ସରକାର ଓ କଂଗ୍ରେସ ଜମିର ମାଲିକଙ୍କ ପକ୍ଷରେ କାମ କଲା । ଜମିର ଧାନ ନେଇଯିବା ପାଇଁ ପୁଲିସ ଜମିର ମାଲିକଙ୍କୁ ସାହାଯ୍ୟ କଲା । ପୃଷୀର ସଂଗଠନ ଙ୍କୁ ନିଜର ଝାଳବୁନ୍ଦା ପରିଶ୍ରମର ଫଳ ରକ୍ଷା କରିବାକୁ ସାହାଯ୍ୟ କଲା । କୃଷୀ ସଂଗଠିତ ଭାବେ ପୁଲିସ ଓ ଜମିଦାରଙ୍କର ଅନ୍ୟାୟରେ ପ୍ରତିରୋଧ କରିବାକୁ ଲାଗିଲେ ।

ମିଳିମିଶି ସମସ୍ତେ ପରସ୍ପରକୁ ସାହାଯ୍ୟ କରି ଧାନ କାଟିଲେ ଏବଂ ଗୋଟିଏ ଗୋଟିଏ କୋଠ ଖଳା କରି ତାକୁ ସମସ୍ତେ ଜଗିଲେ । ରାମପୁର, କୃଷ୍ଣପୁର, ମଳିପଡ଼ା, ଗୋଡ଼ପଡ଼ା ପ୍ରଭୃତି ଅଞ୍ଚଳରେ ଲୋକେ ମଶାଲ ପଟୁଆରରେ ଯାଇ ରାତି ରାତି ପାଚିଲା ଧାନସବୁ କାଟି ଆଣିଲେ । ରାମକୃଷ୍ଣ ପତି ଏହି ମଶାଲ ପଟୁଆରରେ ଯୋଗ ଦେଇଥିଲେ । ନଚେତ୍ ପୁଲିସ ୧୪୪ ଧାରା ଜାରିକରି ବଳରେ ସବୁ ଧାନ ଜବତ କରିଦେବେ । ବହୁ ସମୟରେ ପୁଲିସ ଆସି ପହଞ୍ଚିଲା ବେଳକୁ କ୍ଷେତରେ ଧାନ ନଥାଏ । ତେବେ ସେ ତ ଆଦେଶ ପାଇଛି, ଖାଲି କ୍ଷେତ ଉପରେ ୧୪୪ ଧାରା ଜାରି କରି ଚାଲିଯାଏ ।

ଏହିପରି ଭାବରେ ପୁଲିସ ଓ ଜମିଦାର ସହିତ ଲୁଚକାଳି ଖେଳ ଚାଲିଥାଏ । ଜମିଦାରମାନେ ସେ ଅଞ୍ଚଳରୁ ମୂଲିଆ ପାଉନଥାନ୍ତି । କାରଣ ସେ ଅଞ୍ଚଳର ମୂଲିଆମାନେ ଜମିଦାରମାନଙ୍କୁ ବର୍ଜନ କରିଥାନ୍ତି । ତେଣୁ ବାହାରୁ ଆଣନ୍ତି ମୂଲିଆ । କିନ୍ତୁ ସେମାନେ ନୀରବ ଦର୍ଶକ ହୋଇ ମଜୁରି ନେଇ ନିଜ ନିଜ ଗାଁକୁ ଫେରନ୍ତି । କାରଣ ସେମାନଙ୍କର ମଧ୍ୟ ଥାଏ ଏ ଆନ୍ଦୋଳନ ପ୍ରତି ସମର୍ଥନ । ଏହି ଆନ୍ଦୋଳନ ବାଜପୁର, ବେଗୁନିଆ, ବୋଲଗଡ଼, ଚନ୍ଦକା ପଭୃତି ଅଞ୍ଚଳକୁ ବ୍ୟାପିଗଲା ।

କଂଗ୍ରେସ ସରକାର ଏ ଆନ୍ଦୋଳନକୁ ଦମନ କରିବା ପାଇଁ ବଦ୍ଧପରିକର ହୋଇ ଉଠିଲେ । ପୁଲିସକୁ ଦମନ କରିବା ପାଇଁ ଅପରିସୀମ କ୍ଷମତା ଦେଇଦେଲେ । ଶେଷରେ ମଳିପଡ଼ା ମଠ ମହନ୍ତଙ୍କ ଲଙ୍ଗଳ ଓ ଲୋଟାଟିଏ ଚୋରିକରିବା ଅପରାଧରେ ପ୍ରାଣନାଥ ପଟ୍ଟନାୟକଙ୍କୁ ଗିରଫ କରିବା ଭଳି ଘୃଣ୍ୟ କାର୍ଯ୍ୟ କରିବାକୁ କଂଗ୍ରେସ ସରକାର କୁଣ୍ଠାବୋଧ କଲେନାହିଁ । କିନ୍ତୁ ଓଡ଼ିଶାର ଶିକ୍ଷିତ ସମାଜଠାରୁ ଆରମ୍ଭ କରି ସାଧାରଣ ଲୋକଙ୍କ ଭିତରେ ଏହାର କଟୁ ସମାଲୋଚନା ହେଲା । କଂଗ୍ରେସ ସରକାର ଅପ୍ରସ୍ତୁତ ହୋଇପଡ଼ିଲେ । ଶେଷରେ ୧୯୪୭ ଅଗଷ୍ଟ ତା ୧୫ ବେଳକୁ ଏହି ମକଦ୍ଦମା ଉଠାଇ ନେଲେ ।

ସେହିଦିନ ଯେଉଁ ଆନ୍ଦୋଳନ ଭୂ-ସଂସ୍କାର ପାଇଁ ଓ ଜମି ପାଇଁ ଆରମ୍ଭ ହୋଇଥିଲା ତାହା ସାରା ଓଡ଼ିଶାରେ ଏବେ ମୁଖ୍ୟ ଆନ୍ଦୋଳନ ଭାବେ ଠିଆହୋଇଛି । କଂଗ୍ରେସ ସରକାର ମଧ୍ୟ ସେତେବେଳେ ଭୂ-ସଂସ୍କାର ପାଇଁ ଏକ କମିଟି ବସାଇଲେ ।

ଏବଂ ଏଥିଅନ୍ତରେ ଭୂ-ସଂସ୍କାର ଆଇନ ସବୁ କରିବାକୁ ଲାଗିଲେ । ଏହି ଆନ୍ଦୋଳନର ଚାପରେ ଜମିଦାରୀ ଉଚ୍ଛେଦ ହେଲା । ଏବେ ଜମିଦାରଙ୍କ ବଳକା ଜମି ଭୂମିହୀନ ଓ ଗରିବ ଚାଷୀଙ୍କ ଭିତରେ ବଣ୍ଟାହେବାର ଏ ଆଇନ ହେଲାଣି । ଧୁଷ୍ଟିକଲର ନମାପଡ଼ାଥ ନଟରେ ଜଗନ୍ନାଥ ମହାନ୍ତିଙ୍କ ନେତୃତ୍ୱରେ ଚେଙ୍ଗ ଓ ବାଲିଗାମରେ ଏହି ଆନ୍ଦୋଳନ ମଧ୍ୟ ବିରାଟ ଆକାର ଧାରଣ କଲା । ଏ ପର୍ଯ୍ୟନ୍ତ ସେ ଆନ୍ଦୋଳନ ଚାଲିଛି । ହଜାର ହଜାର ଚାଷୀଙ୍କ ବିରୁଦ୍ଧରେ ଏ ପର୍ଯ୍ୟନ୍ତ ଜମିଦାର-ମାନେ ମକଦ୍ଦମା ଚଳାଇଛନ୍ତି । ଏହା ସର୍ବଭାରତୀୟ ଏକ ଜାତୀୟ ଆନ୍ଦୋଳନରେ ପରିଣତ ହେଲାଣି । ନୂଆ ନୂଆ କୃଷିବିଜ୍ଞାନ ଓ ଯନ୍ତ୍ରପାତିର ଆବିଷ୍କାର ଫଳରେ ସମାଜର ଉତ୍ପାଦନ ଶକ୍ତି ବୃଦ୍ଧିପାଇବାର ଅବସ୍ଥା ସୃଷ୍ଟି ହେଲାଣି । କିନ୍ତୁ ସାମନ୍ତବାଦୀ ସମାଜ ବ୍ୟବସ୍ଥା ଓ ଜମିଜମା ସମ୍ପର୍କ ଏହାର ପ୍ରତିବନ୍ଧକ ହୋଇ ଠିଆ ହୋଇଛି । ତେଣୁ ଏହି ସାମନ୍ତବାଦୀ ସମାଜ ବ୍ୟବସ୍ଥା ସମାଜର ଅଗ୍ରଗତିରେ ବାଧା ସୃଷ୍ଟି କରୁଛି ଏବଂ ବର୍ତ୍ତମାନ ଯୁଗର ଅନୁପଯୋଗୀ । ଏହାର ଉଚ୍ଛେଦ ହିଁ ହେଉଛି ବର୍ତ୍ତମାନ ସମୟର ଦାବି ଏବଂ ଏହାର ଉଚ୍ଛେଦ ଯେ ନିଶ୍ଚିତ ଏଥିରେ ସନ୍ଦେହ ନାହିଁ ।

—*—

# ପୁରୀ ମାହାର ଇଉନିୟନ

୧୯୩୪ କଥା । ପୁରୀ ମ୍ୟୁନିସିପାଲିଟିର ମାହାର ମାହାରାଣୀମାନଙ୍କ ଦରମା ମାସକୁ ଟ୨.୦୦ । ଚାକିରୀ ଥାଏ ଘର ଚାକର ଭଳି । ସେମାନେ ଥା'ନ୍ତି ସମାଜର ସବୁଠାରୁ ଘୃଣ୍ୟ ଜୀବ । ଅତି ଦୈନ୍ୟ ଅବସ୍ଥାରେ ସେମାନେ ଦିନ କାଟୁଥାଆନ୍ତି ।

ଗୌରହରି ନାୟକ ଗୋଟିଏ ହରିଜନ ପିଲା । ଅଷ୍ଟମ ଶ୍ରେଣୀରେ ପୁରୀ ଜିଲା ସ୍କୁଲରେ ପାଠ ପଢ଼ୁଥାଏ । ତା' ମନକୁ ତାଙ୍କ ସମାଜର ଏହି ଦୂରାବସ୍ଥା କଥା ଛୁଇଁଲା ଏବଂ ତା'ର ପ୍ରତିକାର ପାଇଁ ସେ ଲୋଡ଼ିଲା ତା'ର ସାଥୀ । ନରସିଂହ ତ୍ରିପାଠୀ ଓ ଗୁରୁ ଚରଣ ପଟ୍ଟନାୟକ ଏହାର ପ୍ରତିକାର ପାଇଁ ତାକୁ ସାହାଯ୍ୟ କରିବାକୁ ପ୍ରଥମେ ବାହାରିଲେ । ପୁରୀ ସହରର ମାହାର ମାହାରାଣୀମାନଙ୍କର ସଭା ଆରମ୍ଭ ହେଲା ଏବଂ ସଂଗଠନ ଗଢ଼ାଗଲା । ପୁରୀ ମ୍ୟୁନିସିପାଲିଟିର ଚେୟାରମ୍ୟାନ ଥା'ନ୍ତି ସେତେବେଳେ ରାଏବାହାଦୁର ଲୋକନାଥ ମିଶ୍ର । ସେ ଯେପରି ଗାଢ଼ ସାମନ୍ତବାଦୀ ସେହିପରି ରକ୍ଷଣଶୀଳ । ତାଙ୍କୁ ଏହା ସୁହାଉ ନଥାଏ । ମାହାର ମାହାରାଣୀମାନଙ୍କର ଦରମା ଓ ଅନ୍ୟାନ୍ୟ ସୁବିଧା ପାଇଁ ଦାବୀ କରାଗଲା ।

ମ୍ୟୁନିସିପାଲିଟି ମେଥରେ କାମ ନଦେବାରୁ ଧର୍ମଘଟ ଆରମ୍ଭ ହେଲା । କଟକରେ ଇଉନିୟନ ଗଢ଼ାଗଲା ଏବଂ ୩୦ ବର୍ଷ ଧରି ଏହି ମାହ୍ୱାର ଇଉନିୟନର ସଭାପତି ଭାବରେ ମେ ତେ କାର୍ଯ୍ୟ କରିବାକୁ ହେଲା । ଗୌରହରି ନାୟକ ତାଙ୍କ ମୃତ୍ୟୁ ପର୍ଯ୍ୟନ୍ତ ଏହାର ସମ୍ପାଦକ ଥିଲେ । ଗୋପୀନାଥ ନାରାୟଣ ବ୍ରହ୍ମଚାରୀ, ବ୍ରଜବନ୍ଧୁ ମିଶ୍ର ଏହି ସଂଗଠନ ଓ ଆନ୍ଦୋଳନରେ ମୁଖ୍ୟ ଭାବରେ ମଧ୍ୟ କାମ କରୁଥିଲେ । ପୁରୀ ମ୍ୟୁନିସିପାଲିଟି ମାହ୍ୱାର ଇଉନିୟନ ଓଡ଼ିଶାର ପ୍ରଥମ ଚେତନଶୀଳ ହରିଜନ ମାନଙ୍କର ଶ୍ରମିକ ସଂଗଠନ । ଏହା କେବଳ ଆର୍ଥିକ ସମସ୍ୟା ଉପରେ ଲଢ଼ୁ ନଥିଲା । ସେମାନଙ୍କ ଭିତରେ ମଦ ଖାଇବା ଓ ଗୋମାଂସ ଖାଇବା ଛାଡ଼ିବା, ଶିକ୍ଷା ବିସ୍ତାର କରିବା, ସାମାଜିକ ଅବସ୍ଥାରେ ପରିବର୍ତ୍ତନ ଆଣିବା, ରାଜନୈତିକ କ୍ଷେତ୍ରରେ ଜାତୀୟ ମୁକ୍ତି ସଂଗ୍ରାମରେ ଅଂଶ ଗ୍ରହଣ କରିବା ଆଦି ସମସ୍ତ କ୍ଷେତ୍ରରେ ଏ ସଂଗଠନ ଲଢ଼ୁଥିଲା ଏବଂ ଏହି ସଂଗଠନ ଓ ସଂଗ୍ରାମ ଫଳରେ ସେମାନଙ୍କର ଆର୍ଥିକ ଓ ସାମାଜିକ କ୍ଷେତ୍ରରେ ବହୁ ଉନ୍ନତି ଘଟିଥିଲା ଏବଂ ଗୋଟିଏ ଶକ୍ତି ଭାବରେ ସହରରେ ଠିଆ ହୋଇଥିଲା ।

ପୁରୀରେ ଗାନ୍ଧିଜୀଙ୍କର ଚିତାଭସ୍ମ ବିସର୍ଜ୍ଜନ ହେବା ପରଦିନ ଏହି ଅନୁଷ୍ଠାନର ଉଦ୍ୟମ ଫଳରେ ଗୌରହରି ନାୟକଙ୍କ ନେତୃତ୍ୱରେ ଶାନ୍ତି ଶୃଙ୍ଖଳାର ସହିତ ବିନା ଗଣ୍ଡଗୋଳରେ ହରିଜନମାନେ ପୁରୀ ଜଗନ୍ନାଥ ମନ୍ଦିରରେ ପ୍ରଥମ କରି ପ୍ରବେଶ କରି ଏକ ନୂତନ ଇତିହାସ ସୃଷ୍ଟି କରିଥିଲେ ଏବଂ ଏକ ନୂତନ ଯୁଗର ସୂତ୍ରପାତ କରିଥିଲେ ।

ଏମାନେ ନୋଳିଆମାନଙ୍କ ଭିତରେ ମଧ୍ୟ ନାନା ସଂସ୍କାର ଆଣିବାକୁ କାର୍ଯ୍ୟ କରୁଥିଲେ ।

ଏହି ଇଉନିୟନର କାର୍ଯ୍ୟ ଫଳରେ ଏମାନେ ସାମ୍ପ୍ରଦାୟିକ ମନୋଭାବ ଓ ଆନ୍ଦୋଳନରୁ ମୁକ୍ତ ରହିଥିଲେ ।

—※—

# ନୂତନ ଯୁଗର ସାହିତ୍ୟ

ସ୍ୱାଧୀନତା ଆନ୍ଦୋଳନ ପୂର୍ବରୁ ଓଡ଼ିଆ ସାହିତ୍ୟର ସାମନ୍ତବାଦୀ ଚରିତ୍ର ଥିଲା ଏବଂ ଇଂରେଜ ସରକାରଙ୍କୁ ସୁହାଇଲା ଭଳି ଗୋଲାମୀ ମନୋଭାବ ପ୍ରକାଶ କରୁଥିଲା ।

ସ୍ୱାଧୀନତା ଆନ୍ଦୋଳନ ଆରମ୍ଭ ହେବା ପରେ ସାହିତ୍ୟ ଜାତୀୟ ମୁକ୍ତି ପିପାସାକୁ ରୂପ ଦେଲା ।

ଦଳିତ ନିଷ୍ପେଷିତ ଖଟିଖିଆ ଶ୍ରେଣୀ ଶ୍ରମିକମାନଙ୍କର ଆକାଂକ୍ଷାକୁ ଏଥିରେ ଫୁଟାଇ ପାରି ନଥିଲା । କିନ୍ତୁ ସାମ୍ୟବାଦୀ ରାଷ୍ଟ୍ର ରୁଷିଆର ଜନ୍ମ, ଶ୍ରମିକ ଓ କୃଷକ ସଂଗଠନର ଅଭ୍ୟୁଦୟ, କଂଗ୍ରେସ ସୋସିଏଲିଷ୍ଟ ପାର୍ଟି, କମ୍ୟୁନିଷ୍ଟ ପାର୍ଟି ଓ ଗଡ଼ଜାତ ଆନ୍ଦୋଳନ ଆରମ୍ଭ ହେବା ସଙ୍ଗେ ସଙ୍ଗେ ସାହିତ୍ୟର ଆତ୍ମାରେ ପରିବର୍ତ୍ତନ ଦେଖାଦେଲା । ସାମ୍ରାଜ୍ୟବାଦ, ସାମନ୍ତବାଦ ଓ ପୁଞ୍ଜିବାଦର ଶୋଷଣ ଅତ୍ୟାଚାର ବିରୁଦ୍ଧରେ ଲେଖାମାନ ଓ କବିତାମାନ ପ୍ରକାଶ ପାଇଲା । ନୂତନ ଦୃଷ୍ଟିକୋଣରୁ, ନୂତନ ମୂଲ୍ୟାୟନରୁ ସମାଜକୁ କେବଳ ଚିତ୍ରଣ କଲାନାହିଁ । ସେଥିରୁ ମୁକ୍ତି ପାଇଁ ବାଟର ସନ୍ଧାନ ମଧ୍ୟ ଦେବାକୁ ଲାଗିଲା ।

ଏହି ସମୟରେ ୧୯୩୪ରେ "ନବଯୁଗ ସାହିତ୍ୟସଂସଦ" ସାହିତ୍ୟ ଜଗତରେ ନୂତନ ଭୂମିକା ଗ୍ରହଣ କଲା । ଏହାର ଆନୁକୂଲ୍ୟରେ ଅନୁଷ୍ଠିତ ଆଲୋଚନା ସପ୍ତାହର ବକ୍ତୃତା ସବୁ ସେତେବେଳକାର 'ନବଭାରତ'ରେ ପ୍ରକାଶ ପାଇଥିଲା । ଏହି ସମୟରେ ଗୋଟିଏ ପତ୍ରିକା 'ଆଧୁନିକ' ଭଗବତୀ ଚରଣ ପାଣିଗ୍ରାହୀଙ୍କ ସମ୍ପାଦକତ୍ୱରେ ମଧ୍ୟ ପ୍ରକାଶ ପାଇଲା ।

• ସେହି ଦିନରୁ ଓଡ଼ିଆ ସାହିତ୍ୟର ମୋଡ଼ ବଦଳିଗଲା ।

ସାହିତ୍ୟର ଏହି ମୋଡ଼ ବଦଳାଇବାରେ ଅନନ୍ତ ପଟ୍ଟନାୟକ, ଭଗବତୀ ଚରଣ ପାଣିଗ୍ରାହୀ, ଗୁରୁ ଚରଣ ପଟ୍ଟନାୟକ ଓ ଅନ୍ୟ କେତେକ ମୁଖ୍ୟ ଭୂମିକା ଗ୍ରହଣ କରିଥିଲେ । ମୁଁ ଓ ଅନ୍ୟ ସାଥୀମାନେ ଏହି ସମୟରେ ନୂତନ ଯୁଗପୋଯୋଗୀ ଲେଖାମାନ ମଧ୍ୟ ଲେଖିଥିଲୁ । 'ଆଗେଇ ଚାଲ', 'କୃଷକ'. 'ମୁକ୍ତିଯୁଦ୍ଧ', ସାପ୍ତାହିକ କାଗଜ ସବୁ, 'ଭାରତରେ ଇଂରେଜ ରାଜ' ଜମିଦାରୀ ଉଚ୍ଛେଦରେ ଓଡ଼ିଶାର 'ନୂଆ କଳେବର' 'ରକ୍ତଶିଖା' ପ୍ରଭୃତି ପୁସ୍ତିକା ସବୁ ଜନଜାଗରଣରେ ନୂତନ ଆୟୁଧ ଭାବରେ କାମ କରୁଥିଲା ।

———

# ରଙ୍ଗମଞ୍ଚ

ସାହିତ୍ୟ ଭଳି ରଙ୍ଗମଞ୍ଚରେ ମଧ୍ୟ ନୂତନତ୍ୱ ଦେଖାଦେଲା । କମ୍ୟୁନିଷ୍ଟ ପାର୍ଟିର ଗଣନାଟ୍ୟ ସଂଘ କୃଷକ, ଶ୍ରମିକମାନଙ୍କର ଦୁରବସ୍ଥା ଓ ତା'ର ସଂଗ୍ରାମକୁ ସଙ୍ଗୀତରେ, ପାଲାରେ, ଅଭିନୟରେ, ରଙ୍ଗମଞ୍ଚରେ, ଦର୍ଶକମାନଙ୍କ ସାମନାରେ ଥୋଇଲେ । ଏହା ଅତ୍ୟନ୍ତ ଲୋକପ୍ରିୟ ହୋଇ ଉଠିଲା । ହଜାର ହଜାର ଲୋକ ମୁଗ୍ଧ ହୋଇ ଏହା ଶୁଣିବାକୁ ଓ ଦେଖିବାକୁ ଲାଗିଲେ । ପୁରାତନ ଆଧାରରେ ନୂତନ ଆତ୍ମା ନେଇ ଏହା ଦର୍ଶକଙ୍କୁ ଉନ୍ମତ୍ତ କଲା । ସଭାରେ ମନମୋହନ ମିଶ୍ରଙ୍କର ସଙ୍ଗୀତ ଗାନ ଶ୍ରୋତାମାନଙ୍କୁ ମୁଗ୍ଧ କରି ରଖୁଥିଲା ।

ଭାରତର ସ୍ୱାଧୀନତା ଘୋଷଣା ଉପରେ କଂଗ୍ରେସ ମୁସଲିମଲିଗ୍ - ଇଂରେଜ ସରକାର ଭିତରେ ଚାଲିଥିବା ସିମିଲା ବୈଠକ ଉପରେ ଏକ ଅଭିନୟ ରାମଚନ୍ଦ୍ର ଭବନରେ ମଞ୍ଚସ୍ଥ କରାଯାଇଥିଲା । ଯେଉଁମାନେ ଦେଖିଥିଲେ ସେମାନେ ଏପର୍ଯ୍ୟନ୍ତ ତା'ର ନୂତନତ୍ୱକୁ ଭୁଲି ନାହାନ୍ତି । ଭାରତ ବିଭାଗ, କଂଗ୍ରେସ ସରକାରର ଓ ମନ୍ତ୍ରୀମାନଙ୍କର କାର୍ଯ୍ୟକଳାପ ଉପରେ ପାଲା ସବୁ ପୁରୀଜିଲ୍ଲାର କାକଟପୁର ଅଞ୍ଚଳର ଗୃହୀକର୍ମୀ, ଆଠଗଡ଼ର ପାଲାବାଲାମାନେ ଓ ଗଞ୍ଜାମର ଦାସକାଠିଆ ଏଭଳି ମନଲାଖି ପରିବେଷଣ କରିବାକୁ ଲାଗିଲେ ଏବଂ ଏହା ଲୋକଙ୍କୁ ଏପରି ଆକୃଷ୍ଟ କଲା ଯେ କଂଗ୍ରେସ ସରକାର ଅସନ୍ତୁଷ୍ଟ ହୋଇ ଏହା ଉପରେ (୧୪୪ ଧାରା) ନିଷେଧ ଆଦେଶ ଜାରି କରିବାକୁ କୁଣ୍ଠାବୋଧ କଲେ ନାହିଁ ।

—*—

# ଚଳନ୍ତି ଶିକ୍ଷା ଶିବିର

୧୯୩୯ ଯୁଦ୍ଧ ଆରମ୍ଭ ହୋଇଥାଏ । ଭଗବତୀ ପାଣିଗ୍ରାହୀ ଓ ଗୁରୁ ଚରଣ ପଟ୍ଟନାୟକଙ୍କ ପରିଚାଳନାରେ ଖୋର୍ଦ୍ଧା ଅଞ୍ଚଳରେ ଚଳନ୍ତି ଶିକ୍ଷା ଶିବିରମାନଙ୍କର ଆୟୋଜନ କରାଯାଇଥିଲା । ଏହି ଶିକ୍ଷା ଶିବିର ଖୋର୍ଦ୍ଧା, ଗୋଲ୍ଲପଡ଼ା, ଜଙ୍କିଆ ଟାଙ୍ଗୋଲ, ସିକୋ, ସାନପଦର ପ୍ରଭୃତିଠାରେ ଅନୁଷ୍ଠିତ ହୋଇଥିଲା ।

ଏହା ଏକ ନୂତନ ଧରଣର ଶିକ୍ଷା ଶିବିର ଥିଲା । ଗୋଟିଏ ଗ୍ରାମରେ କର୍ମୀମାନେ ପହଞ୍ଚିଲା ପରେ ସେଠାରେ ସେମାନଙ୍କୁ ଗୋଟିଏ ଘରେ ଇଉନିଅର

ନମନ୍ତ୍ରକାଶ, ଶୋଷଣରେ ଇତିହାସ ଆଦି ବହୁ ବିଷୟରେ କ୍ଲାସ ଓ ତଥ୍ୟ ଆଦି ସାହାଯ୍ୟରେ ବୁଝାଯାଉଥିଲା । ଏହି ଗାଁର ସାଧାରଣ ଲୋକେ ମଧ୍ୟ ଏଥିରେ ଯୋଗ ଦେଇ ଶୁଣୁଥିଲେ । ସେତେବେଳେ ସେହି ଗାଁର ଲୋକେ ଖାଇବାକୁ ଦେଉଥିଲେ । ସେହି ଗ୍ରାମର ପ୍ରତ୍ୟେକ ପରିବାରର ଆର୍ଥିକ ଅବସ୍ଥା ଉପରେ କର୍ମୀମାନେ ତଥ୍ୟ ସଂଗ୍ରହ କରୁଥିଲେ । କ୍ଲାସ ବେଳେ ସାଧାରଣ ସଭାରେ କର୍ମୀମାନେ ସେହି ତଥ୍ୟକୁ ଭିତ୍ତିକରି ଲୋକଙ୍କୁ ସେମାନଙ୍କର ବାସ୍ତବ ଅବସ୍ଥା ଓ ସେଥିରୁ ଉଦ୍ଧାର ହେବାର ବାଟ କ'ଣ ତାହା ଉପରେ ବକ୍ତୃତା ଦେଉଥିଲେ । ଏହା ଫଳରେ କର୍ମୀଙ୍କର ଯଥେଷ୍ଟ ଉନ୍ନତି ହେଉଥିବାର ଲକ୍ଷ କରାଯାଉଥିଲା । ସନ୍ଧ୍ୟାରେ କର୍ମୀମାନେ ଆଉ ଗୋଟିଏ ଗ୍ରାମକୁ ଯାଇ ସେଠାରେ ରାତିରେ ବୈଠକ କରୁଥିଲେ ଏବଂ ସେହିପରି ଶିକ୍ଷାଲାଭ କରୁଥିଲେ । ଏହିପରି ଶିବିରଟି ଗୋଟିଏ ଗ୍ରାମରୁ ଅନ୍ୟ ଗୋଟିଏ ଗ୍ରାମକୁ ବୁଲୁଥିଲା । ଏହା ଫଳରେ କର୍ମୀମାନଙ୍କର ଗ୍ରାମବାସୀଙ୍କ ସହିତ ଘନିଷ୍ଠ ସମ୍ପର୍କ ଆସୁଥିଲା । କର୍ମୀ ଓ ଗାଁର ସାଧାରଣ ଲୋକେ ସଚେତନ ହେଉଥିଲେ, ରାଜନୈତିକ ଶିକ୍ଷା ପାଇ ପାରୁଥିଲେ, ଏବଂ କମ୍ୟୁନିଷ୍ଟପାର୍ଟି ସହିତ ଘନିଷ୍ଠ ଭାବେ ମିଳିତ ହେଉଥିଲେ ।

ଏହି ଚଳନ୍ତି ଶିକ୍ଷା ଶିବିରର ଆୟୋଜନ ଓ ଶିକ୍ଷାଦାନରେ ଅନ୍ୟମାନଙ୍କ ସହିତ ମୋତେ ଦାୟିତ୍ୱ ତୁଲାଇବାକୁ ହେଉଥିଲା ।

...※...

# କାଦୁଆ ଆଶ୍ରମରେ କଂଗ୍ରେସ କର୍ମୀ ସମ୍ମିଳନୀ

## ସାକ୍ଷୀଗୋପାଳ

୧୯୪୫ରେ ସବୁ ରାଜନୈତିକ ବନ୍ଦୀମାନେ ଜେଲରୁ ଖଲାସ ହୋଇଗଲେ । ସମସ୍ତେ ଏକାଠି ହୋଇ ପରବର୍ତ୍ତୀ କାର୍ଯ୍ୟପନ୍ଥା ସ୍ଥିର କରିବା ଏବଂ ପରସ୍ପରକୁ ମିଳିବା ପାଇଁ ଏକ ସମ୍ମିଳନୀ ସାକ୍ଷୀଗୋପାଳର କାଦୁଆ ଆଶ୍ରମଠାରେ ବସିଲା । ଏହି ସମ୍ମିଳନୀକୁ ରାଜ୍ୟର ସବୁଆଡ଼ୁ କର୍ମୀମାନେ ଆସିଲେ । କଂଗ୍ରେସ ଭିତରେ ଥାଇ ବହୁବର୍ଷଧରି ସ୍ୱାଧୀନତା ଆନ୍ଦୋଳନରେ ଯୋଗ ଦେଇଥିବା ଏବଂ ୧୯୩୯ ଠାରୁ ୧୯୪୫ ଯାଏ ବିଭିନ୍ନ ଜେଲରେ ବନ୍ଦୀ ହୋଇଥିବା କମ୍ୟୁନିଷ୍ଟ ମତବାଦର କର୍ମୀମାନେ ମଧ୍ୟ ସେହି ସମ୍ମିଳନୀରେ ଯୋଗଦେବାକୁ ଆସିଲେ । କିନ୍ତୁ କାଦୁଆ-ଆଶ୍ରମ ଭିତରକୁ ସେମାନଙ୍କୁ ଛାଡ଼ି ଦିଆଗଲା ନାହିଁ । ସେମାନେ ସାକ୍ଷୀଗୋପାଳର

ଗୋଟିଏ ଧର୍ମଶାଳାରେ ଆଶ୍ରୟ ନେଲେ। ଗୋପବନ୍ଧୁ ଚୌଧୁରୀ ଓ ଆଗ୍ରହୀ ହରେକୃଷ୍ଣ ଦାସ ଏହି ସମ୍ମିଳନୀର ପୁରୋଧା ଥାଇ ସେମାନଙ୍କୁ ଯୋଗଦେବାକୁ ଦିଆଇଦେଲେ ନାହିଁ । ଶେଷରେ କେବଳ ଦର୍ଶକ ଭାବରେ ଯୋଗଦେବାକୁ ଅନୁମତି ମାଗି ମୁଁ, ଆଗ୍ରହୀ ହରେକୃଷ୍ଣ ଦାସଙ୍କୁ ଖଣ୍ଡିଏ ଚିଠି ଲେଖିଲି । କିନ୍ତୁ ଦର୍ଶକଭାବରେ ଯୋଗଦେବାକୁ ମଧ୍ୟ ମୋତେ ଅନୁମତି ମିଳିଲା ନାହିଁ । ଆମେ ସ୍ୱତନ୍ତ୍ର ଭାବରେ ବସି ଆମର ସମ୍ମିଳନୀ କଲୁ । ଏଥିରେ ପ୍ରାୟ ୫୦୦ କର୍ମୀ ଯୋଗ ଦେଇଥିଲେ ।

×o×

# ଗାଁ ଅବଧାନ

ପୁରୀ ଜିଲ୍ଲାର ଚନ୍ଦକା ଗୋଟିଏ ଥାନା । ବଣ ଜଙ୍ଗଲ ବାଘ, ଭାଲୁରେ ପରିପୂର୍ଣ୍ଣ । ସେହି ଥାନାରେ ଅଣସଲ ବୋଲି ଗୋଟିଏ ଗାଁ । ଗାଁ ଚାରିପଟ ବଣବୁଦା । ସନ୍ଧ୍ୟାରେ ଗାଁ ବାହାରକୁ କେହି ବାହାରିଲେ ବାଘ ନେଇଯିବାର ଭୟ । ହେଟା, ଗଧିଆ ତ ଦିନବେଳେ ବାହାରନ୍ତି । ଏହିଭଳି ଗୋଟିଏ ଗାଁ ଶେଷ-ମୁଣ୍ଡରେ ଗୋଟିଏ ଚାଳିଆ ଘର । କୌଣସି ବିଦେଶୀ ଜମିର ମାଲିକ ତା'ର ଜମିରୁ ଧାନ ଅମଳବେଳେ ଚାଷୀଙ୍କ ପାଖରୁ ଭାଗଧାନ ଆଦାୟ କରିବାକୁ ବର୍ଷକେ ଥରେ ଦୁଇଥର ନିଜେ ଏ ଗାଁକୁ ଆସେ ବା ତା'ର ଗୁମାସ୍ତାକୁ ପଠାଏ । ଏଘର ଖଣ୍ଡିକ ସେମାନଙ୍କର । ସେମାନେ ଆସିଲାବେଳେ ଏହିଠାରେ ରହନ୍ତି । ଜମିର ମାଲିକଙ୍କ ପାଖରୁ ଗାଁ ବାଲା ଅନୁମତି ନେଇ ଏହିଠାରେ ଗୋଟିଏ ଚାଟଶାଳୀ ବସେଇଥିଲେ । କାରଣ ଏହି ଅନୁନ୍ନତ ଜଙ୍ଗଲ ଅଞ୍ଚଳରେ ଗାଁ ସବୁ ଛଡ଼ା ଛଡ଼ା, ଦୂରକୁ, ଦୂରକୁ । ଛୋଟିଆ ପିଲାଙ୍କୁ ଦୂର ପାଠଶାଳାକୁ ପଠାଇବା ନିରାପଦ ନୁହେଁ ।

ଚାଟଶାଳୀରେ 'ଅ' 'ଆ' ଶିଖିବାଠାରୁ ୫ମ ଶ୍ରେଣୀରେ ପାଠ ପଢ଼ା ଯାଉଥାଏ । ଚାଟଶାଳୀରେ ଜଣେ ମାଷ୍ଟର ଥା'ନ୍ତି । ଆଜିକାଲି ଭଳି ତାଙ୍କୁ ଅବଧାନ ନ କହି 'ମାଷ୍ଟର' ବୋଲି କହୁଥିଲେ । ତାଙ୍କର ବୟସ ଖୁବ୍ ବେଶୀ ହେଲେ ୨୦ବର୍ଷ ହେବ । ଘର ତାଙ୍କର ଗ୍ରାମଜିଲ୍ଲା । ସେ ବଡ଼ ଅମାୟିକ ଲୋକ ଥିଲେ । ଗାଁ ଲୋକଙ୍କ ସଙ୍ଗେ ସେ ଏପରି ମିଶି ଯାଉଥିଲେ ଯେ ଲୋକେ ତାଙ୍କୁ ନିଜ ଗାଁ ଓ ପରିବାରର ଲୋକ ବୋଲି ଭାବୁଥିଲେ । ସେ ମଧ୍ୟ ପିଲାଙ୍କୁ ଏତେ ସ୍ନେହ, ଆଦର କରୁଥିଲେ ଯେ ପିଲାଏ ମାଷ୍ଟରଙ୍କ ପାଖ ଛାଡୁ ନଥିଲେ ! ପାଠପଢ଼ାରେ ଖୁବ୍ ଯତ୍ନ ନେଉଥିଲେ । ଏ ସବୁ ସତ୍ତ୍ୱେ ଅବଧାନଙ୍କର ବେତ ଖଣ୍ଡିକ ମାଷ୍ଟରଙ୍କ ହାତ ପାଖରେ ସବୁବେଳେ ପହରା ଦେଉଥାଏ । ପିଲାଙ୍କ ପିଠିରେ କେତେବେଳେ କେମିତି ବାଜୁଥିବ କି ନାହିଁ

କେଜାଣି କାନ୍ତ ଚଟାଣ ଉପରେ ସେ ଖଣ୍ଡିକ ମଝିରେ ମଝିରେ ପଡ଼ି ଉଠି ଚଟଚଟ ଶବ୍ଦ କରେ । ଏହି ଶବ୍ଦରେ ପିଲାଏ ହୁସିଆର ପିଠି ଉପରକୁ ଯିବାକୁ ବେତ-ଖଣ୍ଡିକର ଆଉ ଦରକାର ପଡ଼େନାହିଁ । ମୁଁ ଏହି ମାଷ୍ଟରଙ୍କୁ ସବୁବେଳେ 'ଅବଧାନ' ବୋଲି ଡାକୁଥିଲି । ପିଲାଦିନରେ ମୁଁ ଅବଧାନଙ୍କ ପାଖରୁ ପଢ଼ା ଆରମ୍ଭ କରିଥିଲି । ସେହିଦିନରୁ 'ଅବଧାନ' ଡାକଟା ମୋର ଭାରି ପ୍ରିୟ ଥିଲା, ଆଉ ସମ୍ମାନର ଡାକମଧ୍ୟ ଥିଲା ।

ମୁଁ, ପ୍ରାଣନାଥ ବାବୁ ଯେତେବେଳେ ଗ୍ରାମଗୁଡ଼ିକୁ ଯାଉଥିଲୁ ଏବଂ ସଭା କରୁଥିଲୁ, ଏହି ମାଷ୍ଟର ଆମକୁ ଖୁବ୍ ସାହାଯ୍ୟ କରୁଥିଲେ । ଲୋକଙ୍କୁ ଡକେଇବା, ଲୋକଙ୍କ ସହିତ ପରିଚୟ କରାଇଦେବା ଓ ଲୋକଙ୍କର ଅବସ୍ଥା ବିଷୟରେ ଆମକୁ ଅବହିତ କରାଉଥିଲେ । ପାଖ ଗାଁର ମାଷ୍ଟ୍ରଙ୍କୁ ମଧ୍ୟ ସେ ଆମକୁ ନେଇ ତାଙ୍କର ସମସ୍ୟା କଥା ବୁଝାଉଥିଲେ ଏବଂ ସେମାନଙ୍କୁ ସଂଗଠିତ କଲେ ବହୁତ କାମ ହେବା କଥା କହୁଥିଲେ ।

ତାଙ୍କର ଚାଲିଚଳନ, କଥାବାର୍ତ୍ତା ଓ କାମଦାମରୁ ତାଙ୍କ ସହିତ ଆମର ଘନିଷ୍ଠ ସମ୍ପର୍କ ପ୍ରତିଷ୍ଠିତ ହେଲା । ତାଙ୍କର ପିଲାଧିରି ଆମେ ଅରିସଲ ଗଲୁ ।

ମାଷ୍ଟରଙ୍କୁ ଦେଖିଲେ ଯେ କେହି କହିବ ଯେ ବଡ଼ ନିରୀହ ଲୋକ, କିଛି ଜାଣନ୍ତି ନାହିଁ । ଚେହେରା ଖଣ୍ଡିକ ମଧ୍ୟ ଧନ୍ଦିଆ ହୋଇ ସେହିପରି । ଅରିସଲ ଗଲେ ଆମେ ତାଙ୍କର ଗୃହ ଜୀରେ ଆଗ୍ରହ ନେଉ । ପିଲାଏ ମାଷ୍ଟରଙ୍କ ପାଇଁ କାଠ, ଚାଉଳ, ବାଇଗଣ, ଆଳୁ, ତେଲ, ଲୁଣ ସବୁ ସେଦିନ ଟିକିଏ ବେଶୀ କରି ଆଣନ୍ତି । ଅବଧାନଙ୍କର କୁଣିଆ ଆସିଛନ୍ତି ନ ଆଣିବେ କିପରି ? କଟଣି ଥାନା ଗଙ୍ଗପଡ଼ା-ଗାଁରେ । ଆଉ ଜଣେ ଅବଧାନ ସ୍କୁଲରେ ପରି ଥିଲେ । ଆମ ସାଙ୍ଗରେ ପଡ଼ି ସେ ଆଗରୁ ଚାହାଳୀ ଦ୍ୱାର ବନ୍ଦ କରି ଦେଇ ଲୋଟା କମ୍ବଳ ଧରି ଖୋର୍ଦ୍ଧା କମ୍ୟୁନିଷ୍ଟ ପାର୍ଟି ଅଫିସକୁ ଚାଲି ଆସିଥିଲେ । ଗଙ୍ଗପଡ଼ାର ଏହି ଅବଧାନଙ୍କ ସହିତ ଅରିସଲର ଏହି ଅବଧାନଙ୍କର ବନ୍ଧୁତା ଆଗରୁ ଥାଏ । ତେଣୁ ମୁଁ, ଗଙ୍ଗପଡ଼ାର ଅବଧାନ ଯେତେବେଳେ ଯାଇ ଅରିସଲରେ ପହଞ୍ଚୁ ତା' ପୂର୍ବରୁ ଆମର ମଣିକାଞ୍ଚନ ସଂଯୋଗ ହୁଏ ।

ବଢ଼ିଆ କରି ଭାତ ଡ଼ାଲମା ହୁଏ, ତା' ପୂର୍ବରୁ ଗୁଂ ପାଣି ମୁଢ଼ି ସଙ୍ଗେ ଚା'ଗିରିଥର ହୋଇଯାଏ । ଉପଥାଳିଆ, ନ ହେଲେ ଖଲି ପତରରେ ଭରି ଭୋଜନ ସରିଲେ ପିଲାଏ ଚାହାଳୀକୁ ଆସିବାଯାଏ ଗାଁର ସମସ୍ୟା କଥା ପଡ଼େ ଏବଂ ଟଟା ବେଳକୁ ସଭାର ବନ୍ଦୋବସ୍ତ କରାହୁଏ ।

ଏହିପରି ଭାବରେ ଆମରି ଯିବା ଆସିବା ଲାଗିଥାଏ ଏବଂ ଗ୍ରନ୍ଥାଗାର ଚାଲିଥାଏ । ଗାଁର ଲୋକେ ସମସ୍ତେ ଚାଷୀ ପୁଣି ଭାଗଚାଷୀ କହିଲେ ଚଳେ । ତେଣୁ ଆମ କଥା, ବକ୍ତୃତା ସେମାନଙ୍କୁ ସୁଖ ଲାଗୁଥାଏ । ସେମାନେ କ୍ରମେ ସଂଗଠିତ ହେବାକୁ ଲାଗିଲେ । କୃଷକ ସଭାର ସଭ୍ୟ ହେବାକୁ ଆରମ୍ଭ କଲେ । ଗାଁର ଯୁବକମାନେ ଏକାଠି ହେବାକୁ ଲାଗିଲେ ଏବଂ ଯୁବକ ସଂଘଟିଏ ମଧ୍ୟ ଗଢ଼ିଲେ । ଉଲ୍ଲାସଚନ୍ଦ୍ର ଦେହୁରୀ ଏହି ଯୁବକ ସଂଘର ମୁଖ୍ୟ ହେଲେ । ଗାଁରେ କୃଷକ ସଭା ମଧ୍ୟ ଗଢ଼ାଗଲା । ମାଷ୍ଟର ଏ ସବୁର ପରାମର୍ଶଦାତାରୂପେ କାର୍ଯ୍ୟକଲେ । ସେତେ ବେଳକୁ ସେ କମ୍ୟୁନିଷ୍ଟପାର୍ଟିର ବାଧିବଦ୍ଧ ସଭ୍ୟ ହେଲେଣି ।

୨ୟ ମହାଯୁଦ୍ଧ ୧୯୩୯ରେ ଆରମ୍ଭ ହୋଇଯାଇଥାଏ, ତେଣୁ ଆମେ ଲୁଚି-ଛପି ଆମର ପାର୍ଟି ମିଟିଂ ବସାଉଥାଉ । ଅବଧାନଙ୍କର ଏହି ଗ୍ରନ୍ଥାଗାରଘରେ ମଧ୍ୟ କେତେଥର ଜିଲ୍ଲା କମିଟି ବୈଠକ ବସିଛି । ବାହାରର ଲୋକେ କିଛି ଜାଣିପାରନ୍ତି ନାହିଁ ।

ବଜୟ୍ଭ ଚନ୍ଦ୍ର ଦାସ, ଗୁରୁଚରଣ ପଟ୍ଟନାୟକ, ଆତ୍ମଗୋପନ କରି ଏହି ଗ୍ରନ୍ଥାଗାରରେ ମଧ୍ୟ ଅନେକ ଥର ଆଶ୍ରୟ ନେଇଥିଲେ ଏବଂ ଏହି ଗ୍ରନ୍ଥାଗାରଘରେ ଜିଲ୍ଲା ଏବଂ ପ୍ରଦେଶର କେତେ ଗୁରୁତ୍ୱପୂର୍ଣ୍ଣ ଓ ବୈପ୍ଳବିକ ବିଷୟମାନ ଉପରେ ଆଲୋଚନା ନ ହୋଇଛି, କିଷ୍ପତ୍ତିମାନ ନିଆ ନ ଯାଇଛି ।

ସ୍ୱାଧୀନତା ପରେ ପରେ ଜଟଣୀ ଥାନାରେ ଏହି ଗ୍ରାମଟି ଭାଗଚାଷ ଆନ୍ଦୋଳନର କେନ୍ଦ୍ର ଭାବରେ ମୁଣ୍ଡ ଟେକିଲା ଏବଂ ଏ ପର୍ଯ୍ୟନ୍ତ ୩୦ ବର୍ଷ ହେଲା ଆନ୍ଦୋଳନ ଚଳାଇ ଆସିଛି ଏବଂ ଚାଷୀର ସ୍ୱାର୍ଥକୁ ବଜାୟ ରଖିଛି ।

ସେ ଦିନର ଏହି ମାଷ୍ଟର ଆଜି ନାହାନ୍ତି । ୧୯୫୨ରେ ସେ ରୋଗାକ୍ରାନ୍ତ ହୋଇ ଚିର ବିଦାୟ ନେଲେ । ଅକାଳରେ ସେ ସମସ୍ତଙ୍କ ପାଖରୁ ବିଦାୟ ନେଇ ଚାଲି-ଯାଇଛନ୍ତି । କିନ୍ତୁ ଗ୍ରନ୍ଥାଗାର ଘରେ ଲୋକଙ୍କୁ ସେ ଯେଉଁ ପାଠ ପଢ଼େଇଥିଲେ, ଗ୍ରାମର ଲୋକେ ତାକୁ ଭୁଲି ନାହାନ୍ତି । ସେହି ପାଠ ଏବେ ବି ମନକୁ ମନ ପଢ଼ି ଚାଲିଛନ୍ତି । ସେହି ପାଠ ହିଁ ପାଠର ସାର ବୋଲି ଲୋକେ ବୁଝୁଛନ୍ତି । ସେହି ଅବଧାନ ହେଉଛନ୍ତି ବ୍ରଜ ମହାନ୍ତି । ଆମର ପ୍ରିୟ ସାଥୀ କମ୍ୟୁନିଷ୍ଟ ପାର୍ଟିର ସଭ୍ୟ । ତାଙ୍କରି ଭଳି ଅନ୍ୟ ଯେଉଁ ଜଣକ ଗଙ୍ଗପଡ଼ାର ଅବଧାନ ଥିଲେ, ସେ ହେଉଛନ୍ତି ଦାମୋଦର ମିଶ୍ର । ସେ ବି ଆଉ ନାହାନ୍ତି । ଚନ୍ଦକା ଓ ଜଟଣୀ ଥାନାର ଏମାନେ ଥିଲେ ସେତେବେଳକାର ଦୁର୍ଦ୍ଦିନର ଯୋଦ୍ଧା ଓ ସଂଗଠକ । ଚନ୍ଦକା ଥାନାର ଯେଉଁ ସଂଗ୍ରାମୀ ଦଳଟି ପ୍ରଥମ କରି ବାହାରି ଥିଲେ ଏମାନେ ଥିଲେ ତାହାର ଦଳପତି ।

—*—

# ଅସମାପ୍ତ

ଇତିହାସର ପରିଚ୍ଛେଦରେ ପୂର୍ଣ୍ଣଚ୍ଛେଦ ନାହିଁ । ତେଣୁ ଯେଉଁଠାରେ ମୁଁ ଛାଡ଼ିଗଲି, ଅନ୍ୟମାନେ ତାହା ପୂରଣ କରି ଚାଲିବେ । ଏହି ଲେଖାରେ ମଧ୍ୟ ଯେଉଁ ଭୁଲ୍ ଭଟକା ରହିଲା, ତାହାକୁ ମୋର ସହଯୋଗୀ ବନ୍ଧୁମାନେ ସଂଶୋଧନ କରିବେ । ଲେଖା ଖୁବ୍ ସଂକ୍ଷିପ୍ତ ହୋଇଛି, ତେଣୁ ଅନ୍ୟମାନେ ବିଷୟବସ୍ତୁର କଳେବର ମଧ୍ୟ ବୃଦ୍ଧି କରିବେ ।

